# ମାନବେତର ଗଳ୍ପ

ସଂପାଦନା : ଅଚ୍ୟୁତାନନ୍ଦ ପତି



ଏଥିରେ ଅଛନ୍ତି :

ଭଗବତୀ ଚରଣ ପାଣିଗ୍ରାହୀ
ରାଜକିଶୋର ରାୟ
ଭୁବନେଶ୍ୱର ବେହେରା
ଅଚ୍ୟୁତାନନ୍ଦ ପତି
ମନୋଜ ଦାସ
ରାମଚନ୍ଦ୍ର ବେହେରା
ରବି ସ୍ୱାଇଁ
ରଜନୀକାନ୍ତ ମହାନ୍ତି
ସଦାନନ୍ଦ ତ୍ରିପାଠୀ
ପଦ୍ମଜ ପାଳ
ପ୍ରଦେଷ ମିଶ୍ର
ସତ୍ୟ ମିଶ୍ର
ଭୀମ ପୃଷ୍ଟି
ନିତ୍ୟାନନ୍ଦ ଶତପଥୀ
ଦେବବ୍ରତ ମଦନରାୟ
ପରେଶ କୁମାର ପଟ୍ଟନାୟକ
ସତ୍ୟପ୍ରିୟ ମହାଲିକ
ଗରି ଦଣ୍ଡସେନା
ବିଜୟ ନାୟକ
ରାଜ୍ୟବର୍ଦ୍ଧନ ଧଳ ମହାପାତ୍ର
ରବି ପଣ୍ଡା
ଅରବିନ୍ଦ ଧଳ



ମାନବେତର ଗଳ୍ପ

ସଂପାଦନା : ଅଚ୍ୟୁତାନନ୍ଦ ପତି

ପ୍ରକାଶକ : ପ୍ରବାହ, ଗୋବିନ୍ଦପୁର,
ଜାହାନପୁର, ଦେବୀଦ୍ୱାର, ଯାଜପୁର-୭

ମୁଦ୍ରଣ : ଗ୍ରାଫିକ୍ସ ୱାର୍ଲ୍ଡ, ବାଦାମବାଡ଼ି, କଟକ-୯

ପ୍ରଚ୍ଛଦ : ରମେଶ ପତି

ପ୍ରଥମ ସଂସ୍କରଣ : ଦଶହରା - ୨୦୧୭

ମୂଲ୍ୟ : ଟ ୧୮୦/-

---

MANABETARA GALPA
[A Collection of Odia Story]
Edited By : *Achyutananda Pati*

Rs. 180.00

# ମୁଖବନ୍ଧ

ପଶୁପକ୍ଷୀ ଜଗତ ସହିତ ମନୁଷ୍ୟର ସମ୍ପର୍କ ଯୁଗଯୁଗର । ପୁରାଣ କଥା, ବ୍ରତ କଥା, ରୂପ କଥା, ରୂପକରେ ପଶୁପକ୍ଷୀ ବହୁ ଭାବରେ ସ୍ଥାନିତ ହୋଇଛନ୍ତି । କେଉଁ ଅନାଦି କାଳରୁ ଜୀବନ ମଞ୍ଚରେ ମନୁଷ୍ୟ ସହିତ ଏକାନ୍ତ କୁଟୁମ୍ବୀଭାବ ରକ୍ଷା କରିଆସିଛି ପ୍ରାଣୀ ଜଗତ । ପ୍ରଭାତର ବାୟସ ସ୍ୱନ ଠାରୁ ପ୍ରଦୋଷର ହମ୍ବା ଡାକ ପର୍ଯ୍ୟନ୍ତ ବିଭିନ୍ନ ଭାବରେ ଏମାନେ ମନୁଷ୍ୟ ଜୀବନକୁ ପରିପୂର୍ଣ୍ଣ କରିଛନ୍ତି । ପଶୁପକ୍ଷୀଙ୍କୁ କେନ୍ଦ୍ର କରି କେହି କେହି ମଣିଷର ଗୁଣ ସତ୍ତାର ଆନୁଭୂମିକ ରେଖାରେ ଠିଆ କରିଛନ୍ତି । କେଉଁଠି ପ୍ରତୀକର ପରିଚ୍ଛଦ ପିନ୍ଧି ସେମାନେ ଶୋଷିତ ମଣିଷର ମୂର୍ତ୍ତ ପ୍ରତିବାଦ ତ କେଉଁଠି ମଣିଷର ସ୍ନେହ, ପ୍ରୀତି, ପ୍ରଣୟର ବିଗ୍ରହ ରୂପେ ବିଦ୍ୟମାନ । ମାନବେତରଙ୍କୁ ମାନବାୟନ କରି ମଣିଷଙ୍କୁ ବଞ୍ଚିବାର ରୀତିନୀତି ତ ଶିକ୍ଷା ଦିଆଯାଉଥିଲା । ସେମାନଙ୍କ ଚରିତ୍ର ମାଧ୍ୟମରେ ମାନବିକ ସମ୍ବେଦନ, ଆଧୁନିକ ମଣିଷର ପ୍ରକୃତିଗତ ଚିତ୍ତ ସଂଘର୍ଷ, ସ୍ୱାର୍ଥ ପ୍ରବଣତା, ପ୍ରବଞ୍ଚନା ଆଦିର ଉପସ୍ଥାପନା କରାଯାଉଥିଲା ।

ମାନବେତର ପ୍ରାଣୀମାନଙ୍କ ଉପରେ, ଓଡ଼ିଆ ଭାଷାରେ ରଚନା କରାଯାଇଥିବା କେତୋଟି ଗଳ୍ପକୁ ସଂକଳିତ କରିବା ଆମର ବହୁଦିନର ଯୋଜନା । ବିବିଧ କାରଣରୁ ଏହା ବିଳମ୍ବିତ ହୋଇଛି । ଓଡ଼ିଶାର ବହୁ ଗାଳ୍ପିକ ପଶୁ, ପକ୍ଷୀ, କୀଟପତଙ୍ଗଙ୍କ ଉପରେ ଅସଂଖ୍ୟ ଗଳ୍ପ ଲେଖିଛନ୍ତି । ଜଣେ ଜଣେ ସେହିଭଳି ଏକାଧିକ ଗଳ୍ପ ରଚନା କରିଥିବା ମଧ୍ୟ ଆମ ଦୃଷ୍ଟିକୁ ଆସିଛି । ତେବେ ବେଶୀ ସଂଖ୍ୟକ ଗଳ୍ପ ଲେଖାଯାଇଛି କୁକୁରକୁ ଚରିତ୍ର ବା ପ୍ରତୀକ କରି ।

ଏହି ସଂକଳନରେ ସ୍ଥାନିତ ବାଇଶଟି ଗଳ୍ପ ମଧ୍ୟରୁ କୁକୁର ଉପରେ ପର୍ଯ୍ୟବସିତ ହୋଇଛି ଛଅଗୋଟି । ନିତ୍ୟାନନ୍ଦ ଶତପଥୀ, ପ୍ରଦୋଷ ମିଶ୍ର, ରଜନୀକାନ୍ତ ମହାନ୍ତି, ସଦାନନ୍ଦ ତ୍ରିପାଠୀ, ପରେଶ କୁମାର ପଟ୍ଟନାୟକ ଓ ରବି

ପଣ୍ଡା ସେହି ଗଳ୍ପ ଗୁଡ଼ିକ ଲେଖିଥିବା ବେଳେ ଅନ୍ୟ ଷୋହଳ ଜଣ ଅଲଗା ଅଲଗା ପ୍ରାଣୀଙ୍କ ସତ୍ତା ଓ ସ୍ୱାତନ୍ତ୍ୟର ଅବଲମ୍ବନରେ ବେଶ୍ ପ୍ରତୀକାତ୍ମକ, ମାର୍ମିକ ଗଳ୍ପ ରଚନା କରିଛନ୍ତି । ସେହିସବୁ ପ୍ରାଣୀ ଓ ସେମାନଙ୍କ ଉପରେ ଲେଖିଥିବା ଗାଳ୍ପିକମାନେ ହେଲେ : ମାଙ୍କଡ଼ (ଭୁବନେଶ୍ୱର ବେହେରା), ବାଘ (ମନୋଜ ଦାସ), ପେଚା (ଅଚ୍ୟୁତାନନ୍ଦ ପତି), ଗାଈ ଓ ବାଛୁରୀ (ରାଜକିଶୋର ରାୟ), କଇଁଚ (ରାମଚନ୍ଦ୍ର ବେହେରା), ଶାଗୁଣା (ରବି ସ୍ବାଇଁ), ବେଙ୍ଗ (ପଦ୍ମଜ ପାଳ), ମାଙ୍କଡ଼ (ସତ୍ୟ ମିଶ୍ର), ଜନ୍ଦା (ଗିରି ଦଣ୍ଡସେନା), ଭାଲୁ (ଦେବବ୍ରତ ମଦନରାୟ), କୁଆ (ବିଜୟ ନାୟକ), ସାରୀ (ରାଜ୍ୟବର୍ଦ୍ଧନ ଧଳ ମହାପାତ୍ର), ଶୁଆ (ଭୀମ ପୃଷ୍ଟି), କୁମ୍ଭୀର (ସତ୍ୟପ୍ରିୟ ମାହାଳିକ), ବୃଷଭ ଓ ବଳଦ (ଅରବିନ୍ଦ ଧଳ) ଏବଂ ଜଙ୍ଗଲି ମଣିଷ (ଭଗବତୀ ଚରଣ ପାଣିଗ୍ରାହୀ) ।

ଭଗବତୀଙ୍କ ଗଳ୍ପର ମଣିଷ ଚରିତ୍ରଟି ଆଜନ୍ମ ଜଙ୍ଗଲରେ ରହି ଆସିଥିବାରୁ ପଶୁଙ୍କ ସହିତ ମିଶି ଯାଇଛି ଓ ସେମାନଙ୍କ ଭଳି ଆଚରଣ ଦେଖାଉଛି । ମଣିଷ ଶିଶୁଟିଏ ଜଙ୍ଗଲରେ ପଶୁଙ୍କ ଗହଣରେ ରହିଯିବା ଓ ଅକ୍ଷତ ରହିପାରିବା ଏକ ବିରଳ ଘଟଣା ହୋଇପାରେ । 'ନାଚେ ବେନୁଆ ନାଚେ' ଏକ ବହୁ ଚର୍ଚ୍ଚିତ ଗଳ୍ପ । ଭୁବନେଶ୍ୱର ବେହେରାଙ୍କର ଏହି ଗଳ୍ପଟି ହୀରାକୁଦ ବନ୍ଧ ନିର୍ମାଣ ହେବା ସମୟର ଏକ ଜୀବନ୍ତ ଦଲିଲ୍ । ସୋମବାରୁ ଚରିତ୍ର ଓ ତା'ର ପୋଷା ମାଙ୍କଡ଼(ବେନୁଆ)କୁ ନେଇ ରଚିତ ଏ ଗଳ୍ପ ଅତ୍ୟନ୍ତ ଆବେଗପୂର୍ଣ୍ଣ ତଥା ପ୍ରଭାବଶାଳୀ । ସୋମବାରୁ ଭଳି ଜଣେ ଦମ୍ଭିଲା ଚରିତ୍ର ହୀରାକୁଦ ଡ୍ୟାମ୍ ନିର୍ମାଣ କାମ ସରିବା ପରେ ନିଜର ଭିଟାମାଟି ଓ ବୃତ୍ତି ହରାଇ ବସିବା ସହ ମାଙ୍କଡ଼ ନାଚ ଦେଖାଇ ଜୀବିକା ନିର୍ବାହ କରିବାର ଗହନ ଚିତ୍ର ଏହି ଗଳ୍ପଟିରେ ରହିଚି । ମନୋଜ ଦାସଙ୍କ 'ବାଘ' ଏକ ଚେତନା । ରୋଗୀଣା ବାଘଟିଏ ଲଟକିଛି କଣ୍ଟାବୁଦାରେ, ଅନାହାର ମୃତ୍ୟୁର ଅପେକ୍ଷାରେ । ବିବିଧ ସମସ୍ୟା, ବିପଦ ଓ ଆତଙ୍କର ଚେତନା ବହନ କରୁଥିବା ସେହି ଗଳ୍ପର ବାଘଟିକୁ ଦେଖି କିନ୍ତୁ କୁକୁର ବି ଭୁକି ନାହାନ୍ତି । ଅଚ୍ୟୁତାନନ୍ଦ ପତିଙ୍କର 'ଅଶୁଭ ପୁତ୍ରର କାହାଣୀ' ଉଭୟ ମାର୍ମିକ ଓ ପ୍ରତୀକାତ୍ମକ । ଗଳ୍ପଟି ସବୁ ବର୍ଗର ପାଠକଙ୍କ ହୃଦୟକୁ ବିଗଳିତ ତଥା ଆନ୍ଦୋଳିତ କରିଥିବାର ଦୃଷ୍ଟାନ୍ତ ରହିଛି । 'ବଉଳି' ଏକ ବହୁ ପଠିତ ସ୍ମରଣୀୟ ଗଳ୍ପ । ରାଜକିଶୋର ରାୟଙ୍କ ଏହି ଗଳ୍ପଟି ପାଠକଙ୍କ ହୃଦୟକୁ ଆନ୍ଦୋଳିତ କରିବା ସହିତ ସେମାନଙ୍କ ସ୍ମୃତିରେ ସଦା ଜୀବନ୍ତ ରହିଛି । ରାମଚନ୍ଦ୍ର ବେହେରାଙ୍କ 'ଶୋଷ' ଗଳ୍ପଟି ପଢ଼ିଲେ ଜଣେ ପାଠକ ନିଜକୁ ସେ କଇଁଚଟିର ଦୁର୍ଗତିର ବ୍ୟୂହ ମଧ୍ୟରେ ଆବିଷ୍କାର କରିବ । ରବି ସ୍ୱାଇଁ ତାଙ୍କ 'ହୃଦୟଯୋଗ' ଗଳ୍ପ ମାଧ୍ୟମରେ ଶାଗୁଣା ଆଖିରେ ଦେଖାଇଛନ୍ତି

ମଣିଷ ସମାଜର ଶୋଚନୀୟ ବାସ୍ତବତା । 'ଜଳଯଜ୍ଞ' ଗଳ୍ପରେ, ବର୍ଷା ପାଇଁ ତିନି ବର୍ଷ ବୟସ ବେଳେ ଜଣେ ବାଳିକାର ବାହାଘର କରାଇ ଦିଆଯାଏ ଗୋଟିଏ ବେଙ୍ଗ ସହିତ । ପଦ୍ମଜ ପାଳଙ୍କର ଏ ଗଳ୍ପଟି ବ୍ୟଞ୍ଜନାତ୍ମକ । ସତ୍ୟ ମିଶ୍ରଙ୍କ 'ଯୀଶୁଖ୍ରୀଷ୍ଟ' ଓ ଗିରି ଦଣ୍ଡସେନାଙ୍କର 'କାଳସୂତ୍ର' ଦୁଇ ସ୍ରଷ୍ଟାଙ୍କୁ ଓଡ଼ିଆ ସାହିତ୍ୟରେ ଅମର କରିଦେବା ଭଳି ପ୍ରସିଦ୍ଧି ଆଣି ଦେଇଥିବା ବିଷୟଙ୍କୁ ସମସ୍ତେ ସ୍ୱୀକାର କରିବେ । ସେହି ଗଳ୍ପ ଦୁଇଟି ପାଠକଙ୍କ ଚେତନାକୁ ଝାଇଁ ଝାଇଁ କରିଦେବାକୁ ସମର୍ଥ । ଦେବବ୍ରତ ମଦନରାୟଙ୍କ 'ସ୍ୱପ୍ନଭଙ୍ଗ' ଗଳ୍ପର ଜଙ୍ଗଲୀ ଭାଲୁଟି କେବଳ ଏକ ସାଧାରଣ ଭାଲୁ ନୁହେଁ, ବରଂ ଏକ ଜୀବନ୍ତ ପ୍ରତୀକ । ବିଜୟ ନାୟକ 'କୁଆ' ଗଳ୍ପ ମାଧ୍ୟମରେ ମଣିଷମାନଙ୍କ ଚେତନାରେ ମାନବିକତା, ସୌହାର୍ଦ୍ଦ୍ୟ, ସହଯୋଗ ଏବଂ ଭାଇଚାରାର ବୀଜ ବପନ କରିବାକୁ ଚାହିଁଛନ୍ତି । 'ସାରୀ ଓ ମୂକପୁତ୍ରର କାହାଣୀ' ରାଜ୍ୟ ବର୍ଦ୍ଧନ ଧଳ ମହାପାତ୍ରଙ୍କର ଏକ ଅତ୍ୟନ୍ତ ସଫଳ ତଥା ମର୍ମସ୍ପର୍ଶୀ ଗଳ୍ପ । ସାବଲୀଳ ଶୈଳୀରେ ରଚିତ ଏହି କାହାଣୀରେ ଆବେଗର ଜୁଆରିଆ ପ୍ରବାହ ଲକ୍ଷ୍ୟଣୀୟ । ଗଳ୍ପର କ୍ଲାଇମାକ୍ସ ମଧ୍ୟ ଚମତ୍କାର । 'ଦ୍ୱାର ବନ୍ଧ ସବୁଜ ଜୀବନ' ଭୀମ ପୃଷ୍ଟିଙ୍କର ଏକ ପ୍ରତୀକାତ୍ମକ ଗଳ୍ପ । ପଞ୍ଜୁରୀରେ ଆବଦ୍ଧ ଶୁଆ ଭଳି ସଂସାରର ବନ୍ଦିଶାଳାରେ ମଣିଷର ଜୀବନ । ସବୁ କିଛି ମିଳୁଛି; କିନ୍ତୁ ସୀମା ନିର୍ଦ୍ଧାରିତ । ସତ୍ୟପ୍ରିୟ ମାହାଲିକଙ୍କ 'କ୍ରୋକଡାଇଲ୍'ରେ ବ୍ୟଞ୍ଜନା ଓ ବ୍ୟଙ୍ଗର ଅପୂର୍ବ ସମନ୍ୱୟ ଘଟିଛି । ଅଥଚ ତାଙ୍କର ରଚନା ଶୈଳୀ ଓ ଶବ୍ଦ ବିନ୍ୟାସ ବେଶ୍ ଗମ୍ଭୀର । 'ବୃଷଭ ବିଷାଦ ଯୋଗ' ରେ ଅରବିନ୍ଦ ଧଳ ଆତ୍ମ ସର୍ବସ୍ୱ ମଣିଷ ପ୍ରତି କଟାକ୍ଷ ହାଣିଛନ୍ତି । ଏବର ମଣିଷର ଆଚରଣ ଏପରି ଯେ ବୃଷଭଟିଏ ମଣିଷ ଜନ୍ମ ନେବାକୁ ଅନିଚ୍ଛୁକ, ଯଦିବା ଆମେ କହିଥାଉ ମଣିଷ ଜନ୍ମ ଦୁର୍ଲଭ !

ଅବଶିଷ୍ଟ ଛଅଗୋଟି ଗଳ୍ପ ଯାହା କୁକୁର ଉପରେ ଆଧାରିତ ସେଗୁଡ଼ିକର ପରିସର, ଆବେଦନ ଓ ଗୁରୁତ୍ୱ ଅଲଗା ଅଲଗା । 'ଶ୍ୱାନ ଉପାଖ୍ୟାନ'ରେ ନିତ୍ୟାନନ୍ଦ ଶତପଥୀ ଛଉକା କୁକୁର ଓ କୁତୀଟିଏକୁ ନେଇ ଘଟଣାବଳୀର ଅବିକଳ ଚିତ୍ରଣ ମାଧ୍ୟମରେ କେଉଁ ମଣିଷ (ପୁରୁଷ - ନାରୀ) ବିଷୟରେ ହିଁ କହିଛନ୍ତି । ତାଙ୍କ ଗଳ୍ପଟି ସମୟ ଉପଯୋଗୀ, ପ୍ରତୀକାତ୍ମକ ଓ ବାସ୍ତବବାଦୀ । ଆଭିଜାତ୍ୟର ଅହଂକାର ବନାମ ମଣିଷ ପ୍ରକୃତିକୁ ଅତି ସୁନ୍ଦର ଢ଼ଙ୍ଗରେ ରୂପାୟିତ କରିଛନ୍ତି ପ୍ରଦୋଷ ମିଶ୍ର ତାଙ୍କର 'ମୁକ୍ତିପଥ' ଗଳ୍ପରେ । ରଜନୀକାନ୍ତ ମହାନ୍ତିଙ୍କ 'ବିଶା ଶହେ କାହାଣ ଅନ୍ଧାର' ଗଳ୍ପରେ ସ୍ୱାଧୀନତାକୁ ନେଇ ଚିନ୍ତାଦ୍ୟୋତକ ପ୍ରଶ୍ନ ଉତ୍‌ଥାପିତ ହୋଇଛି - ଯେମିତି କି : ଫୁଲମାନେ ମଧ୍ୟ ମାଲିକ ଚାହିଁବା ପ୍ରକାରେ ଫୁଟିବେ, ବଢ଼ିବେ । ପୁଣି କୁକୁର ଭୁକେ, ଅଥଚ ମଣିଷ ଆବଶ୍ୟକ ସ୍ଥଳରେ ପ୍ରତିବାଦ କରେନା ଓ

ସବୁକିଛି ସହିଯାଏ । ପ୍ରଶ୍ନ ଉଠିବ; ମଣିଷ କଣ କୁକୁରଠୁ ବି ହୀନ ? ସଦାନନ୍ଦ ତ୍ରିପାଠୀଙ୍କର 'ତ୍ୟାଗୀରାଜ ଚୌରାଶିଆଙ୍କ କୁକୁର 'ଗଳ୍ପଟି ଶୈଳୀ ଦୃଷ୍ଟିରୁ ମନୋହର । କଥାବସ୍ତୁ ବାସ୍ତବବାଦୀ ଓ ମନଛୁଆଁ । ସାମାଜିକ ବାତାବରଣର ଚିତ୍ରଣ ଯେଉଁ କୁକୁରଟିର ଅବଲମ୍ବନରେ ଘଟିଛି । ସେ କ୍ରମେ ପାଲଟି ଯାଇଛି ଏକ ପ୍ରତୀକ । ପରେଶ କୁମାର ପଟ୍ଟନାୟକଙ୍କର 'ମୁଖ୍ୟମନ୍ତ୍ରୀଙ୍କ କୁକୁର' ପାଠକଙ୍କୁ ମଜେଇ ରଖି ଶେଷରେ ହତବାକ୍ କରିଦେବା ଭଳି ଏକ ସଫଳ ପ୍ରତୀକାତ୍ମକ ଗଳ୍ପ । ଚଟୁଳ ଶୈଳୀରେ ରଚିତ ଏହି ଗଳ୍ପଟି ଅପୂର୍ବ । 'ଅନୁଭବ' ଗଳ୍ପରେ ରବି ପଣ୍ଡା ସୋନାଲୀ ଓ ତା' ଆଲସିସିଆନ କୁକୁରର ମାନସିକତା ଏବଂ ଆଚରଣକୁ ନେଇ ରହସ୍ୟମୟ ତଥା ଚିନ୍ତାଦ୍ୟୋତକ ବିଷୟର ଅବତାରଣା କରିଛନ୍ତି । ରବି ପଣ୍ଡାଙ୍କ ଶୈଳୀଟି ସମ୍ଭ୍ରାନ୍ତ ଓ ମଧୁର ।

ମୋର ଏବଂ ଏହି ସଙ୍କଳନର ପ୍ରକାଶକ ଓ ବିଶିଷ୍ଟ କବି ରମେଶ ପତିଙ୍କର ଦୃଢ଼ ବିଶ୍ୱାସ ଯେ ଗଳ୍ପଗୁଡ଼ିକ ସୁଧୀ ପାଠକମାନଙ୍କର ହୃଦୟଗ୍ରାହୀ ହେବ । ଏହା ଅବଶ୍ୟ ସତ୍ୟ ଯେ ଖୋଜିବାର ପ୍ରୟାସ ମଧ୍ୟରେ ଅନେକ ମୂଲ୍ୟବାନ୍ ତଥା ଉପାଦେୟ ମାନବେତର ଗଳ୍ପର ସନ୍ଧାନ ଆମେ କରିପାରି ନ ଥିବୁ । ତେବେ ଏହିପରି ଗୋଟିଏ ସଂକଳନର ପରିକଳ୍ପନା କରି ଭବିଷ୍ୟତରେ ଏହି ଭଳି ଆହୁରି ଏକାଧିକ ସଂକଳନ ପ୍ରକାଶ ପାଇବା ନିମନ୍ତେ ଆମେ ବାଟ ଫିଟାଇବା କାମଟି କରିଛୁ । ଭବିଷ୍ୟତରେ ଏହି ଭଳି ଆହୁରି ଏକାଧିକ ସଂକଳନ ପ୍ରକାଶ କରିବା ନିମନ୍ତେ ପ୍ରକାଶକ ରମେଶ ରାସ୍ତା ଉନ୍ମୁକ୍ତ ରଖିଛନ୍ତି ।

ରମେଶ ପତିଙ୍କୁ ତାଙ୍କର ଏ ଯୋଗଦାନ ପାଇଁ ଧନ୍ୟବାଦ ।

ଏହି ସଙ୍କଳନରେ ଯେଉଁ ବିଲକ୍ଷିତ ସ୍ରଷ୍ଟାମାନଙ୍କ ଗଳ୍ପ ସ୍ଥାନିତ ହୋଇଛି ସେମାନଙ୍କୁ ଅଭିନନ୍ଦନ ଓ ଧନ୍ୟବାଦ ଜଣାଉଛି ।

ପ୍ରିୟଦର୍ଶୀ ପତି

# ସୂଚୀପତ୍ର





# ଭଗବତୀ ଚରଣ ପାଣିଗ୍ରାହୀ

# ଜଙ୍ଗଲି

॥ ଏକ ॥

ସେ ସୃଷ୍ଟିରୁ ବାହାର । ତାର ଆକାରରୁ ଯେପରି ବୋଧହୁଏ, ସେ ପୁରୁଷ । କିନ୍ତୁ ମନୁଷ୍ୟତାର କୌଣସି ଲକ୍ଷଣ ତା'ଠାରେ ପରିଲକ୍ଷିତ ହୁଏନାହିଁ । ତାର ଧର୍ମ ନାହିଁ, ଜାତି ନାହିଁ, ସମାଜ ନାହିଁ– ଯେପରି କି ସେ ଏକା ଗୋଟାଏ ଜାତୀୟ ଜୀବ । ସେ ଦେଖିବାକୁ ମନୁଷ୍ୟ ପରି, କିନ୍ତୁ ତାର ପ୍ରକୃତି ମାନବ ପ୍ରକୃତିଠାରୁ ଏକାବେଳକେ ଫରକ । ତାର ସୁବୃହତ କୃଷ୍ଣବର୍ଣ୍ଣ ଶରୀର ଅତି ଭୀଷଣ । କପାଳ ଏବଂ ଦୁଇ ଚକ୍ଷୁର ଦୁଇ ପ୍ରାନ୍ତଭାଗରୁ ନାସିକାର ଅଗ୍ରଭାଗ ପର୍ଯ୍ୟନ୍ତ – ଏହି କ୍ଷୁଦ୍ର ତ୍ରିଭୁଜାକାର ଅଂଶଟି ବ୍ୟତୀତ ପ୍ରାୟ ସମସ୍ତ ମସ୍ତକ ଘନ କୃଷ୍ଣକେଶ ଏବଂ ଶ୍ମଶ୍ରୁଦ୍ୱାରା ଏପରି ଭାବରେ ଆବୃତ ଯେ, ଓଷ୍ଠ ଦିଓଟି ଆଦୌ ଦେଖାଯାଏ ନାହିଁ – କର୍ଣ୍ଣ ଦିଓଟି ଘନ କେଶ ମଧ୍ୟରୁ ଅଳ୍ପ ଦେଖାଯାଏ । ତାର ସର୍ବାଙ୍ଗ 'ଦୀର୍ଘ କୃଷ୍ଣ' ଲୋମରେ ଅଚ୍ଛାଦିତ – ଶରୀରରେ ତା'ର ଅସୁରର ବଳ । ଯେପରି ଏ ଯୁଗରେ ଆଦି ମାନବର ଗୋଟାଏ ଅବତାର ସେ ।

ସେ ଥାଏ ଏକ ନିବିଡ଼ ଜଙ୍ଗଲ ମଧ୍ୟସ୍ଥ ଗୋଟିଏ ପାହାଡ଼ ଗୁହା ମଧ୍ୟରେ । ସେ ସ୍ଥାନରେ ମନୁଷ୍ୟର ପାଦ କେବେ ପଡ଼ିଛି କି ନାହିଁ ସନ୍ଦେହ । ସେପରି ସ୍ଥାନକୁ ଗୋଟିଏ ମାନବ ସନ୍ତାନ କିପରି ଆସିଲା, ତାହା କଳ୍ପନା କରାଯାଇ ପାରେ ନାହିଁ । ମନେହୁଏ ପଚା ଫଳ ମଧ୍ୟରେ ପିତା ମାତାଙ୍କ ଅଭାବରେ ମଧ୍ୟ ଯେପରି କୀଟର ଆବିର୍ଭାବ ହୁଏ ସେହିପରି ସେ ଭୟଙ୍କର ତମସାଚ୍ଛନ୍ନ ଗହ୍ୱର ମଧ୍ୟରୁ ଏ ଭୀଷଣ ଜୀବନର ସୃଷ୍ଟି । ଜଗତର ସକଳ ଭୀଷଣତା ଯେପରି ଘନୀଭୂତ ହୋଇ ଏହି ଲୋକଟାର ଆକାରରେ ପ୍ରକାଶିତ ହେବାକୁ ଚେଷ୍ଟା କରିଛି ।

ତାର ସୌନ୍ଦର୍ଯ୍ୟଜ୍ଞାନ ଅତି ଅଦ୍ଭୁତ ରକମର । ଫୁଲଟିଏ ଫୁଟିବାର ଦେଖିଲେ ସେ ଖଣ୍ଡ ଖଣ୍ଡ କରି ଛିଣ୍ଡାଇ ପକାଇବ – କୋକିଳ ଗାଇ ଉଠିଲେ ତାକୁ ବିକଟ ସ୍ୱରରେ ପ୍ରତ୍ୟୁତ୍ତର ଦେବ । ଦକ୍ଷିଣ ବାୟୁ ସ୍ପର୍ଶରେ ତାର ପୁଲକ ଜାତ ହେଲେ, ସେ ଉନ୍ମତ୍ତ ହୋଇ ସମସ୍ତ ଜଙ୍ଗଲ ମଥିତ କରିବ । ହସ୍ତୀ, ସିଂହ, ବ୍ୟାଘ୍ର ଯାହା ଦେଖିବ, ତା ସଙ୍ଗେ

ଯୁଦ୍ଧ ଆରମ୍ଭ କରିଦେବ । ଶ୍ରାବଣର ଅନ୍ଧକାର ରାତ୍ରିରେ ଝଡ଼ ତୋଫାନର ଆୟୋଜନ ଦେଖିଲେ ସେ ସିଂହୀ ସହିତ ବାସର ରଚିବ ।

ଜଙ୍ଗଲର ପଶୁମାନଙ୍କ ସହିତ ତାର ବେଶ୍ ପରିଚୟ ଥିଲା । କେତେବେଳେ ସେମାନଙ୍କ ସହିତ ମିଳିମିଶି କ୍ରୀଡ଼ା କରେ । କେତେବେଳେ ବା ସେମାନଙ୍କ ସହିତ କଳହ କରି ଯୁଦ୍ଧ ଆରମ୍ଭ କରିଦିଏ । ଏପରି ଯୁଦ୍ଧ କରିବା ବିଷୟରେ ସେ ପଶୁମାନଙ୍କ ତୁଳନାରେ କୌଣସିମତେ କମ୍ ଭୀଷଣ ନୁହେଁ । ସେ କେତେବେଳେ ବୃକ୍ଷ ଉପରକୁ ଉଠିଯାଏ । କେତେବେଳେ ଅପର ପକ୍ଷକୁ ସହସା ଆଘାତ କରି ବୃକ୍ଷ ଅନ୍ତରାଳରେ ଛପିରହେ । ନିମିଷକ ମଧ୍ୟରେ ସେ ଯେ କେତେଥର କେତେ ପ୍ରକାରର ଶତ୍ରୁକୁ ଆଘାତ କରି ଅନ୍ତର୍ହିତ ହୋଇଯାଏ, ଭାବିଲେ ମନୁଷ୍ୟ ପକ୍ଷରେ ତାହା ସମ୍ଭବପର ବୋଲି ଆଦୌ ବିଶ୍ୱାସ ହେବନାହିଁ । କେତେଥର ଏହିପରି ଯୁଦ୍ଧ କରି ସେ ଭୀଷଣ ଆଘାତ ପ୍ରାପ୍ତ ହୋଇଛି – ସୁସ୍ଥ ସବଳ ହୋଇ ପୁଣି ଯୁଦ୍ଧ ଆରମ୍ଭ କରି ଦେଇଛି । ଆଉ ପ୍ରତିଥର ଯୁଦ୍ଧର ଆହ୍ୱାନ ଆସେ ଏହାରି ପକ୍ଷରୁ ।

ଅଧିକାଂଶ ବନଚରଙ୍କ ସହିତ ତାର ପରିଚୟ ଥିଲେ ହେଁ ଗୋଟିଏ ହରିଣୀ ସହ ତା'ର ପ୍ରଣୟ ଥିଲା ସବୁଠାରୁ ବେଶି ଆଗ୍ରହ । କିନ୍ତୁ ହରିଣୀଟି ବଡ଼ ଚପଳ ପ୍ରକୃତିର । ସେ ମୁହୂର୍ତ୍ତରେ ଜଙ୍ଗଲର ଏ ପାଖରୁ ସେପାଖ ଯାଏ ଡେଇଁ ବୁଲି ଆସିବ । କେତେ ହରିଣଙ୍କ ସାଙ୍ଗେ ଖେଳିବ - କେଉଁଠି କଅଁଳ ଘାସରେ ମୁହଁ ମାରିବ – ଧୀର ପବନ ଦେହରେ ଲାଗିଲେ ମୁହଁଟେକି ପବନ ଦିଗକୁ ଚାହିଁବ – ଯେପରି କିଛି ଗୋଟାଏ ଆଘ୍ରାଣ କରୁଛି ! ସାଙ୍ଗେ ସାଙ୍ଗେ ଟିକିଏ ନାଚିଯିବ । ଏସବୁ ଦେଖି ଆମର ବନ୍ୟ ଜୀବଟିର ଭାରି ଆନନ୍ଦ ! କିନ୍ତୁ ହରିଣୀର ଚପଳତା ଯୋଗେ ସେ ହରିଣୀ ଉପରେ ସମୟ ସମୟରେ ରାଗ କରେ– ଅଭିମାନ କରେ । ହରିଣୀ ଯେତେବେଳେ ଦୌଡ଼େ, ସେ ମଧ ଦୌଡ଼ିବାକୁ ବାହାରେ । କିନ୍ତୁ ହରିଣୀ ସହିତ ସେ ଯୋଡ଼ ଦେଇପାରେ ନାହିଁ । ହରିଣୀ ତାକୁ ପଛରେ ପକାଇ ଚାଲିଯାଏ – ତା ପାଇଁ ଅପେକ୍ଷା କରେ ନାହିଁ । ସେଥିପାଇଁ ସେ ହରିଣୀ ଉପରେ ଅଭିମାନ କରି ବସେ । କିମ୍ୱା ତା'ର ଇଚ୍ଛା ବିରୁଦ୍ଧରେ ହରିଣୀ ତା ନିକଟରୁ ଖସି ଚାଲିଗଲେ ସେ ରାଗିଯାଏ । ପୁଣି ନିକଟକୁ ଫେରିଲେ ତାକୁ ପ୍ରହାର କରିବ ବୋଲି ପ୍ରତିଜ୍ଞା କରେ । କିନ୍ତୁ ହରିଣୀ ଆସି ଯେତେବେଳେ ଲୋମଶ ମୁଖରେ ତାର ଗାଲକୁ ଆସ୍ତେ ଆସ୍ତେ ଆଉଁସେ, ସେ ସବୁ ରାଗ ଅଭିମାନ ଭୁଲିଯାଇ ତାକୁ ଆଲିଙ୍ଗନ କରେ ।

ଏ ଭୀଷଣ ଜୀବଟି ପ୍ରତି ହରିଣୀଟିର କାହିଁକି କେଜାଣି ଗୋଟାଏ ମମତା ଜନ୍ମି ଯାଇଥିଲା । ସେ ସବୁ ହରିଣ ହରିଣୀଙ୍କ ସହ ମିଶେ – ଖେଳେ, ବୁଲେ, ଚରେ, କିନ୍ତୁ

ସେମାନଙ୍କ ମଧ୍ୟରୁ କାହାରି ସଙ୍ଗରେ ତାର ବିଶେଷ ଘନିଷ୍ଠତା ନଥିଲା । ସେ ଯଦି କେବେ କୌଣସି ବିପଦର ଆଶଙ୍କା ଦେଖେ, ତେବେ ତାର ଏଇ ମାନବ ବନ୍ଧୁଟିର ଆଶ୍ରୟ ନିଏ । ହରିଣୀ କେବେ ଆଘାତ ପ୍ରାପ୍ତ ହେଲେ ତାର ବନ୍ଧୁଟି ଅତି ଯତ୍ନ ସହକାରେ ଶୁଶ୍ରୂଷା କରେ । ବନ୍ଧୁ ଯଦି କେବେ ସିଂହ ବ୍ୟାଘ୍ରଙ୍କ ଦ୍ୱାରା କ୍ଷତ ବିକ୍ଷତ ହୁଏ, ହରିଣୀ ତାର କ୍ଷତ ସ୍ଥାନମାନ ଲେହନ କରି ପୀଡ଼ା ନିବାରଣ କରିବାକୁ ଚେଷ୍ଟା କରେ । ଏହିପରି ଭାବରେ ଦୁହିଁଙ୍କର ଦିନ କଟିବାରେ ଲାଗିଲା ।

## ।। ଦୁଇ ।।

ଥରେ ରାତ୍ରିର ଅନ୍ଧକାର ପଥ ଭୁଲି ଗୋଟିଏ ଷୋଡ଼ଶୀ ଶବର କନ୍ୟା ସେହି ଗୁହା ନିକଟରେ ଆସି ପହଞ୍ଚିଲା । ସେତେବେଳକୁ ଚତୁର୍ଦ୍ଦିଗ ଉଷାର କ୍ଷୀଣ ଆଲୋକରେ ଆଲୋକିତ ହୋଇ ଉଠିଥିଲା । ଯୁବତୀ ପଥଶ୍ରାନ୍ତ ହୋଇ ଗୁହା ସମ୍ମୁଖସ୍ଥ ଶିଳାଖଣ୍ଡ ଉପରେ ବସିଲା । ବନଚାରୀ ମାନବଟି ନିଦ୍ରା ତ୍ୟାଗ କରି ହରିଣୀ ସଙ୍ଗେ ନାନାପ୍ରକାର ଗେଲ, ସୁଆଗ ଆରମ୍ଭ କରି ଦେଇଥିଲା । ତାର ବାହାର ପ୍ରତି ଲକ୍ଷ୍ୟ ନଥିଲା । ସେ ଗୁହା ମଧ୍ୟରେ କ୍ରୀଡ଼ା ନିରତ ଥିଲା । ହଠାତ୍ ତାର ଦୃଷ୍ଟି ବାହାରକୁ ପଡ଼ିବା ମାତ୍ରକେ ସେ ଯୁବତୀକୁ ବସିବାର ଦେଖିପାରିଲା । ଯୁବତୀ ମୁଖରେ ସ୍ୱର୍ଣ୍ଣ କିରଣ ପଡ଼ି ଅତି ସୁନ୍ଦର ଦେଖାଯାଉଥିଲା– ଭୟରେ ଯୁବତୀର ଚକ୍ଷୁ ଦିଓଟି ଚଞ୍ଚଳ ହୋଇ ଉଠୁଥିଲା । ଏପରି ଏକ ଅପୂର୍ବ ଜୀବ ଦେଖି ସେ ଜଙ୍ଗଲି ପ୍ରଥମେ ଏକାବେଳକେ ସ୍ତମ୍ଭୀଭୂତ ହୋଇଗଲା । କିଛିକ୍ଷଣ ପରେ ଗୁହା ମଧ୍ୟରୁ ବାହାରି ଧୀରେ ଧୀରେ ଅଗ୍ରସର ହୋଇ ଯୁବତୀକୁ ଧରି ପକାଇଲା । ଯୁବତୀ କ'ଣ ବସି ଭାବୁଥିଲା– ହଠାତ୍ ଏ ସ୍ପର୍ଶପାଇ ଚମକି ଉଠିଲା । ଚାହିଁ ଦେଖେ ତ, ଭୀଷଣାକାର ନଗ୍ନ ପୁରୁଷ ମୂର୍ତ୍ତି । ଯୁବତୀ ଚିତ୍କାର କରି ମୂର୍ଚ୍ଛିତ ହୋଇ ପଡ଼ିଲା । କିନ୍ତୁ ଜଙ୍ଗଲି ଏ ଚିତ୍କାରର କୌଣସି ଅର୍ଥ ବୁଝି ନପାରି ଅବାକ୍ ହୋଇଗଲା । କଣ ବିଚାରି ତାର ଶରୀରରେ ଧୀରେ ଧୀରେ ହସ୍ତ ସଞ୍ଚାଳନ କରିବାକୁ ଲାଗିଲା । ଯୁବତୀ ପ୍ରକୃତିସ୍ଥ ହୋଇ ଦେଖିଲା, ଲୋକଟି ତା'ର କୌଣସି ଅନିଷ୍ଟ କରିବାକୁ ଚାହେଁ ନାହିଁ । ସେ ଭୟ ତ୍ୟାଗ କରି କ୍ରମେ ଆଶ୍ୱସ୍ତ ହେଲା ।

ଶବରକନ୍ୟା ଦେଖିଲା, ଏ ନିବିଡ଼ ଜଙ୍ଗଲ ମଧ୍ୟରେ ପଥ ଖୋଜି ଘରକୁ ଯିବା ତା' ପକ୍ଷରେ ସମ୍ଭବ ନୁହେଁ । ସେ ବାଧ୍ୟ ହୋଇ ସେ ଜଙ୍ଗଲିର ଆଶ୍ରୟ ନେଲା । ଘର କଥା, ପିତା, ମାତା, ଭ୍ରାତା, ଭଗିନୀଙ୍କ କଥା ମନେ ପଡ଼ିବାରୁ ତରୁଣୀ ଅବିରତ ଲୋତକ ବର୍ଷଣ କରି ରୋଦନ କରେ । ଜଙ୍ଗଲିଟି କିନ୍ତୁ ଲୋତକପାତର କୌଣସି କାରଣ ଖୋଜି ପାଏ ନାହିଁ । ଏସବୁ ଆଦର ଦ୍ୱାରା ଯୁବତୀର କୋହ ଦ୍ୱିଗୁଣ ହୋଇଉଠେ । ଜଙ୍ଗଲି କେବଳ ବଡ଼ ବଡ଼ ଆଖି ମେଲେଇ ଚାହିଁ ରହେ ।

ଯୁବତୀକୁ ପାଇ ଜଙ୍ଗଲିର ମହା ଆନନ୍ଦ । ତାର ଜୀବନ ଆହୁରି ସୁଖକର ହୋଇ ଉଠିଛି । ସେ କେତେବେଳେ ଯୁବତୀକୁ ଆଲିଙ୍ଗନ କରେ, କେତେବେଳେ ହରିଣୀକୁ ଆଲିଙ୍ଗନ କରି ପକାଏ । କେତେବେଳେ ବା ଆନନ୍ଦରେ ଦୁହିଁଙ୍କ ସମ୍ମୁଖରେ ନୃତ୍ୟ କରେ । ସେ ଜଙ୍ଗଲ ମଧ୍ୟରୁ ନାନାପ୍ରକାର ଫଳମୂଳ ଆଣି ଯୁବତୀକୁ ଦିଏ । ତାକୁ ଖୁସି କରାଇବା ପାଇଁ ତାହା ସମ୍ମୁଖରେ ହରିଣୀ ସହ ନାନା ପ୍ରକାର କ୍ରୀଡ଼ା କରେ ।

ଅଳ୍ପଦିନ ମଧ୍ୟରେ ଶବର-କନ୍ୟାର ଗତିବିଧି ଦେଖି ଜଙ୍ଗଲି ଏକାବେଳକେ ବିସ୍ମୟାଭିଭୂତ ହୋଇଯାଉଛି । ସେ ତରୁଣୀ ମାଟିର ପାତ୍ର ନିର୍ମାଣ କରେ, ଝକମକି ପଥରରେ ଲୁହା ଘଷି ଅଗ୍ନି ବାହାର କରେ । ଅଗ୍ନି ସାହାଯ୍ୟରେ ମାଟିର ପାତ୍ରରେ ସେ ମାଂସ, ଶାକ ଆଦି ରାନ୍ଧି ଅତି ସୁନ୍ଦର ସୁସ୍ୱାଦୁ ଖାଦ୍ୟ ପଦାର୍ଥ ପ୍ରସ୍ତୁତ କରେ । ବୃକ୍ଷରେ ଅରୋହଣ ନ କରି ବଂଶଦଣ୍ଡ ସାହାଯ୍ୟରେ ବୃକ୍ଷରୁ ଫଳ ତୋଳିପାରେ । ଗୃହକୁ ପରିଷ୍କାର କରି ସୁସଜ୍ଜିତ ରଖେ । ଏସବୁ କଣ କମ୍ କଥା । ଜଙ୍ଗଲି ଦେଖିଲା, ଏ ଗୋଟିଏ ଉଚ୍ଚ ଶ୍ରେଣୀର ଜୀବ- ଆଉ ଯାଠାରେ କିଛି ବିଶେଷତ୍ୱ ଅଛି । ସେ ତରୁଣୀକୁ ଦେଖିଲେ ଶଙ୍କାବୋଧ କଲା । ତାକୁ ବଡ଼ ସମ୍ମାନ – ସମ୍ଭ୍ରମ ଦେଖାଇଲା । ଯୁବକର ଏ ଦୁର୍ବଳତାର ସୁବିଧା ପାଇ ଯୁବତୀ ତା ଉପରେ ବେଶ୍ ଆଧିପତ୍ୟ ବିସ୍ତାର କରି ବସିଲା । ସେ ତାକୁ ନାନା ପ୍ରକାର କାର୍ଯ୍ୟ କରିବା ପାଇଁ ଆଦେଶ କରେ– ଆଉ ସେ ଆଦେଶ ପାଳନ କରିବାକୁ ଜଙ୍ଗଲି ସବୁବେଳେ ତତ୍ପର । ତରୁଣୀ ତାକୁ ଭାଷା ଶିକ୍ଷା ଦିଏ - ସୁବିଧାରେ କାର୍ଯ୍ୟ ସାଧନ କରିବାକୁ ନାନାପ୍ରକାର ଉପଦେଶ ଦିଏ । ତାର ପ୍ରଭାବରେ ଜଙ୍ଗଲିର ବେଶ୍ ପରିବର୍ତ୍ତନ ଘଟିଛି । ସେ ତାର ପଶୁ ପ୍ରକୃତିକୁ କ୍ରମେ କ୍ରମେ ଛାଡ଼ି ଦେଲାଣି – ଅଳ୍ପ ଅଳ୍ପ କଥା କହିପାରେ – ପଶୁମାନଙ୍କ ସହିତ ଆଉ ପୂର୍ବପରି ଯୁଦ୍ଧରେ ପ୍ରବୃତ୍ତ ହୁଏ ନାହିଁ ।

ଶବରକନ୍ୟା ଏ ବନ୍ୟ ଯୁବକକୁ ଭଲ ପାଏ କି ନା କହି ହେବ ନାହିଁ । କିନ୍ତୁ ତାର ଇଚ୍ଛା ଯୁବକ ଆଉ କାହାକୁ ଭଲ ନ ପାଉ । ସେ ଯେତେବେଳେ ଦେଖିଲା, ଯୁବକର ହରିଣୀ ସହିତ ବେଶ୍ ଘନିଷ୍ଠ ସମ୍ବନ୍ଧ ଅଛି, ସେ ହରିଣୀକି ଈର୍ଷା ଚକ୍ଷୁରେ ଦେଖିଲା । ସେ ତା ଉପରେ ନାନା ପ୍ରକାର ଦୁର୍ବ୍ୟବହାର କରିବାକୁ ଲାଗିଲା । କେତେବେଳେ ତାକୁ ପ୍ରହାର କରି ଗୃହ ମଧ୍ୟରୁ ବାହାର କରିଦିଏ, କେତେବେଳେ ବା ତାକୁ ପଦାଘାତ କରେ । ହରିଣୀ ଜଙ୍ଗଲି ପ୍ରତି କରୁଣ ଦୃଷ୍ଟିପାତ କଲେ, ତରୁଣୀ ଉଚ୍ଚହାସ୍ୟ କରେ – ଜଙ୍ଗଲି ଯନ୍ତ୍ରଚାଳିତ ପରି ତାର ହାସ୍ୟର ପ୍ରତିଧ୍ୱନି କରିଉଠେ । ହରିଣୀ ସେଠାରୁ ନୀରବରେ ଚାଲିଯାଏ । ଜଙ୍ଗଲି ସେ କଥା ଦେଖିପାରେ ନାହିଁ, ଏକାବେଳକେ ତରୁଣୀ ଦ୍ୱାରା ବିମୋହିତ ବିମୁଗ୍ଧ ହୋଇ ରହିଥାଏ । କେତେବେଳେ

ବା ସେ ନିଜେ ହରିଣୀକି ଗୁହା ମଧ୍ୟରୁ ଘଉଡ଼ାଇ ଦେଇ ତରୁଣୀର ହାସ୍ୟରେ ଯୋଗଦିଏ । ଦିନେ ଯୁବତୀ– ହରିଣୀଟିକି ମାରି ରନ୍ଧନ କରିବା ପାଇଁ ଇଚ୍ଛା ପ୍ରକାଶ କଲା । ଯୁବକ ଆଜି ପର୍ଯ୍ୟନ୍ତ ଯୁବତୀର ସକଳ ଆଦେଶ, ସକଳ ଅନୁରୋଧ ରକ୍ଷା କରିଆସିଛି, କିନ୍ତୁ ଏ ଅନୁରୋଧଟି ସେ ରକ୍ଷା କରି ପାରିଲା ନାହିଁ। ସେ ସେହିକ୍ଷଣି ଅନ୍ୟ ଗୋଟିଏ ହରିଣୀ ମାରିଆଣି ଯୁବତୀକୁ ଦେଲା । ସେହିଦିନୁ ହରିଣୀ ପ୍ରତି ଯୁବତୀର ରାଗ, ଈର୍ଷା ଦ୍ୱିଗୁଣିତ ହେଲା । ସେ ଆହୁରି ନିର୍ଦ୍ଦୟ ଭାବରେ ହରିଣୀ ଉପରେ ଅତ୍ୟାଚାର କରିବାକୁ ଲାଗିଲା । ହରିଣୀଟି ଅତି ଅସହାୟ ଭାବରେ ସମସ୍ତ ଦୁର୍ବ୍ୟବହାର ସହ୍ୟକଲା । ତଥାପି ସେ ଗୁହା ଛାଡ଼ି ଗଲା ନାହିଁ । ଜଙ୍ଗଲିଠାରେ ସେ କି ଆଶା ପୋଷଣ କରିଥିଲା କେଜାଣି ?

ଜଙ୍ଗଲି ଏବେ ଆଉ ପୂର୍ବପରି ଯେ କୌଣସି ସମୟରେ ତରୁଣୀ କି ଆଲିଙ୍ଗନ କରିପାରେ ନାହିଁ। ତାର କିପରି ଭୟ ହୁଏ । ଯଦି କେବେ ଆଲିଙ୍ଗନ ବା ଆଦର କରିବାକୁ ଯାଏ, ତରୁଣୀଠାରୁ ତର୍ଜ୍ଜନା ପାଇ ନତଶିର ହୋଇ ଫେରିଆସେ । ତାର ସମସ୍ତ ଦୁର୍ଦ୍ଦମନୀୟତା ଏହିଠାରେ ହିଁ ପରାଜିତ । ଯୁବକର ମନ କଷ୍ଟ ହୋଇଛି, ବୁଝି ପାରିଲେ ଯୁବତୀ ହସି ହସି କିଛି ଗୋଟାଏ କାମ କରିବାକୁ କହେ । ଜଙ୍ଗଲି ସେ ସ୍ମିତ ବଦନ ଦେଖି ସବୁ ଦୁଃଖ ଭୁଲିଯାଏ । କାର୍ଯ୍ୟ ସାଧନ କରିବା ପାଇଁ ଛୁଟିଯାଏ । ତରୁଣୀ ଏ କଥା ଦେଖି ମନେ ମନେ ହସେ ।

॥ ୩ ॥

ଦିନେ ହଠାତ୍ ତରୁଣୀ ତା'ର ପିତା ସେହି ପଥ ଦେଇ ଯାଉଥିବାର ଦେଖିଲା । ସେତେବେଳକୁ ଜଙ୍ଗଲି ଗୁହା ମଧ୍ୟରେ ନଥିଲା । ତରୁଣୀ ପିତାକୁ ଦେଖି ଆନନ୍ଦରେ ଗଦ୍‌ଗଦ୍ କଣ୍ଠରେ ଡାକ ଦେଲା, ପିତା କନ୍ୟାର କଣ୍ଠସ୍ୱର ବାରିପାରି ଫେରି ଚାହିଁଲା । କନ୍ୟା ଏକ ନିଃଶ୍ୱାସରେ ପିତା ନିକଟକୁ ଛୁଟି ଆସିଲା । କନ୍ୟାକୁ ଆଲିଙ୍ଗନ କରି ପିତା ଆନନ୍ଦରେ ପଚାରିଲା, "କିରେ ! ତୁ ଏତେଦିନ କେଉଁଠି ଥିଲୁ ?" କନ୍ୟା ଗୁହାଟିକୁ ଦେଖାଇ ଦେଲା । ଏତେବଡ଼ ଭୟଙ୍କର ସ୍ଥାନରେ ସେ ଏକାକିନୀ କିପରି ଥିଲା ଭାବି ପିତା ବିସ୍ମିତ ହୋଇଥିଲା । ତାପରେ ସେ ଗୁହାର ଇତିହାସ ତା ଆଗରେ କହିଲା । ସେ ଗୁହାରେ ୨୦ ବର୍ଷ ତଳେ ଗୋଟିଏ ଦୁର୍ଦ୍ଦାନ୍ତ ଦସ୍ୟୁ ଥିଲା । ସେ ଦସ୍ୟୁର ଗୋଟିଏ ଦୁଇ ତିନିବର୍ଷର ପୁତ୍ର ଥିଲା । ଦିନେ ସେ ଶିଶୁଟିକୁ ଗୁହା ମଧ୍ୟରେ ଛାଡ଼ି ଚୋରି କରିବାକୁ ଯାଇଥିଲା । ଚୋରି ସମୟରେ ଧରା ହୋଇ ସେ ଯାବଜ୍ଜୀବନ କାରାଦଣ୍ଡ ପାଇଲା । ଏ ମଧ୍ୟରେ ତା ପୁତ୍ରଟିର କ'ଣ ହେଲା କେହି ଜାଣେ ନାହିଁ। ତରୁଣୀ ବୁଝି ପାରିଲା, ସେ ପୁତ୍ର ଆଉ କେହି ନୁହେଁ, ସେହି ଜଙ୍ଗଲି ଯୁବକ । କିନ୍ତୁ ସେ ଯୁବକର କଥା କୌଣସିମତେ ପିତା ଆଗରେ ଉତ୍‌ଥାପିତ କରିବାକୁ ସାହସ କଲା ନାହିଁ । ତାର

ଭୟ ହେଲା, ପିତା ଯଦି ଜାଣେ ଯେ, ସେ ସେହି ଜଙ୍ଗଲି ନିକଟରେ ଏତେଦିନ ଥିଲା, ତେବେ କ'ଣ ବିଚାରିବ !

ପିତା କନ୍ୟାକୁ ନେଇ ବାହାରିଲା । ଘରକୁ ଯିବାକୁ ତରୁଣୀ ବଡ଼ ଉତ୍କଣ୍ଠିତା ହୋଇ ଉଠିଥିଲା । କିନ୍ତୁ ଚିରଦିନ ପାଇଁ ସେହି ସରଳ ଜଙ୍ଗଲିକୁ ଛାଡ଼ି ଯିବାକୁ ତାର ମନ କୁଣ୍ଠିତ ହୋଇ ଉଠିଲା । ତାର ଇଚ୍ଛା ହେଉଥାଏ ସେ ଜଙ୍ଗଲିଟିକୁ ସଙ୍ଗରେ ନେଇଯିବାକୁ । କିନ୍ତୁ ପିତା ସମ୍ମୁଖରେ ସେ କଥା ବା କହୁଛି କିପରି ! କୌଣସିମତେ ମନ କଥାଟା ମନରେ ମାରିନେଲା । କିଛିଦୂର ଅଗ୍ରସର ହେଉ ନ ହେଉଣୁ ପଛରୁ ଗୋଟାଏ ବିକଟ ଶବ୍ଦ ଶୁଣାଗଲା ଏବଂ ଗୋଟିଏ ଢେଲା ତରୁଣୀର ପିତା ଉପରେ ବାଜିଲା । ଶବର ଫେରି ଦେଖିଲା, ଗୋଟାଏ ଭୀଷଣାକୃତି ମାନବ ଗୋଟିଏ ବୃକ୍ଷର ଶାଖା ଧାରଣ କରି ସେମାନଙ୍କ ଦିଗକୁ ଧାବିତ । ସେ କୌଣସି ଉପାୟ ନ ଦେଖି ଶର ସନ୍ଧାନ କଲା, ତରୁଣୀଟିର ଶରୀର କମ୍ପି ଉଠିଲା । ତାର ଇଚ୍ଛା ହେଲା, ପିତାକୁ ବାରଣ କରିବ । କିନ୍ତୁ ବାରଣ କରିବା ପୂର୍ବରୁ ଶରଟି ସାଇଁ ସାଇଁ ଧ୍ୱନି କରି ଜଙ୍ଗଲିର ବିଶାଳ ଲୋମଶ ବକ୍ଷ ଭେଦ କଲା । ଜଙ୍ଗଲି ଚିତ୍କାର କରି ପତିତ ହେଲା । ତରୁଣୀ 'ଉଃ-ସ୍' କରି ପିତାର ସ୍କନ୍ଧକୁ ଆଉଜି ପଡ଼ିଲା । କନ୍ୟା ଏ ହତ୍ୟାକାଣ୍ଡ ଦେଖି ଭୟ ପାଇଲା ବୋଲି ଭାବି ତାକୁ ଘେନି ଶବର ସେ ସ୍ଥାନରୁ ଶୀଘ୍ର ପ୍ରସ୍ଥାନ କଲା ।

ଜଙ୍ଗଲିର ସେ ସୁବିଶାଳ ବକ୍ଷରୁ ରକ୍ତର ସ୍ରୋତ ଉବୁକି ଉଠୁଥିଲା । କିଛିକ୍ଷଣ ତାର ଦୁର୍ଦ୍ଦମନୀୟ ଅଙ୍ଗ ପ୍ରତ୍ୟଙ୍ଗ ଛଟପଟ ହୋଇ ଚିରକାଳ ପାଇଁ ନିଶ୍ଚଳ ହୋଇଗଲା । ମୂକ ହରିଣୀଟି ବିନ୍ଦୁ ବିନ୍ଦୁ ଲୋତକପାତ କରି ତାର ବକ୍ଷଦେଶ ଲେହନ କରୁଥିଲା ।



## ରାଜକିଶୋର ରାୟ

# ବଉଳି

ଗୋଠ-ବାହୁଡ଼ା ବେଳ ।

କିଆ ଗୋହିରି ଡେଇଁ ଦଫାଦାରବାବୁ ଭଜନି ପଧାନ ଘର ପିଣ୍ଡା ଉପରକୁ ଉଠିଲେ । ଏବେ ସେ ଥାନାରୁ ଫେରୁଛନ୍ତି । ଦଶଦଶଟା ମକଦ୍ଦମାର ଫନ୍ଦି ଓ ମୀମାଂସା କାନ୍ଧରେ ବୁହାଇ ସେ ସବୁବେଳେ ଯାତାୟାତ କରନ୍ତି । ତେଣୁ ତାଙ୍କର ମେରୁଦଣ୍ଡ ଆଗକୁ ଝୁଙ୍କିପଡ଼ିଛି ।

ପାଉଁଶ ଗୁଣ୍ଡିରେ ଦଳା ହୋଇ ସରକାରୀ କୋର୍ଟର ବୋତାମଗୁଡ଼ାକ ଚିକ୍ ଚିକ୍ ଦେଖାଯାଉଛି । ହାତରେ ବିଡ଼ାଏ କାଗଜ । କାଗଜ ଉପରେ ମଲାଟ ବୋର୍ଡ଼ ଖଣ୍ଡିକ ଟିପଚିହ୍ନ କାଳିରେ କଳା ପଡ଼ିଛି । ଗୋଟାଏ ସୂତା ଅହେତୁକ ଭାବରେ କାଗଜ ଉପରେ ଲମ୍ବି ଆସିଛି ।

ସରସୀ ତୁଳସୀ-ବେଦୀ ମୂଳରେ ଛୁଅଁକନା ବୁଲେଇ ଆଣୁଥିଲା, ଦଫାଦାରବାବୁ ପିଣ୍ଡା ଉପରକୁ ଉଠୁଛନ୍ତି । ଓଢ଼ଣାଟି ଧୀରେ ଟାଣିଆଣି ମସିଣା ଖଣ୍ଡିଏ ପିଣ୍ଡା ଉପରେ ପାରିଦେଲା । ଦଫାଦାରବାବୁ ବସିପଡ଼ିଲେ ।

ସରସୀ ଦଫାଦାରବାବୁଙ୍କର ଧରମ ଝିଅ । ଥାନା ଫେରନ୍ତା ଦଫାଦାରବାବୁ ସରସୀକୁ ଏହିପରି ପ୍ରାୟ ସଙ୍ଖୋଳି ଯାଆନ୍ତି । ଏଣୁତେଣୁ ଦି କଥା ପଚାରନ୍ତି । ପଚାରିବା ଭିତରେ ନିଜ ସ୍ୱାର୍ଥର ପରିଚୟ ଥାଏ । ସେଇତକ କଥାବାର୍ତ୍ତାରେ ସରସୀର ବାରି ବାଇଗଣଠାରୁ ଆରମ୍ଭ କରି ଉଜଳ ଗାଈର କ୍ଷୀର ବା ପତନୀର ଲହୁଣି ପର୍ଯ୍ୟନ୍ତ - ସବୁଥିରେ ଦଫାଦାର ବାବୁଙ୍କର ଲାଳସା ରହିଥାଏ ।

ଭଜନି କୃଷି କରେ, ଗୋଧନ ବଢ଼ାଏ; ଆଉ ସରସୀ କୃଷି ଲକ୍ଷ୍ମୀଙ୍କୁ ଆଦର କରେ, ପୂଜା କରେ ପ୍ରତି ଗୁରୁବାରରେ । ଛୋଟ ଛୋଟ ପାଦ କେତୋଟି ମୁରୁଜରେ ଆଙ୍କି ଈଶାନ କୋଣରେ ତାହା ସେ ବନ୍ଦାପନା କରେ । ଗରିବର କୁଳ ଭିତରେ ଏକ ଆଡ଼େ ସ୍ୱାମୀ, ଅନ୍ୟଆଡ଼େ ଗୋମାତାର ସେବାରେ ସରସୀର ଅନ୍ତର ପୁଲକିତ ହୁଏ ।

ତା'ର ନେତ୍ର ସମ୍ପତ୍ତି ଉଜଳା, ପତନୀ, ମଙ୍ଗୁଳୀ, ଆଉ ଜଗନ୍ନାଥ ଓ ବଳଭଦ୍ର ବୋଲି ଦୁଇମୂର୍ତ୍ତି ବଳଦ।

ଉଜଳା ପହ୍ନାରେ ଆଙ୍ଗୁଠି ଖସାଇ ସରସୀ ଯେତେବେଳେ କୋଳ ଉପର ଭାଣ୍ଡକୁ ଭରି ଆଣେ, ସେତେବେଳେ ସୂର୍ଯ୍ୟ-ରଥ ଆକାଶର ନୀଳିମା ଚକ୍ରବାଳକୁ ଉଦ୍ଭାସିତ କରି ବାହାରି ଆସୁଥାଏ। ନିତି ଦିନର ଏହି ଲୀଳା ଘେନି ସରସୀର ପ୍ରାଣ ପରିପୂର୍ଣ୍ଣ ରହିଥାଏ ସତ; ମାତ୍ର ନାରୀ ହୃଦୟର ନିଭୃତ ସ୍ଥଳୀର ଯେ ବ୍ୟଥା ଟିକକ ସେ ଅତି ସଂଗୋପନରେ ଧରି ରଖିଥାଏ, ତାହାର ସମ୍ବାଦ କର୍ମପଟୁ ଭଜନି ରଖିପାରେନି, କି ଉଜଳା ପତନୀ କିଛି ବୁଝିପାରନ୍ତି ନାହିଁ।

ଭାଣ୍ଡ ପୂରିଆସେ। ସ୍ୱଚ୍ଛ ଶୁଭ୍ର କ୍ଷୀର ଧାର। ଉଜଳା ଝିଅ ବଉଳିର ଦୁଧଫେଣ ଲଗା ମୁହଁ ସରସୀର ପିଠି ହାତ ବାହୁ ଉପରେ ବୁଲିଆସେ। ବଉଳିର ଏ ଆନନ୍ଦ ସ୍ପର୍ଶ ସରସୀ ସହିନିଏ। ସାମାନ୍ୟ ବାଛୁରୀର ସ୍ପର୍ଶ ଭିତରେ, ସରସୀ ଯାହା ଉପଭୋଗ କରେ, ତାହାଠାରୁ ବେଶି ସେ ଅନୁଭବ କରେ କାହାର ଅନୁକ୍ଷଣ ଅଭାବ।

ଗାଁ ସମାଜ ଘରେ ସରସୀ ଶୁଣିଛି, ଯଶୋଦା ବନମାଳୀଙ୍କର ଗୋପଲୀଳା କାହାଣୀ। ଗାଁର ହରିଜନ ଯାତ୍ରାଦଳର ରଙ୍ଗସଭା ସୁଆଙ୍ଗରେ ସେ ଚିହ୍ନି ପାରିଛି, ବାଳଗୋପାଳ କୃଷ୍ଣଙ୍କ ପାଇଁ ଯଶୋମତୀର ସ୍ନେହବତ୍ସଳ ବନ। ଗୋଧନ ପଛରେ କାହ୍ନୁର ରଙ୍ଗ ଚାଲି ଦଣ୍ଡେ ନ ଦେଖିଲେ ଯଶୋଦାଙ୍କର ହୃଦଫଟା କାନ୍ଦ- କ୍ଷୀରଭାଣ୍ଡ ଭାଙ୍ଗି କୃଷ୍ଣର କାନ୍ଥୁ ଆଉଜା ସଶଙ୍କ ମୂର୍ତ୍ତି - ସବୁ ସରସୀ ଦେଖେ, ବୁଝେ। ଯେତିକି ଦେଖେ ଯେତିକି ବୁଝେ, ସେତିକି ଉଜଳା କ୍ଷୀରର ପୂର୍ଣ୍ଣଭାଣ୍ଡ ତାକୁ ଅପୂର୍ଣ୍ଣ ଜଣାଯାଏ। ଛୋଟ ଛୋଟ ଦୁଇଟି ପାଦରେ ଠୁକୁ ଠୁକୁ ଚାଲି ଘେନି, ଗାଲରେ ଗାଲେ ହସ ପୂରାଇ ଯେଉଁ ହୃଦ-ଧନଟି ଉଜଳାର କ୍ଷୀର ଭାଣ୍ଡକୁ ଆକ୍ରମଣ କରୁଥାନ୍ତା, ତାହାର ସ୍ୱପ୍ନ ହିଁ ସରସୀ କେବଳ ଦେଖି ଚାଲିଛି।

'-ଭଜନି କଅଣ ହଳକୁ ଯାଇଛି?' ଦଫାଦାର ବାବୁ ହସି ହସି ଆରମ୍ଭ କଲେ।

'—ହଁ, ସାଆନ୍ତେ, ଏଇନାକେ ଫେରୁଥିବେ।'

ଦାଣ୍ଡଘର କବାଟ ଆଡୁଆଳରୁ ସରସୀ ଅଧାଲୁଚା ଅଧାଦେଖା ଭାବରେ ଦଫାଦାରବାବୁଙ୍କୁ ଅଭ୍ୟର୍ଥନା କରିଅଛି। ଉଜଳାର ଛେନା, ଆଖୁ କ୍ଷେତର ନୂଆଗୁଡ଼ - ତା ସାଥିକୁ ଦି'ଟା ହୁଡୁମ।

ଦଫାଦାରବାବୁ ଭୋଜନ ସାରି ସରକୁ ଶୁଣେଇ କହିଲେ– 'ସର, କଟକ ସହରରେ ଗାଈଗୋରୁ ପ୍ରଦର୍ଶନୀ ହେଉଛି। ତୋ ଉଜଳା, ପତନୀଙ୍କୁ ଦେଖିଲେ ତ ଆଖି ଖୋସି ହୋଇଯାଏ। ତୁ ତାଙ୍କୁ ଏତେ ହେପାଜତରେ ରଖିଛୁ ଯେ, ମାଛି ଖସିପଡ଼ିବ।

ଭଜନିକୁ କହିବୁ- ଉଜଳା, ପତନୀ ଆଉ ବଉଳାକୁ ଘେନି ସେ କଟକ ଯାଉ । ଗାଈ ପିଛାକେ ପଚାଶ ଟଙ୍କା ପୁରସ୍କାର ।'

ସରସୀ ବାଧା ଦେଇ କହିଲା– 'ପଚାଶ ଟଙ୍କା କେତେ ମ ? କୋଡ଼ି କୋଡ଼ି ହୋଇ ସାଆନ୍ତେ କେତେ ହବ କୁହ ।'

'–ଦି' କୋଡ଼ି ପୁଣି ଦଶ ଟଙ୍କା ।'

'–ଏଁ, ଏତେ ଟଙ୍କା ମିଳିବ ?'

'–ହଁ, ଥାନାବାବୁ ଗାଁରେ ଗାଁରେ ଏକଥା ଲୋକଙ୍କୁ ବୁଝେଇବାକୁ ମତେ କହିଛନ୍ତି । ସେଠାରେ ଗାଈ ଗୋରୁ ମଣିଷଙ୍କ ପାଇଁ ଖାଇବା ପିଇବାର ସୁବିଧା ଅଛି । ବାଟରେ ଯଦି ଭଜନିକୁ ଦେଖିବି, ତାକୁ ବୁଝେଇ କହିଦେବି ।'

ସରସୀ କହିଲା– 'ସାଆନ୍ତେ, ଦି'ଦିନ ନିକିମା ହେଲେ ତ ପୁଣି ଏ ଯିବେ । କେତେବେଳେ ସିନା ଟଙ୍କା ମିଳିବ, ଆଗ ତ ପୁଣି ବାଟ ଖରଚ ଲୋଡ଼ା ।'

ପଞ୍ଚୁଆ କାଳିଆକୁ ଘେନି କେତେବେଲୁ ଦଫାଦାରଙ୍କ କଥା ଶୁଣୁଛି, ଏ କଥା କେହି ଜାଣନ୍ତି ନାହିଁ । ଦେଶୀ କୁକୁର କାଳିଆ । 'ଧ' ବୋଲି ଧରେଇଲେ କାଳିଆ ଗାଈ ବଳଦଙ୍କ ଗଳା ବି ଝୁଣି ଦେବ । ପଞ୍ଚୁଆ ଓ କାଳିଆ ଭିତରେ ଏ ଅଭେଦ ପ୍ରୀତି ଗାଁ ଲୋକେ ଜାଣନ୍ତି । କାଳିଆ ପାଇଁ ପଞ୍ଚୁଆକୁ ଏଥିପାଇଁ ସମ୍ମାନ ବି କରନ୍ତି ।

'– କିରେ ପଞ୍ଚୁ, କାଳିଆକୁ ଘେନି କଟକ ଯା, ଏ ଯେମିତି ନାଗଣ କୁକୁର କେଜାଣି ତତେ କିଛି ମିଳିଯାଇପାରେ ।'

'–ଏ ଦେଶୀଟା କଅଣ କାମ ତୁଲେଇ ପାରିବ ?' କହି ପଞ୍ଚୁଆ କାଳିଆ ମୁଣ୍ଡରେ ହାତ ବୁଲେଇ ଆଣିଲା । ପ୍ରଭୁର ସ୍ନେହ କୁକୁର ବୁଝେ ଲାଞ୍ଜ ପିଟି ଛାମୁ ଗୋଡ଼ରେ ମାଟିଖୋଳି କାଳିଆ ଜଣେଇ ଦେଲା ଯେ ସେସବୁ କାମ ତୁଲେଇ ପାରିବ ।

ପୁରୀ ସହର ଜାଗାଘରେ ତାଲିମ୍ ହୋଇଛି କଣ୍ଠ ପୂଝାରୀ । ତା'ର କୈଶୋର କାଳ ପୁରୀର ଗୋଟାଏ ବିଖ୍ୟାତ ଆଖଡ଼ା ଘରେ କଟିଯାଇଛି । ସାଧନା ଓ ସ୍ମୃତି ଚିହ୍ନ ପାଇଁ ଏବେ ବି ସେ କପାଳ ଶିଖରୁ ନାସାଗ୍ର ପର୍ଯ୍ୟନ୍ତ ସିନ୍ଦୂରକଲି ମାରେ । କାନ୍ଧ ଉପର ଗାମୁଛାଟା ତା'ର ପ୍ରତି ପଦକ୍ଷେପରେ ଉଠେ, ଆଉ ପଡ଼େ । ଏଇଟା ଏଡ଼େ ଅଭ୍ୟାସରେ ଶେଷକୁ ଆସିଗଲା ଯେ, ପାଦତାଳ ଛାଡ଼ି କଥାତାଳରେ ବି ତାହା ଏବେ କଣ୍ଠ କାନ୍ଧ ଉପରେ ନାଚିବାକୁ ଆରମ୍ଭ କରିଛି ।

ଯେଉଁ ବୋଦାକୁ ଧୋବା ପାରେନି, କଣ୍ଠ ତାହା ବେକରେ ଛୁରି ଦିଏ । ଏ ଅସାଧାରଣ ସାଧନା ସେହି ପୁରୀ ରହଣି ଭିତରେ ସେ ଆୟତ୍ତ କରିଛି । ଏ ସବୁର କର୍ମକ୍ଷେତ୍ର ନିରୂପିତ ହୋଇ ରହିଛି । ତେଣୁ କାହାର ଦରକାର ହେଲେ ଜଣାଶୁଣା

ଦୁଇଟଙ୍କା ପାଉଣାରେ କଣ୍ଢ ଜୀବ ବଧ କରିଦିଏ । ସେଠାରୁ ଫେରିଆସି ଶିବ ଦେବାଳୟ ଭିତରେ କଣ୍ଢ ସନ୍ଧ୍ୟା ଆଳତି ବୁଲାଏ । ଏ ବ୍ୟବସାୟରେ ତାକୁ ଦିନେ କ୍ଷତି ସହିବାକୁ ପଡ଼େନି । କାରଣ ତାହାର ଉତ୍ସାହଦାତା ଓ ପୃଷ୍ଠପୋଷକ,. ସବୁ କଥାରେ - ହେତୁକ ହେଉ ବା ଅହେତୁକ ହେଉ, ଯେଉଁମାନେ ଆଗଭର ସେହି ସ୍କୁଲ ଓ କଲେଜ ଛାତ୍ର ।

କଣ୍ଢ ପଞ୍ଝୁଆ ପଛରେ ଛିଡ଼ାହୋଇ କଅଣ କିପରି ବୋଲି ପଚାରିଲା । ଦଫାଦାର ବାବୁ ତାକୁ ଦେଖି କହିଲେ, 'ମାଲିକେ, ମେଣ୍ଢାଟା ଥରେ ତାଳ ପକାଉ!'

'—ମହାରାଜେ, ଏ ବା କି କଥା, ବସିବା ହେଉ' କହି କଣ୍ଢ ବାହାସ୍ଫୋଟ ମାରି ତା'ର ପ୍ରିୟ ମେଣ୍ଢାଟିକୁ ଆହ୍ୱାନ କଲା । ଏ ଦୃଶ୍ୟ ଗାଁଲୋକଙ୍କର ପୁରୁଣା ହେଲେ ବି, ସବୁଥର ଏଥିରେ ନୂତନତା ପ୍ରକଟେ; ତା'ର କାରଣ କଣ୍ଢର କହିବା ଚାତୁରୀରେ ପୁରୀରେ ନୀଳଚକ୍ର ମଣ୍ଡଳର ଭାଷା ଫୁଟେ ବୋଲି ।

କଣ୍ଢ ମେଣ୍ଢାଟିଏ ପାଳିଛି । ଦୀର୍ଘକାୟ ମେଣ୍ଢା । କେଶରୀ କେଶର ଭଳି ତା'ର ଗଳା ଦେଶର କେଶଗୁଚ୍ଛ ଅତି ସାନ୍ଦ୍ର । ଶିଙ୍ଘ ବାଙ୍କିଯାଇ ଶିଖଲୋକର ଶ୍ମଶ୍ରୁ ବନ୍ଧନ ପରିପାଟୀ ଭଳି ମୁହଁ ଉପରେ ତାହା ଲାଖି ରହିଛି । କଣ୍ଢ ଏହି ଜୀବଟିକୁ ପାଳିବା ପାଇଁ ଯାହା ଖର୍ଚ୍ଚ କରେ, ସେଥିରେ ସେ ଦୁଇ ପ୍ରାଣୀ କୁଟୁମ୍ବ ସ୍ୱଚ୍ଛନ୍ଦରେ ପୋଷି ପାରନ୍ତା । କଂସେଇ ମାଧବ ମିଆଁ ଚାଳିଶ ଟଙ୍କା ହାଙ୍କିଥିଲା; ତଥାପି କଣ୍ଢ ଦେଇନାହିଁ ।

ଦୁଇଦିନ ପରେ ସିନ୍ଦୂରା ଫାଟିଲା ବେଳକୁ ସେହି ଗାଁଆର ନଈବନ୍ଧ ଉପରେ ଲୋକେ ଦେଖିଲେ, କଣ୍ଢ ଚାଲିଛି । ମେଣ୍ଢାକୁ ସାଙ୍ଗରେ ଧରି, ତା ପଛକୁ ପଞ୍ଝୁଆ ଟାଣୁଛି କାଳିଆକୁ, ସବା ଶେଷରେ ଭଜନି ଚାଲୁଛି – ସାଙ୍ଗରେ ଉଜଳା ଓ ତା'ର ଝିଅ ବଉଳି ।

କଟକର ଗୋକୃଷି ପ୍ରଦର୍ଶନୀର ବିରାଟ ପଡ଼ିଆ । ସହରର ଛାତି ଉପରେ ପଲ୍ଲୀର ଗୋଧନ, ପଲ୍ଲୀର କୃଷିଦ୍ରବ୍ୟ, ପଲ୍ଲୀର ସରଳ ମଳିମୁଣ୍ଡିଆ କୃଷକର ଉପସ୍ଥାନ ।

ଗହଳି ଭିତରେ ପଞ୍ଝୁ, କଣ୍ଢ ଓ ଭଜନି ଯେଝାର ଜନ୍ତୁକୁ ଠିଆ କରାଇ ଭାଳୁଛନ୍ତି, ଏଠି କଅଣ ହେଉଛି? ମଟରଚଲା ଶବ୍ଦରେ ଚମକି କଣ୍ଢର ମେଣ୍ଢା ଦି'ଥର ପଘା ଛିଣ୍ଡେଇ ପଳେଇଥିଲା । ଅଠର କୋଶ ବାଟ ଚାଲିଆସି ଉଜଳା ଆଉ ଛିଡ଼ା ହୋଇ ପାରୁନି । ତା'ର ଦୁଇ ଆଖିରୁ ଦୁଇ ଧାର ଲୁହ ବାହାରି ଆସିଛି । ଭଜନି କେତେ ବାଟ ବଉଳିକୁ କାନ୍ଧରେ ବୁହାଇ ଆଣିଲା, ଶେଷକୁ ଆଉ ପାରିଲା ନାହିଁ । ଚାରିମାସର ଛୁଆ ବାଛୁରୀ ଅକାତ ହୋଇ ପଡ଼ିଗଲାଣି । ପିଲାଟି ଦିନୁ ଭଜନି ବଉଳିକୁ ମୁଗଚୁନି ଖୁଆଇବା ଶିଖାଇଛି; ଏଠି ନଡ଼ାକୁଟା ଛଡ଼ା ଆଉ କିଛି ମିଳୁନି । ଜଣେ ବାବୁଙ୍କୁ ସେ ଏ କଥା କହିଥିଲା । ସେ ବାବୁ କହିଲେ, ଆଉ ଜଣେ ବାବୁଙ୍କୁ କହିବାକୁ । ସେ ବାବୁ ପୁଣି କହିଲେ ଅନ୍ୟ ଜଣେ ବାବୁଙ୍କୁ କହିବାକୁ । ଏତେ ବାବୁଙ୍କୁ କହିବାକୁ ଭଜନିର ଆଉ ସମୟ ନଥିଲା ।

ହଠାତ୍ ରୋଳ ଉଠିଲା "ମନ୍ତ୍ରୀ ମଟର", "ସାହେବ ମଟର", "ହାକିମ ମଟର"। ହଠାତ୍ ଗୋଳ ହୋଇଯିବାରୁ କାଳିଆର ମିଂକାସ୍ ତାତିଗଲା। ନଇଲେ ଏତେବେଳଯାଏ କୁକୁଡ଼ା ବଖରା ଆଡ଼କୁ ଅପଲକ ଆଖିରେ ସେ ଚାହିଁ ରହିଥିଲା। ସେତିକିରେ ତା'ର ଯାହା ଶାନ୍ତି ଥିଲା ତାହା ନଷ୍ଟ ହୋଇଯିବାରୁ ସେ ଭୁକିବାକୁ ଆରମ୍ଭ କରିଦେଇଛି।

ସେହି ପଡ଼ିଆରେ ସଭା ହେଲା। ପେଟ ଦି'ଦଉଡ଼ି ହୋଇଯାଉଥିଲେ ବି ପଞ୍ଚୁ, କଣ୍ଟୁ ଆଉ ଭଜନି ସଭା ଦେଖୁଥାନ୍ତି। ଦେଖିବା ମିଛ; ଶୁଣୁଥାନ୍ତି ଯାହା। 'ମନ୍ତ୍ରୀ ବୋଲି କଅଣ ପଦାର୍ଥ, ସେ ଦେଖିଲେ ନାହିଁ। ଡାକବାଜି ଯନ୍ତ୍ରରେ ସେ କୁହାଟ ଶୁଣିଲେ– 'ହଲାଣ୍ଡ ଡେନମାର୍କରେ ଗାଈଗୋରୁମାନଙ୍କୁ ଯେପରି ଖାଦ୍ୟ ଦିଆଯାଏ, ଯେପରି ଭଲ ଅବସ୍ଥାରେ ରଖାଯାଏ, ଆପଣମାନେ ସେହିଭଳି ଖାଦ୍ୟ ଓ ଅବସ୍ଥାରେ ନିଜ ନିଜର ଗୋଧନ ପ୍ରତିପାଳନ କରନ୍ତୁ। ଏ ବିଷୟରେ ଅନେକ ବହି ଲେଖାଯାଇଛି, ତାହା ପଢ଼ନ୍ତୁ। ଏଠାରେ ଗୁହାଳ କି ଆଦର୍ଶ ଭାବରେ ତିଆରି ହେବା ଉଚିତ, ସେ ବିଷୟରେ ଜଣେ ଡେନମାର୍କରୁ ଟ୍ରେନିଂ ପାଇ ଆସିଥିବା କୃଷିବିଭାଗର ଅଫିସର ବକ୍ତୃତା ଦେବେ। କୁକୁଡ଼ା କିପରି ବ୍ୟବସାୟ ସୂତ୍ରରେ ପାଳିବାକୁ ହେବ, ତାହା ବି ଜଣେ ବିଶେଷଜ୍ଞ ବୁଝାଇ ଦେବେ।' ଶେଷରେ ଯନ୍ତ୍ରରୁ ବାହାରିଲା–

"ଏହି ଆୟୋଜନଟିକୁ ସାଫଲ୍ୟମଣ୍ଡିତ କରିଥିବାରୁ ମାନ୍ୟବର ମନ୍ତ୍ରୀ ମହୋଦୟ କୃଷି ବିଭାଗକୁ ଧନ୍ୟବାଦ ଦେଉଛନ୍ତି ଓ କର୍ମଚାରୀମାନଙ୍କୁ ଉତ୍ସାହିତ କରିବା ପାଇଁ ଏକଶତ ଟଙ୍କା ଦାନ କରୁଛନ୍ତି।"

ସଭା ଶେଷ। ଅଠର କୋଶ ବାଟରୁ ଆସିଥିବା ତିନିଟା ଲୋକ ଏହିକଥା ଶୁଣିଲେ। ଆଉ ଟିକକ ପରେ ପୁଣି ଶୁଣାଗଲା– "ଏହିମାନେ ପୁରସ୍କାର ପାଇଛନ୍ତି, ପ୍ରତ୍ୟେକ ପଚାଶଟଙ୍କା।

ଭଲ ଦୁଧିଆଳୀ ଗାଈ ପାଇଁ ମହନ୍ତ ମହାରାଜଙ୍କର ପାଟ ଗାଈ।

ଭଲ ବିଲାତି କୁକୁର ପାଇଁ ଡେପୁଟି ମାଜିଷ୍ଟ୍ରେଟ୍ ଭଟ୍ଟାଚାର୍ଯ୍ୟଙ୍କର ଲିଲି କୁକୁର।

ଭଲ ମେଣ୍ଢା ପାଇଁ ବିଖ୍ୟାତ ବ୍ୟବସାୟୀ ଓ କାରପଟ୍‌ଦାର ଆବୁ ହୋସେନ୍‌ଙ୍କର ମେରୀ ପ୍ୟାରୀ ମେଣ୍ଢା।

ଭଲ ଛେଳି ପାଇଁ....

ପଞ୍ଚୁ ଅନେଇଲା ଭଜନି ଆଡ଼େ, ଭଜନି ଚାହିଁଲା ପଞ୍ଚୁଆଡ଼େ। କଣ୍ଟୁ ଚାହିଁଛି ଆଉଜଣକୁ। ସେ ଆଉ କେହି ନୁହେଁ, କଟକର କଂସେଇ ସମ୍ରାଟ ସରିଫ୍ ମିଆଁ। ବ୍ୟବସାୟୀ ସେ। ଦେଖିଲା, ଏହି ପଡ଼ିଆରୁ ସେ କିଛି ମାଲ୍ ଯଦି ଯୋଗାଡ଼ କରିପାରେ, ତେବେ ଶସ୍ତା ଓ ସୁବିଧାରେ ସେ ପାଇଯିବ।

ଅଣ୍ଟାରେ ତିନିଜଣଙ୍କର ପଇସା ନାହିଁ । ଅଠର କୋଶ ଫେରନ୍ତି ବାଟକୁ ଚାହିଁଦେଲେ ତିନିଜଣଙ୍କର ହାଲୁକ ଶୁଖିଯାଉଛି । ସରସୀ ବାରଅଣା ଅଢ଼େଇ ପଇସା ଦେଇଥିଲା । ବାଟରେ କୁଣ୍ଡା, ଛଣ, କଞ୍ଚାଚୁଡ଼ା କିଣାରେ ସେତକ ସରିଯାଇଛି । କଣ୍ଟୁ ଟିକିଏ ଅଫିମ ଖାଏ; ବାକି ଯାହା ଥିଲା, ସେତକ ଅଫିମରେ ସରିଛି ।

କାଳିଆ କୁକୁର ପଣ୍ୟ ନୁହେଁ । ତେଣୁ ପଞ୍ଚୁ ସେ ବିଷୟରେ ନିଶ୍ଚିନ୍ତ । ଉଜଳା ବଉଳି ମାଆ ଝିଅ । ଗୋଟିକ କଥାରେ ଭଜନିର ସଂସାର । ଶେଷରେ ରହିଲା କଣ୍ଟୁର ମେଣ୍ଢା । ଏହାରି ଉପରେ ଆଖି ପକେଇଛି ସରିଫ୍ ।

ଗାଁ ସାଥୀ ଦୁଇଜଣ ଓ ନିଜର କ୍ଷୁଧାର ଦାବଦାହ ସମ୍ଭାଳିବାକୁ ଯାଇ କଣ୍ଟୁ ମେଣ୍ଢାକୁ ଛାଡ଼ିଦେଲା ପାଞ୍ଚ ଟଙ୍କାରେ ।

ଫେରନ୍ତା ବାଟ । ମୁହଁରେ କଥା ନାହିଁ । ବଉଳିର ଅବସ୍ଥା ବଳେଇଛି । ଭଜନି କାନ୍ଧେଇ କାନ୍ଧେଇ କାନ୍ଧ ତା ପାଚିଗଲାଣି । ବଉଳିର ପେଟ ଫୁଲି ଯାଇଛି । ଗଁ ଗଁ କରୁଛି । ରକ୍ତ ବାନ୍ତି !

ଉଜଳାର ପଛ ଖୁରା ଖଲି ଧରିଛି । ଗଳାବେଳୁ ଯେଉଁ ଦି'ଧାର ଲୁହ ସେ ବୁହାଇ ଚାଲିଥିଲା, ସେହି ଦୁଇଧାର ଲୁହ ବହି ଚାଲିଛି ।

କାଳିଆ ସୁବିଧା ପାଇଲେ ବଉଳିର ମୁମୂର୍ଷୁ ଦେହକୁ ଶୁଙ୍ଘି ଦେଉଛି । କାନ ପାଖରେ ମୁହଁ ଗୁଞ୍ଜି ସେ ଦଣ୍ଡେ ରହି ଯାଉଛି ।

କେତେବେଳକୁ ଭଜନି ବଉଳିକୁ କାନ୍ଧରୁ ଖସେଇ କହିଲା– 'ପଞ୍ଚୁ, ସରିଗଲା' !

କଣ୍ଟେ ଆଉ ପଞ୍ଚୁ ଦେଖିଲେ– ହଁ ସରି ଯାଇଛି । ବଉଳିର ମୁହଁର ଯେଉଁ ଝଲକ ରକ୍ତ ବହି ଯାଇଛି, ତାହା ସହିତ ବଉଳିର ପ୍ରାଣ ଖସି ଯାଇଛି ।

ଆକାଶ ତାରକିତ ଥିଲା । ସେହି ଆଡ଼କୁ ଚାହିଁ ଭଜନି କହିଲା– 'କଣ୍ଟୁ ମହାପ୍ରୁ, ସର କଅଣ ମତେ କହିବ ? ସେ ବଞ୍ଚିବ ଟି ? ମୁଣ୍ଡ ତ ପିଟିଦେବ ମୁଁ କଅଣ କରିବି ? ଭଗବାନ କୋଳରେ କୁଆଁ ଶୁଣେଇ ନାହାନ୍ତି, ବଉଳି ତା'ର ଝିଅ ଥେଲା ।'

ସେଇଠି କଣ୍ଟୁ ଶେଷଥରକ ପାଇଁ କପାଳ ଶିଖରୁ ସିନ୍ଦୂରକଲି ପୋଛିଦେଇ କହିଲା–

"ଦେ ଭାଇ, ବଉଳିଟାକୁ ସଡ଼କ ତଳକୁ ଗଡ଼େଇ ଦିଏ । ଆମେ ମଳିମୁଣ୍ଡିଆ ।"

କାଳିଆ ପଛେ ପଛେ ଗଲା । ବଉଳିର ଶବ ଯେଉଁଠି ପଡ଼ିଲା, ସେଇଠି ସେ ଦଣ୍ଡେ ଛିଡ଼ାହୋଇ ରହିଗଲା ।



ଭୁବନେଶ୍ୱର ବେହେରା

# ନାଚେ ବେନୁଆଁ ନାଚେ

ଦୁଇ ପାହାଡ଼ରେ ଯେତେବେଳେ ନିଆଁ ଲାଗେ ଆଉ ରାତିରେ ସେ ନିଆଁ ଗୋଟିଏ ବିରାଟ ସୁନାହାରର ରୂପ ନିଏ, ମାଙ୍କଡ଼ ବାହାଘରର ରୋଶଣି କଥା ମନେପଡ଼ିଯାଏ - ଆଉ ତା' ସାଙ୍ଗରେ ମନେପଡ଼େ ପିଲାଦିନର କେତେ ଅଭୁଲା ସ୍ମୃତି ।

ସେ ଦିନର ସ୍କୁଲ ଜୀବନ । ଛାଟ ବିନା ପାଠର କଳ୍ପନା ମଧ କେହି କରନ୍ତିନି । ମାଷ୍ଟର ମାନଙ୍କୁ ତେଣୁ ବାପାଙ୍କ ଅନୁରୋଧ, ସେମାନେ ମନଇଚ୍ଛା ଯେତେ ମାଡ଼ ଦେବେ ଦିଅନ୍ତୁ, ପୁଅକୁ କୌଣସିମତେ ମଣିଷ କରନ୍ତୁ । ସେକାଳର କର୍ତ୍ତବ୍ୟପରାୟଣ ଶିକ୍ଷକମାନେ ଏପରି ଅନୁରୋଧ ଏଡ଼ିଦେବେ ବା କେମିତି ? ଆମପରି ମାଙ୍କଡ଼ମାନଙ୍କୁ ମଣିଷ କରିବାକୁ ଯାଇ ପିଠିରେ ଗୋଟା ଗୋଟା କନିଅର ଛାଟ ଛିଣ୍ଡାଇଦିଅନ୍ତି; ଖାଲି କିଛି ଗୋଟାଏ ବାହାନା ମିଳିଗଲେ ହେଲା । କିଏ କ୍ଲାସ୍‌ରେ କାହାକୁ ଦେଖି ହସୁଛି, କିଏ କାହାକୁ ଖତେଇ ହେଉଛି, କିଏ ତେନ୍ତୁଳି ଖାଉଛି, କିଏ କାହାର ଟାଙ୍ଗରା ଟାଙ୍ଗରା ମୁଣ୍ଡରେ ଥରେ ଦି'ଥର ଠଣା ମାରିଛି, କିଏ ଅବା କାହାର ଚୁଟି ଟାଣିଛି । ବାସ୍ ! ତଥାପି ସେଦିନ କାହା ବାଡ଼ିରେ ଗୋଟାଏ ଦି'ଟା କାକୁଡ଼ି ନିର୍ଲଜ୍ଜ ଭାବରେ ଝୁଲୁଥିବା ଦେଖିଲେ ଅଥବା କାହା ଗଛର ପିଜୁଳି କିମ୍ବା ଆମ୍ବ ଆମକୁ ଦେଖି ସାମାନ୍ୟ ଟିକିଏ ପବନରେ ବି ଅଣ୍ଟା ହଲାଇ ମୁଣ୍ଡ ଟୁଙ୍ଗାରିଲେ ଲୋଭ ସମ୍ଭାଳି ହୁଏନି, କାନ୍ଥ ବାଡ଼ ଡେଙ୍ଗ ହୋଇଯାଏ । ଏପରି ଘଟିଲେ 'ଚୋରି କରିବା ମହାପାପ' ବୋଲି କହି କୌଣସି କୌଣସି ଶିକ୍ଷକ ଆମ ପିଠିର ଛାଲ ଉତାରିବାକୁ ଚେଷ୍ଟା କରନ୍ତି । ଆଉ ସେପରି ଦୋଷ କରିଥିବା ଯୋଗୁଁ ଦଣ୍ଡ ଯେ ଆମର ପ୍ରାପ୍ୟ ସେକଥା ବୁଝିହୁଏ । କିନ୍ତୁ ଏକଥା ବୁଝିହୁଏନି ଯେ, ପଞ୍ଚମ ଷଷ୍ଠ ଶ୍ରେଣୀ ପଢ଼ିଲାବେଳେ ଆମର କି ଅବା ବୟସ ! ସେଥିରେ ଆମେ କାହିଁକି ଯେ 'ନିଦ୍ରା ପରିହରି, ଚିନ୍ତାର ଲୋଚନ ଫେଡ଼ି ନିଃଶବ୍ଦେ ଜୀବନସ୍ରୋତ ଧାଉଁଛି କିପରି, ଭେଟିବାକୁ ମୃତ୍ୟୁସିନ୍ଧୁ କରାଳ ଲହରୀ'·ବୋଲି ଜୀବନ ସମ୍ବନ୍ଧରେ ଚିନ୍ତାକରି ବସିବୁ, ଆଉ ଡୁଡୁ, ବୋହୂଚୋରି, ଫୁଟବଲ ନ ଖେଳି 'କି ବେଗରେ ଯାଉଅଛି ଚାଲି, ସେହି ସ୍ରୋତ ସଙ୍ଗେ ଭାସି ଜୀବନର ସୁଖରାଶି' ବୋଲି ଶୋକୋଚ୍ଛ୍ୱାସ ଢାଳିବୁ ! ଏସବୁର ଅର୍ଥ ବୁଝି ନ ପାରିଲେ ଅଥବା କିଛି

ନ ବୁଝି ମୁଖସ୍ଥ କରି ଓଗାଳିଲାବେଳେ ଭୁଲଭଟକା ହେଲେ ଯେଉଁ ମାଡ଼ ହୁଏ ସେତିକିବେଳେ ବିନା ଦୋଷରେ ମାଡ଼ ହେଉଛି ବୋଲି ଦେହରେ ନିଆଁ ଜଳେ, କିନ୍ତୁ କିଛି କରି ହୁଏନି । ହଷ୍ଟେଲ୍ ଛାଡ଼ି ଅନ୍ୟ କେତେଜଣଙ୍କ ପରି ଘରକୁ ପଳାଇଗଲେ ବା ରକ୍ଷା- କିନ୍ତୁ ତେଣେ ବାପା ବସିଛନ୍ତି, ଜବରଦସ୍ତି ପୁଣି ସ୍କୁଲକୁ ନେଇ ଆସିବେ । ମାଆଙ୍କର ତ ଆପତ୍ତି କରିବାର କିଛି ଅଧିକାର ନାହିଁ - ଏସବୁ ବିଷୟରେ କୁଆଡ଼େ ତାଙ୍କର ମୁଣ୍ଡ ନ ଖେଳାଇବା କଥା - ଘରକୁ ପଳାଇଗଲେ ମାଡ଼ ଖାଲି ଦ୍ୱିଗୁଣିତ ହେବ ଯାହା । ତେଣୁ ଛାତ୍ରଙ୍କର ଏକମାତ୍ର ପରମବନ୍ଧୁ ଖରାଛୁଟି ପାଇଁ ଆମେ ଦିନ ଗଣି ବସୁ । ସେହି ପ୍ରିୟ ଖରାଛୁଟି ପାଖେଇ ଆସିଲା ବେଳକୁ ହିଁ ଏମିତି ପାହାଡ଼ ମାନଙ୍କରେ ମାଙ୍କଡ଼ ବାହାଘରର ରୋଶଣି ଦପ୍ ଦପ୍ କରି ଜଳିଉଠେ ।

ରୋଶଣି ଆଲୁଅ ଦେଖି ମୋର ପ୍ରବଳ ଇଚ୍ଛାହୁଏ କେମିତି ଏ ବାହାଘର ଥରେ ଦେଖନ୍ତି । ଏଡ଼ିକି ଟିକିଏ ଟିକିଏ ମାଙ୍କଡ଼, ଆଉ ସେମାନଙ୍କର କି ବିରାଟ ରୋଶଣି ! ଆଶ୍ଚର୍ଯ୍ୟ ଲାଗେ । ଆମ ସବ୍ - ଜାନ୍ତା ଉପର କ୍ଲାସର ପିଲାମାନେ କିନ୍ତୁ 'ଟିକିଏ ଟିକିଏ ମାଙ୍କଡ଼' ବୋଲି କହିଲେ ବିରକ୍ତ ହୁଅନ୍ତି, ଆଉ ହନୁମାନ - ଅଙ୍ଗଦ - ସୁଗ୍ରୀବଙ୍କ ସାଙ୍ଗରେ ମର୍କଟସୁନ୍ଦରୀମାନଙ୍କ କଥା କହିବସନ୍ତି । ଆମର ବିଶ୍ୱାସ ହୋଇଯାଏ ଯେ, ଯୁବରାଜ ଅଙ୍ଗଦଙ୍କ ବାହାଘରର ଏ ରୋଶଣି ।

ତେବେ ଯୁବରାଜ ଅଙ୍ଗଦ ଏମିତି ପ୍ରତିବର୍ଷ ଖରାଛୁଟି ପାଖେଇ ଆସିଲାବେଳକୁ କାହିଁକି ଯେ ବାହାହୁଅନ୍ତି ଆଉ ସବୁ ରାତିରେ କାହିଁକି ଏ ବାହାଘରର ପ୍ରଶେସନ୍ ପାହାଡ଼ରୁ ପାହାଡ଼ ଡେଇଁ ଚାଲିଥାଏ, ଆଉ ବେଳେ ବେଳେ ପୁଣି ସେହି ପୁରୁଣା ପାହାଡ଼ରେ ଉଙ୍କିମାରେ, ସେ କଥା ବୁଝିହୁଏନି । ସେଇ ବୁଦ୍ଧିଆ ସବ୍‌ଜାନ୍ତାମାନେ ସେକଥା ମଧ୍ୟ ବୁଝାଇଦିଅନ୍ତି । କେତେ ରୋଶଣିଆ ମାଙ୍କଡ଼ କୁଆଡ଼େ ଏତେ ବାଟ ଚାଲି ଚାଲି ଥକିଗଲା ପରେ ତାଙ୍କ ଯୂଥପତି ଆଉ ପ୍ରହରୀଙ୍କ ମାଡ଼ଭୟରେ ସେମାନଙ୍କ ଅଜାଣତରେ କେଉଁ ଗଛମୂଳେ ଲୁଚିରହନ୍ତି, ଆଉ ସମସ୍ତେ ଚାଲିଗଲା ପରେ ସୁବିଧା ଦେଖି ପୁଣି ତାଙ୍କର ରୋଶଣି ଧରି ବାହାରନ୍ତି ସେଇ କିଷ୍କିନ୍ଧ୍ୟା ଅଭିମୁଖରେ । ଗୋଟିଏ ଜଟିଳ ସମସ୍ୟାର ଏପରି ଏକ ସରଳ ସମାଧାନ ହୋଇଯାଏ ।

ବିରାଟ ବିରାଟ ମାଙ୍କଡ଼ଙ୍କ କଥା ଶୁଣିଲା ପରେ ରାତିରେ ଲୁଚି ଛପି ସେ ବାହାଘର ଦେଖିଯିବାକୁ ଆଉ ସାହସ ହୁଏନି - ଇଚ୍ଛା, ଇଚ୍ଛାରେ ହିଁ ରହିଯାଏ । ତଥାପି ସେ ମାଙ୍କଡ଼ ବାହାଘରର ରୋଶଣି ମନରେ ପୁଲକ ଦିଏ, ଖରାଛୁଟି ପାଖେଇ ଆସିଲା ବୋଲି ଜାଣି ହୋଇଯାଏ ଏବଂ ଘରକଥା ବାରମ୍ବାର ମନେପଡ଼େ । ହଷ୍ଟେଲର ଅସିଝା ଡାଲି ଆହୁରି ପାଣିଆ ଲାଗେ, ବଗଡ଼ା ଭାତ ତଣ୍ଟିକୁ ଗଳେନି, ତରକାରି ରାଗରେ ପାଟି ଜଳାଏ । ସତରେ ମା' ଯେମିତି ରାନ୍ଧନ୍ତି ! ଆଉ ଏ ଭୁଷୁଣ୍ଡା ଝାଳୁଆ ରାନ୍ଧୁଣିଆ ଗୁଡ଼ାକ । କିଏ

ଖାଇଲେ କି ନ ଖାଇଲେ ତାଙ୍କର ଯାଏ ଆସେ କେତେ ? ଏ ହଷ୍ଟେଲ ସୁପରିଟେଣ୍ଡେଣ୍ଟ୍ ମାନେ କାହିଁକି ଯେ ଏଗୁଡ଼ାଙ୍କୁ ରଖନ୍ତି ?

ଛୁଟିରେ ଡାଳମାଙ୍କୁଡ଼ି ଖେଳ କଥା ମନେପଡ଼େ । ବାପା କ'ଣ ସନ୍‌ଷ୍ଟ୍ରୋକ୍ ଫ୍ରୋକ୍ କଥା କହି ଦିନ ଦି' ପହରବେଳେ ଏଇ ଡାଳମାଙ୍କୁଡ଼ି ଖେଳିବାପାଇଁ ଆମ୍ବତୋଟାକୁ କିମ୍ବା ପହଁରିବା ପାଇଁ ପୋଖରୀକୁ ନ ଯିବାକୁ ତାଗିଦ୍ କରି ଦେଇଥାଆନ୍ତି । କିନ୍ତୁ ଖରାବେଳେ ସେ ଯେତେବେଳେ ଶୋଇପଡ଼ି ଘୁଙ୍ଗୁଡ଼ି ମାରନ୍ତି, ସୁଯୋଗ ମିଳିଯାଏ ।

ଆଉ ମନେପଡ଼େ ବେନୁଆଁ ନାଚ ।

ଆମ ଗାଁ ମାନଙ୍କରେ ମାଙ୍କଡ଼ ନାଚକୁ କାହିଁକି ଯେ ବେନୁଆଁ ନାଚ କହନ୍ତି ଠିକ୍ ବୁଝି ହୁଏନି । ବୋଧହୁଏ ସେ ମାଙ୍କଡ଼ନଚାଳିଙ୍କ ନିଜ ଭାଷା । ମାଙ୍କଡ଼କୁ ସେମାନେ ତାଙ୍କ ଛତିଶଗଡ଼ୀ ଭାଷାରେ ବେନୁଆଁ କହୁଥିବେ । 'ନଚେ ବେନୁଆଁ ନାଚେ' ମନେପଡ଼ିଲାକ୍ଷଣି ମନ ଆନନ୍ଦରେ ଭରିଯାଏ ।

ବେନୁଆଁ ନାନା ଢଙ୍ଗରେ ଅଣ୍ଟା ହଲାଇ ହଲାଇ ନାଚେ । ଫ୍ରକ୍ ଖଣ୍ଡିଏ ପିନ୍ଧି ବୋହୂ ସାଜି ଯେତେବେଳେ ପାଣି ଆଣେ, ଟିକି ମୁଣ୍ଡରେ ଛୋଟ ଆଲୁମୋନିୟମ୍‌ର ଗିନାକୁ ତା' ହାତରେ ଜାବୁଡ଼ି ଧରିଥାଏ । ଲାଞ୍ଜ ତଳେ ଘୋଷାଡ଼ି ହୁଏ, ଠିକ୍ ପଣତ କାନି ପରି । ନଚାଳି ନାଚ ମଝିରେ ଚିତ୍କାର କରେ - 'ବେନୁଆଁ, ତୋର ଶଶୁର ଆସିଛନ୍ତି...', ଟିକି ଗୋଲ ମୁଣ୍ଡକୁ ଭୂଇଁରେ ଥାପି ବେନୁଆଁ ଆମ ଭିତରୁ କାହା ପାଦତଳେ ମୁଣ୍ଡିଆ ମାରେ । କେବେ ଆଖି ବୁଜି ଦେଇଥାଏ ତ [illegible] ଢୁଲୁଢୁଲୁ କରୁଥାଏ । ସେ ଯାହା ପାଦତଳେ ମୁଣ୍ଡିଆ ମାରେ ତାକୁ ଆମେ [illegible] . ବେନୁଆଁ ଶଶୁର' କହି ତାଳି ମାରି ନାଚି ଉଠୁ ।

ବେଳେବେଳେ ନଚାଳିର ଦିଓଟି ବେନୁଆଁ [illegible] । ଗୋଟିଏ ଫ୍ରକ୍ ପିନ୍ଧି କନିଆଁ ବନେ, ଆଉ ଆରଟି ଟୋପି ପିନ୍ଧି ବର ସାଜେ । କନିଆଁ ମୁଣ୍ଡରେ ଛିଟ କନା ଖଣ୍ଡିଏ ପକାଇ ନଚାଳି ଯେତେବେଳେ ବରକୁ କହେ - 'ଆରେ ବେନୁଆଁ, ଯା ଦେଖି ଆସିବୁ ତୋର କନିଆଁ ଦେଖିବାକୁ କେମିତି,' ସେତେବେଳେ ବର ଗମ୍ଭୀର ହୋଇ କନିଆଁ ପାଖକୁ ଯାଏ ଆଉ ଓଢ଼ଣୀ ଟେକି ତା' ମୁହଁ ବୁଲାଇଦିଏ, ଆମ ଭିତରେ ହସର ରୋଳ ଖେଳିଯାଏ । କେବେ କେବେ ବେନୁଆଁ ବର - ପିତା ହୁଏ; କାଖରେ ଛତା ଜାକି, ବାଡ଼ି ଧରି, ଠୁକୁରୁ ଠୁକୁରୁ କରି ବୋହୂ ଅନ୍ୱେଷଣରେ ବାହାରେ । ବେନୁଆଁ ଯେତେବେଳେ ସମୁଦ୍ର ଡେଇଁ ଲଙ୍କାକୁ ଯାଏ ଆଉ ନଚାଳିର ବାଡ଼ିଉଠାରେ କୁଦାମାରି ସେମିତି ଲଙ୍କାରୁ ଫେରିଆସେ, ଖେଳ ଶେଷ ହେଲା ବୋଲି ଆମେ ସବୁ ଜାଣିନେଉଁ । ବେନୁଆଁ ଶେଷରେ ମା'ଙ୍କ ପାଖରେ ମୁଣ୍ଡିଆ ମାରେ, ଆଉ ଆମେ ଖୁସିରେ ଘର ଭିତରକୁ ଦଉଡ଼ିଯାଇ ଚଣା, ମୁଗ, ବିରି, ଯାହା ମିଳିଲା ମୁଠିଏ ନେଇ ଆସି ତା' ଆଗରେ ବିଞ୍ଚିଦେଉଁ ।

କାଳେ କିଏ ସେହି ଅମୂଲ୍ୟ ସମ୍ପଦ ତା ହାତରୁ ଛଡ଼ାଇନେଇଯିବ, ସେଇ ଭୟରେ ବେନୁଆଁ ଦି' ହାତରେ ଚଣା ଗୋଟାଇ ଟପାଟପ୍ ପାଟି ଭିତରେ ଭର୍ତ୍ତି କରେ, ଆଉ ଗାଲର ଥଳି ଭରପୂର କରି ସମସ୍ତଙ୍କୁ ମିଟି ମିଟି କରି ଚାହେଁ ବେଶ୍ ହସିଲା ମୁହଁରେ, ସତେ ଯେମିତି 'ହାଓ ଡୁ ୟୁ ଡୁ' କହିବାକୁ ଚାହୁଁଛି ।

ଗୋଟାଏ ଘରୁ ବେନୁଆଁ ଯେତେବେଳେ ଆଉ ଗୋଟିଏ ଘରକୁ ତା'ର ନାଚ ଦେଖେଇବାକୁ ଯାଏ, ଆମେ ଗାଁର ସବୁ ପିଲା ତା' ପଛରେ ଗୋଡ଼ାଇ ଯାଉଁ । ସେଇ ଖେଳ- ଆଉ ଆମର ପୁଣି ସେଇ ଆନନ୍ଦ ।

ଏଇ ପିଲାଦିନର ସ୍ମୃତି ଯୋଗୁଁ ବୋଧହୁଏ ମାଙ୍କଡ଼ନାଚ ପାଇଁ ଆଜି ମଧ୍ୟ ମନରେ ଦୁର୍ବଳତା ରହିଯାଇଛି । ସେଦିନ ଘର ବାହାରେ 'ଡାକ୍ ଘିଡ଼ି ଡାକ୍' ଶୁଣି ନିଜ ଅଜାଣତରେ ହିଁ ଘରୁ ବାହାରି ଆସିଲି । ବୁଢ଼ା ତଳେ ବାଡ଼ି ପିଟି ପିଟି ଗୋଟାଏ ସ୍ୱରରେ ସେଇ ଏକା ତାଳ ହିଁ ଧରିଥାଏ । ଡାକ୍ ଡାକ୍ ସଙ୍ଗରେ ତାଳ ମିଳାଇ ମାଙ୍କଡ଼ଟି ହଲି ହଲି ନାଚୁଥାଏ ଛୋଟ ଛୁଆଙ୍କ ଥେଇ ଥେଇ ନାଚ ପରି । ଛଅଫୁଟିଆ ମସ୍ତବଡ଼ ସେ ବୁଢ଼ା ପାଖରେ ଟିକି ମାଙ୍କଡ଼ଟି କେମିତି ଅଖାଡୁଆ ଦିଶୁଥାଏ - ସମ୍ପୂର୍ଣ୍ଣ ଖାପଛଡ଼ା । ମାଙ୍କଡ଼ଟି ବୋଧହୁଏ ନିହାତି ସାନ ଆଉ ଅନୁଭୂତିବିହୀନ - ଅଣ୍ଟାକୁ ଉପର ତଳ କରି ହଲାଇବା ଛଡ଼ା ଆଉ କିଛି ଜାଣେନି । ମଝିରେ ମଝିରେ ଯେତେବେଳେ ନାଚ ବନ୍ଦକରି ହାଲିଆ ମୁହଁରେ ଚାରିଆଡ଼କୁ ଅନାଏ, ବୁଢ଼ା ଗଳାର ଶିକୁଳିକୁ ଜୋର୍‌ରେ ଟାଣି ଗାଳିଦିଏ ଆଉ ବାଡ଼ି ଉଠାଏ । ବିଚରା ମାଙ୍କଡ଼ ସ୍ପ୍ରିଂରେ ଚାବି ସରି ଆସିଥିବା ଗୋଟିଏ ଖେଳନା ପରି ଥମି ଥମି ଅଣ୍ଟାକୁ ଉପର ତଳ କରେ - ନିହାତି ଅନିଚ୍ଛାରେ, ମାଡ଼ ଡରରେ ।

ବଡ଼ ବୋରିଂ । ଘର ଭିତରକୁ ଚାଲିଆସିବା ଆଗରୁ କିନ୍ତୁ ମନେହେଲା ମୁଁ ବୁଢ଼ାକୁ କେଉଁଠି ଦେଖିଛି - ବେଶ୍ ଚିହ୍ନା ଚିହ୍ନା ମୁହଁ ।

ତା'ପରେ ବୁଢ଼ା ଯେତେ ଥର ଆସିଛି, ମୁଁ ଆଉ ବାହାରକୁ ଯାଇନି । ବରଂ ବୁଢ଼ାକୁ ସବୁଦିନ ପଖାଳ ଦେଇ ଘରକୁ ଆସିବାକୁ ଉତ୍ସାହିତ କରାଯାଉଛି ବୋଲି ବିରକ୍ତ ହୋଇଛି ।

ସେଦିନ ଟିକେ ଅନ୍ଧାରୁଆ ହୋଇଆସିଲାଣି । ମୁଁ କ'ଣ ଗୋଟିଏ ଗୁରୁତର ବିଷୟରେ ମନ ଦେଇଛି, ହଠାତ୍ 'ଡାକ୍ ଡାକ୍ ଘିଡ଼ି ଡାକ୍ ଡାକ୍' ସାଙ୍ଗକୁ ବାଡ଼ିର ଆବାଜ୍ ଆସିଲା । ଅବିରାମ ସେଇ 'ଡାକ୍ ଡାକ୍' ଆଉ ବାଡ଼ି ପିଟା ଶବ୍ଦ । ସନ୍ଧ୍ୟାରେ ମଧ୍ୟ ଏଥର ବିରକ୍ତ କଲାଣି ବୋଲି ବୁଢ଼ାକୁ ପାନେ ଦେବା ଇଚ୍ଛାରେ ମୋର ଚୌକି ଛାଡ଼ି ବାହାରିଛି, ଭିତର ବାରନ୍ଦା ପାଖରେ ଥମି ଠିଆହୋଇଗଲି । ବୁଢ଼ା ନୁହେଁ, ଏଗୁଡ଼ାକ ପାଲା ଲଗେଇଛନ୍ତି ।

ଟିକୁ - ମୋର ସାନପୁଅ ବାଡ଼ିଟିଏ ଧରି ଡାଇନିଂ ଟେବୁଲରେ ବାଡ଼େଇ 'ଡାକ୍ ଡାକ୍' କରୁଛି ଆଉ ସାନ ଭଣଜା ଟୁନା ଟେବୁଲ ଉପରେ ଗୋଡ଼ ବଙ୍କେଇ ଠିଆହୋଇଛ

ଓ ହାତ ଦି'ଟାକୁ ଦଉଡ଼ି ପରି ସିଧା ତଳକୁ ଝୁଲାଇ ଥେଇ ଥେଇ ନାଚୁଛି - ଠିକ୍ ବୁଢ଼ାର ସେଇ ମାଙ୍କଡ଼ ପରି ।

ମୁଁ ଚୁପ୍‌ଚାପ୍ ଠିଆହେଲି । ମଝିରେ ମଝିରେ ବାଡ଼ିର ତୋଡ଼ ଟିକିଏ ବଢ଼ିଗଲେ ଟୁନା ଟେବୁଲ ଉପରେ ଆହୁରି ଜୋର୍‌ରେ ଡିଆଁ ମାରୁଥାଏ ।

ଟିକୁ ଆଦେଶ ଦେଲା - କାନ ଧର୍ । ଟୁନା ଦି' ହାତରେ ନିଜ ଦୁଇ କାନ ଧରିଲା । ତା'ପରେ ପୁଣି ସେଇ ତାକ୍ ତାକ୍ । ଟୁନା କାନ ଧରି ଏଥର ଚାରିଆଡ଼ିକି ଘୂରି ଘୂରି ନାଚିବସିଲା । ତା' ଆଖି ଯେମିତି ମୋ ଉପରେ ପଡ଼ିଛି, ଟେବୁଲରୁ ସେ ଏକା ଡିଆଁକେ ତଳେ ହାଜର ହୋଇ ତୀର ପରି ଘର ପଛଆଡ଼େ ଅଦୃଶ୍ୟ ହୋଇଗଲା । 'ରାସ୍କେଲ, ଏତିକି ବେଳୁ ଲଙ୍କା ଡେଇଁଲାଣି' କହି ଟୁନାକୁ ଧରି ଠିକ୍ କରିଦେବା ଉଦ୍ଦେଶ୍ୟରେ ଟିକୁ ଯେମିତି ବୁଲିପଡ଼ିଛି ତା ଆଖି ମଧ ମୋ ଉପରେ ପଡ଼ିଗଲା । ଗୋଟିଏ ମୁହୂର୍ତ୍ତର ଇତସ୍ତତଃତା - ଆଉ ଆଖିପିଛୁଳାକେ ସେ ବି କେଉଁଠି ମିଳେଇଗଲା ।

ସେଦିନ ବୁଝିଲି ପିଲାଙ୍କ ପାଇଁ ମାଙ୍କଡ଼ନାଚ ହିଁ ମାଙ୍କଡ଼ନାଚ । ତାଙ୍କ ପାଇଁ ନାଚର ମାନ କିମ୍ବା ଗୀତର ତାନ ଅର୍ଥହୀନ । ମାଙ୍କଡ଼ ଦି' ଗୋଡ଼ରେ ଠିଆ ହୋଇ ଅଣ୍ଟା ହଲେଇଲେ ହିଁ ହେଲା । ସେଥିରେ ହିଁ ସେମାନଙ୍କର ପରମ ଆନନ୍ଦ । ବୋଧହୁଏ ମାଙ୍କଡ଼ତ୍ୱର ପାରସ୍ପରିକ ଆକର୍ଷଣ । ଏଥର ବୁଢ଼ା ଯେତେବେଳେ ଆସିଲା ମୋ ସ୍ତ୍ରୀ ଓ ପିଲାଙ୍କ ସଙ୍ଗରେ ମୁଁ ବି ବାରଣ୍ଡାରେ ଯାଇ ବସିଲି ।

ସେଇ ପୁରୁଣା ନାଚ । ମାଙ୍କଡ଼ର ହାଡୁଆ ମୁହଁରେ ଦୁର୍ବଳତାର ଚିହ୍ନ ସ୍ପଷ୍ଟ । ଛୋଟ ହେଲେ ବି ବୁଢ଼ାଙ୍କ ମୁହଁ ପରି ଶ୍ଳଥପୂର୍ଣ୍ଣ ସେ ମୁହଁ । ନାଚିବା ପାଇଁ ଆଗ୍ରହର କୌଣସି ଚିହ୍ନ ତା' ପାଖରେ ନ ଥାଏ । ବେଳେବେଳେ ଗୋଡ଼ ବଙ୍କେଇ ସେମିତି ଠିଆ ହୋଇ ରହିଥାଏ ଆଉ ଅଣ୍ଟା ପାଖରେ କୁଣ୍ଡାଇହୋଇ ଏ ପାଖ ସେ ପାଖ ଅନାଇ ଆମକୁ ଚାହେଁ । ମୁହଁରେ କେମିତି ଗୋଟାଏ ବିକଳିଆ ଭାବ । କଅଁଳ ଉଦାସ ଆଖିରୁ ମୋର କାହିଁକି ମନେହେଲା ସତେ ଯେମିତି ସେ କହିବାକୁ ଚାହୁଁଛି - 'ହେ ମଉସା, ହେ ମାଉସୀ - ସେଇଠି ବସି କି ତାମସା ଦେଖୁଛ ! ତମର କ'ଣ କିଛି ଦୟା ମାୟା ନାହିଁ? ତମେ ମଣିଷମାନେ ପରା ନିଜକୁ ସୃଷ୍ଟିର ଶ୍ରେଷ୍ଠ ଜୀବ ବୋଲି କହି ନିଜର ଡିଣ୍ଡିମ ପିଟ ? ନିଜର ବାନା ନିଜେ ଉଡ଼ାଅ ? ଆମ ପରି ଲାଙ୍ଗୁଡ଼ଧାରୀ ତମର ପୂର୍ବପୁରୁଷଙ୍କୁ ନଚାଇ କି ଯଶ ଅର୍ଜୁଛ ? ହେ ବାଳପ୍ରେମୀ, ମାଙ୍କଡ଼ପ୍ରେମୀ ମାଉସୀ ! ମଉସାଙ୍କୁ ଯଦି କେହି ଜଣେ ବିରାଟକାୟ ଦାନବ ତଣ୍ଟିରେ ଦଉଡ଼ିବାନ୍ଧି ଦ୍ୱାରକୁ ଦ୍ୱାର ଭିଡ଼ିନେଇ ଭୋକ ଉପାସରେ ଥିଲାବେଳେ ବି ନାଚିବାକୁ ବାଧ କରୁଥାଆନ୍ତା ଏବଂ ତମର ଟିକୁ, ତମର ମିନିକୁ ଯଦି... ।'

ମୁଁ ମୁହଁ ବୁଲାଇ ନେଇ ପାଟିକଲି ; 'ଥାଉ ଥାଉ, ଯଥେଷ୍ଟ ହେଲା ବୁଢ଼ା, ନାଚ ବନ୍ଦକର ।' ମୋର ହାତ ହଲାଇବା ଦେଖି ବୁଢ଼ା ତା'ର 'ଘିଡ଼ି, ତାକ୍ ତାକ୍' ବନ୍ଦକଲା ।

ମାଙ୍କଡ଼ ଆଡ଼କୁ ଆଉ ଥରେ ଯେତେବେଳେ ଅନାଇଲି, ଦେଖିଲି ପୁଣି ସେ ମୋ ଆଡ଼ିକି ଚାହିଁଛି । ଅତି କରୁଣ ସେ ଦୃଷ୍ଟି । ଏଥର ପୁଣି ମନେହେଲା, ସେ ଯେମିତି କହୁଛି - 'ହେ ଶିକ୍ଷକ, ଅଧ୍ୟାପକ, ମାଷ୍ଟର, ଗୁରୁ! ତମେ ପରା ମାଙ୍କଡ଼ମାନଙ୍କୁ ମଣିଷ କର । ତମ ପିଲାଦିନ କଥା ଥରେ ମନେପକାଅ । ସେ ଦିନ ତମେ ମାଙ୍କଡ଼ ଥିଲାବେଳେ ତମର ଶିକ୍ଷକ କ'ଣ ତମକୁ ଏମିତି ଫ୍ରକ୍ ପିନ୍ଧାଇ, ତୋଟିରେ ଦଉଡ଼ି ବାନ୍ଧି, ବାଡ଼ିରେ ପିଟି ପିଟି, ନଚାଇ ମଣିଷ କରିଥିଲେ ? ସେତିକିବେଳେ ପରା 'ଜୀବନ - ଚିନ୍ତା' ପଢ଼ାଉ ପଢ଼ାଉ ମୃତ୍ୟୁ ସିନ୍ଧୁର କରାଳ ଲହରୀ ଆଡ଼ିକି ବିନା ଶବ୍ଦରେ ଜୀବନସ୍ରୋତ ଧାଇଁଛି, ଆଉ ସେଇ ସ୍ରୋତ ସାଙ୍ଗରେ ଜୀବନର ସବୁ ସୁଖରାଶି ଭାସି ଯାଉଛି ବୋଲି ଦରଦଭରା ସ୍ୱରରେ ଶିକ୍ଷକ କହିଲାବେଳେ ତମେ ଖେଳ କଥା ସବୁ ଭାବି ନାନା ରକମର ଟିପ୍ପଣୀ କାଟୁଥିଲ ? ଏବେ ହେଲେ ଟିକିଏ ଚିନ୍ତାର ଲୋଚନ ଫେଡ଼, ଆଉ ଆମ ଅବସ୍ଥା ନିରୀକ୍ଷଣ କର ! କହ, ଶୋକୋଚ୍ଛ୍ୱାସ ଢାଳିବାରେ ଯଥାର୍ଥତା ଅଛି ନା ନାହିଁ? ବିନା ଦୋଷରେ ମାଡ଼ ହେଲେ ପରା ତମ ଦେହରେ ନିଆଁ ଜଳୁଥିଲା ? ମା' କୋଳରୁ ଆମ୍ବଗଛକୁ ଆଉ ଆମ୍ବଗଛରୁ ପଣସ ଗଛକୁ ଖୁସିରେ ଡେଇଁ ବୁଲୁଥିବା ବାଳ ମାଙ୍କଡ଼କୁ ତମର ଜଣେ ଜାତିଭାଇ ଜବରଦସ୍ତ ଧରିଆଣି ତମ ଆଗରେ ଯେଉଁସବୁ ଅତ୍ୟାଚାର କରିଚାଲିଛି ସେଇଟା କ'ଣ ନ୍ୟାୟ ? ତମର ମାପକାଠି କ'ଣ ତେବେ..."

ମୋ' ମୁଣ୍ଡ ଝାଇଁମାରିଲା ଭଳି ଲାଗିଲା । ଅଜାଣତରେ ହିଁ ମୁଁ ମୋ ଦୁଇ କାନ ଢାଙ୍କିଦେଲି । ମାଙ୍କଡ଼କୁ ଆଉ ଚାହିଁପାରିଲିନି । ଟିକୁକୁ କହିଲି - 'ଆରେ ଟିକୁ ଦଉଡ଼ିଗଲୁ, ଘରେ ଚଣା, ବିରି, ମୁଗ ଯାହା କିଛି ଥିଲେ ମୁଠିଏ ନେଇ ଆସିବୁ, ଆଉ ମୋ' ପାଇଁ ଗିଲାସେ ପାଣି ଆଣିବୁ ।'

ମାଙ୍କଡ଼ ଟିକୁ ହାତରୁ ଚଣାତକ ପ୍ରାୟ ଝାମ୍ପିନେଇ ପାଟି ଭିତରେ ଭର୍ତ୍ତିକରିବାକୁ ଲାଗିଲା । ଟିକି ବରକ୍ତିଭରା ଛିଞ୍ଚଡ଼ା ସ୍ୱରରେ ମନ୍ତବ୍ୟ ଦେଲା - 'ରାସ୍କେଲ୍, କେଡ଼େ ଅଭଦ୍ର - ଥେଙ୍କ ୟୁ ବି କହୁନି ।'

ମିନି ଟିପ୍ପଣୀ ଛାଡ଼ିଲା - 'ନାନୀ, ଚିଡ଼ାନା କହିଦେଉଛି ।'

ଦେଲା ଚାଉଳତକ ଝୁଲାମୁଣିରେ ଭର୍ତ୍ତି କରୁଁ କରୁଁ ବୁଢ଼ା ନେହୁରାହୋଇ କହିଲା, 'ପଖାଳ ଗଣ୍ଡିଏ ଦିଅ ମା', ଭୋକରେ ପେଟ ଜଳୁଛି । କାଲି ଜର ହୋଇଥିଲା ଯେ କେଉଁଠିକି ଯାଇ ପାରିଲିନି । ଘରର ସମସ୍ତେ କାଲିଠୁଁ ଉପାସରେ ରହିଛୁଁ ।

କିଛି ଭାତ ଆଉ ଡାଲି ଆସିବା ଆଗରୁ ମୋ' ସ୍ତ୍ରୀ ପଚାରିଲେ - 'ବୁଢ଼ା, ତମର ଘର କେଉଁଠି ? ବୁଢ଼ା ଜବାବ୍ ଦେଲା, 'କୋଡ଼ିଏ ଟଙ୍କା ମା!' ସମସ୍ତଙ୍କ ଉଚ୍ଛୁଳା ହସ ମଝିରେ ବୁଢ଼ା କହିଚାଲିଲା; 'ବରଗଡ଼ ପାଖରେ ମୋର ପୁତୁରାଟିଏ ଅଛି ଯେ ସେ କିଣିଦେଲା, ନଇଲେ ମୁଁ କୋଉଠୁ ଏତେ ଟଙ୍କା ପାଆନ୍ତି ? ଆଗରୁ ଗୋଟିଏ ଭଲ ମାଙ୍କଡ

ଥିଲା ଯେ ସେ ବହୁତ ଶିଖିଥିଲା - କ'ଣ ହେଲା କେଜାଣି,ହଠାତ୍ ମରିଗଲା । ଏଇଟା ଅଶିକ୍ଷିତଟିଏ ।'

ଟିକୁ ମିନି ଏକା ସାଙ୍ଗରେ ରଡ଼ିଛାଡ଼ିଲେ - 'ତମର ଘର କେଉଁଠି ପଚାରୁଛନ୍ତି ।'

ବୁଢ଼ା ଅପ୍ରସ୍ତୁତ ହସ ଟିକିଏ ହସି କହିଲା, 'ଭଲକରି ଶୁଣିପାରେନା ମା' - ମାଙ୍କଡ଼ର ଦାମ୍ ପଚାରିଲ ବୋଲି ଭାବୁଥିଲି । ମୋର ଘର ଆଉ କେଉଁଠି - ସେଇ ହୀରାକୁଦ ବନ୍ଧ ତଳେ । ଅନ୍ୟ ସମସ୍ତଙ୍କ ସାଙ୍ଗରେ ମୁଁ ବି ଝୁପୁଡ଼ି କରି ରହିଛି ।'

ମୋ' ସ୍ତ୍ରୀ ପୁଣି ବଡ଼ପାଟିରେ ପଚାରିଲେ - 'ତମର ଗାଁ ?' ବୁଢ଼ା ଏଥର ଠିକ୍ ଜବାବ ଦେଲା 'ଗାଁ ତ ବୁଡ଼ି ଅଞ୍ଚଳରେ ଥିଲା । ବୁଡ଼ିଗଲା ମା । ଆମେ ଆସି ବନ୍ଧତଳେ ଝୁପୁଡ଼ି କରି ରହିଲୁ - ଏବେ ଆଉ କେଉଁଠିକି ଯିବୁ ।'

'କାହିଁକି ତମର ପୁଅ ?'

'ପୁଅ କାହିଁ ମା' - ଗୋଟିଏ ଅଛି ଯେ ପିଲାଦିନୁ ଅନ୍ଧ । ଆଉ ବୁଢ଼ୀ ଅନେକ ଦିନ ହେଲା ଖଟରେ ପଡ଼ିଛି । ଚାଉଳ କିଛି ମିଳିଲେ ମୁଁ ଯାଇ ଫୁଟାଇଦିଏ ।'

'ତୁମେ କ'ଣ ସବୁଦିନେ ଏମିତି ଭିକ ମାଗୁଛ ।'

ବୁଢ଼ା ମୁହଁରେ ବିରକ୍ତିର ଆଭାସ ଦେଖାଦେଲା । ଟିକିଏ ଚଢ଼ା ଗଳାରେ କହିଲା - 'ଜୀବନ ପଛକେ ଯିବ, ଭିକ ମାଗିବି ମା ? ବଳ ବୟସ ଥିବାଯାଏ କାମ କରୁଥିଲି, ଏବେ ଆଉ କାମକୁ ପାରୁନି । ଏଇ ମାଙ୍କଡ଼ନାଚ ଦେଖାଇ ଯିଏ ଯାହା ଦିଏ ନିଏ । ଆଗରୁ ଯେଉଁ ମାଙ୍କଡ଼ ଥିଲା ସେଇଟା ମରିଗଲା ପରେ ଏଇ ମାଙ୍କଡ଼ ଆଣିବା ପର୍ଯ୍ୟନ୍ତ ଭୋକ ଉପାସରେ ରହିଲୁ ସିନା - ମୁଁ କାହା ଦୁଆରକୁ ଭିକ ମାଗିବାକୁ ଯାଇନି ।'

'ଆଗ କେଉଁଠି କାମ କରୁଥିଲ ?'

ବୁଢ଼ାର ମୁହଁ ଏଥର ଉଜ୍ଜ୍ୱଳ ହୋଇଗଲା । କହିଲା, 'ହୀରାକୁଦ ଡେମ୍‌ରେ ମା- ମୁଁ ଥିଲି ମେଟ୍ ଆଉ କୁଲି ସର୍ଦ୍ଦାର । ଏ ଯେଉଁ ମାଟିବନ୍ଧ ଦେଖୁଛ, ଆମେ ତାକୁ ବାନ୍ଧିଛୁ ।'

ଇଏ ମୋ ଆଡ଼ିକି ଚାହିଁଲେ । ମୁଁ ବୁଢ଼ାକୁ ଭଲକରି ଅନାଇଥାଏ । ପଚାରିଲେ- 'କା ପାଖରେ କାମ କରୁଥିଲ ?'

ବୁଢ଼ା ଉତ୍ତର ଦେଲା - 'ତମେ ଜାଣିବନି ମା' - ସେମାନେ କୋଉ କାଳରୁ ମରି ହଜି ଗଲେଣି ।'

'କ'ଣ କହିଲ ? ମରି ହଜି ଗଲେଣି ?'

'ହଁ ମା, କାହିଁ କେବର କଥା - ଆଜିଯାଏ କ'ଣ ଆଉ ଥିବେ ? ଭଲ ଭଲ ଲୋକଙ୍କୁ ତ ଯମ ବାଛି ବାଛି ନେଇଯାଏ । ଖାଲି ଆମପରି ଲୋକଙ୍କୁ ଏମିତି ଦୁଃଖ କଷ୍ଟରେ ଘାଣ୍ଟି ହେବାକୁ ଛାଡ଼ିଦିଏ ।' ସ୍ୱଗତୋକ୍ତି କଲାପରି କହିଲା - 'ସେ ସାହେବ ବଞ୍ଚିଥିଲେ କ'ଣ ଆମେ ଏମିତି ଭୋକ ଉପାସରେ ମରନ୍ତୁ ।'

'ତମେ ଯା' ପାଖରେ କାମ କରୁଥିଲ - ତାଙ୍କୁ ଦେଖିଲେ ଚିହ୍ନିପାରନ୍ତ ?'

'ଚିହ୍ନିପାରନ୍ତିନି ମା ? ମୁଁ ଯା' ପାଖରେ କାମ କରୁଥିଲି ସେ ଜଣେ ଇଞ୍ଜିନିୟର - ହେଲେ କ'ଣ ହେଲା ଠିକ୍ ଆମପରି ଥିଲେ, ଆମରି କଥା କହୁଥିଲେ, ଆମକୁ ଭାରି ଭଲପାଉଥିଲେ । ମୁଁ ତାଙ୍କ ସାଙ୍ଗରେ ହାତ ଧରା ଧରି ହୋଇ ପାଣି ପହଁରିଛି ମା' ! ସେ ଗଣ୍ଡ ଭିତରେ ମାଟିବନ୍ଧ ତିଆରି ହେଉଥାଏ ହଠାତ୍ ବଢ଼ି ଆସିଲା - ଆମେ ନ ଥିଲେ...'

ବୁଢ଼ା ଆଉ କ'ଣ ସବୁ କହୁଥିଲା, ମୁଁ ଶୁଣିବା ଅବସ୍ଥାରେ ନ ଥିଲି । ମନ ମୋର ଚାଲିଯାଇଥିଲା ଚବିଶ ବର୍ଷ ତଳର ଦୂର ଅତୀତକୁ । ସେଦିନର ସ୍ମୃତି ସବୁ ଆଖି ଆଗକୁ ଚାଲିଆସିଥିଲା ଗୋଟିଏ ଚଳଚ୍ଚିତ୍ରର ଚିତ୍ରପଟ ପରି ।

କଂକ୍ରିଟ ବନ୍ଧ ତିଆରି ଆରମ୍ଭ ହୋଇ ନ ଥାଏ । ନଈ ଗଣ୍ଡ ଭିତରୁ ସେଇ ବର୍ଷ ମାଟିବନ୍ଧ ତିଆରି ଆରମ୍ଭ ହେଲା । ଜୁନ୍ ଦୁଇ ତାରିଖରେ ଆସିଲା ବଢ଼ି । ଗାଁ ପାଖର ନଈସୁଅକୁ ଡାହାଣ ପାଖକୁ ବଦଳାଇ ଦେଇଥିବା କଫର୍ ଡେମ୍ ଓ ମାଟି ବୁହା ହେବା ପାଇଁ ନଈ ଭିତରେ ତିଆରି ହୋଇଥିବା ହଲ୍ ରୋଡ୍ କେତେ ଘଣ୍ଟା ଭିତରେ ହିଁ ଧୋଇହୋଇଗଲା, ଆଉ ତା' ସାଙ୍ଗରେ ଗଣ୍ଡରେ ତିଆରି ହେଉଥିବା ଅସ୍ଥାୟୀ ପୋଲ ।

ଏତେ ଶୀଘ୍ର ଏମିତି ଗୋଟାଏ ବଢ଼ି ଆସବ ବୋଲି ଆମେ କେହି କଳ୍ପନା ମଧ୍ୟ କରିନଥିଲୁ । ଆମ ଓଡ଼ିଆ ପାଞ୍ଜି ଅନୁସାରେ ମିଥୁନ ସଂକ୍ରାନ୍ତି ପଡୁଥିଲା ଜୁନ୍ ୧୪ତାରିଖରେ । କୋଚିନ୍ ଉପକୂଳରେ ମନ୍‌ସୁନ୍ ଦେଖା ମଧ୍ୟ ଦେଇନଥିଲା । ହାତରେ ଅନ୍ତତଃ ୭/୮ ଦିନ ରହିଛି ଭାବି ମାନସିକ ସାନ୍ତ୍ୱନା ନେଇ ଆମେ କାମରେ ଆଗେଇ ଚାଲିଥିଲୁ । ମାଟିବନ୍ଧର ସାମନା ପାଖ ବଢ଼ି ଉପର ଲେଭେଲକୁ ଉଠି ସାରିଥିଲା, କିନ୍ତୁ ପଛପାଖ ଥିଲା ବଡ଼ ବଢ଼ିର ବେଶ୍ ତଳ ଲେଭେଲରେ ।

ପଥର କାମ ଆରମ୍ଭ ହୋଇ ନଥିବା ଫଳରେ ପଛପାଖରେ ମାଟି ପୂରାପୂରି ଖୋଲା ରହିଯାଇଥିଲା । ହୀରାକୁଦ ଟାପୁରେ ସୋଭେଲ୍ ଓ ଡମ୍ପର୍ ପ୍ରଭୃତି କେତେକ ଯନ୍ତ୍ରପାତି ରଖି ବର୍ଷା ମାସଯାକ ଧୀରେ ଧୀରେ ଏ ପଛ ପାଖର କାମ କରିବୁ ବୋଲି ଆମେ ମନସ୍ଥ କରିଥିଲୁ । ଅଧିକାଂଶ ଯନ୍ତ୍ରପାତି ଏବେ ସେ କୂଳରେ ରହିଗଲା । ଆମର ସବୁ ପ୍ରୋଗ୍ରାମ୍ ଏଇ ବଢ଼ି ଓଲଟପାଲଟ କରିଦେଲା ।

ରାତି ଅଧରେ ଖବର ଆସିଲା - ବଢ଼ି ପାଣି ବନ୍ଧ ତଳକୁ ଉଜାଣି ବହୁଛି, ଆଉ ପଛପଟରେ ମାଟି ଖାଇଯାଉଚି । ଛାତିରେ କେମିତି ପବନ ଅଟକି ଗଲାପରି ମନେହେଲା । ବର୍ଷାଋତୁ ଯାକ ତ ବଢ଼ି ପରେ ବଢ଼ି ଆସିବ । ବନ୍ଧର ପଛପଟ ଖୋଲା, ମାଟି ଅତଡ଼ା ଖସିଲେ ବନ୍ଧ ରହିବନି । ଆଉ ବନ୍ଧ ଯଦି ଭାସିଯାଏ !

ଚିଫ୍ ଇଞ୍ଜିନିୟର ସେଦିନ ବ୍ୟଙ୍ଗ କରିବା ଢଙ୍ଗରେ ହସି ହସି ଚେତାବନୀ ଦେଇଥିଲେ - ବନ୍ଧ ଭାସିଗଲେ ତମକୁ ବି ନଈରେ ଭାସିଯିବାକୁ ପଡ଼ିବ । ଉତ୍ତର ଛଳରେ

ମୁଁ ବି ଟିକିଏ ହସିଦେଇଥିଲି । ସେ ହସ ପଛରେ ଯେଉଁ ଦୃଢ଼ତା ଆତ୍ମପ୍ରକାଶ ମାତ୍ର । ସତକୁ ସତ ବନ୍ଧ ଯଦି ଏବେ ଭାସିଯାଏ !

ରାତିରେ ନଈ ପାରିହୋଇ ହୀରାକୁଦ ଆଇଲେଣ୍ଡକୁ ଯିବାର ସମ୍ଭାବନା ନ ଥିଲା । ରାତିସାରା ନିଦ ହେଲାନି, ମାତ୍ର ଯେଉଁ କେତେ ମୁହୂର୍ତ୍ତ ଘୁମାଇ ପଡ଼ିଥିଲି ସେ ଟିକକ ସମୟର ଦୁଃସ୍ୱପ୍ନରେ ମଧ୍ୟ ଭାସିଯାଉଥିବା ଗୋଟାଏ ଗଛର ଗଣ୍ଡିରେ ଆଶ୍ରୟ ନେଇ ମହାନଦୀ ବଢ଼ିରେ ଭାସି ଚାଲିଥିଲି ନରାଜ ଅଭିମୁଖରେ !

ସିନ୍ଦୁରା ଫାଟିଲାବେଳକୁ ଡଙ୍ଗାରେ ନଈ ପାରିହୋଇ ମୁଁ ବନ୍ଧ ପାଖରେ ପହଞ୍ଚି ସାରିଥିଲି । ଯାହା ଦେଖିଲି ବିଶ୍ୱାସ ବି କରିପାରିଲିନି । ପୂର୍ବକୁ ବୋହି ଯାଉଥିବା ବଢ଼ିପାଣି ବନ୍ଧ ପାଖରେ ଦିଗ ବଦଳାଇ ପଶ୍ଚିମକୁ ବୋହି ଚାଲିଛି, ଆଉ ବନ୍ଧ ପଛପଟେ ପିଟିହୋଇ ଭଅଁର ଖେଳୁଛି । ମନେହେଲା ବନ୍ଧକୁ ଆଉ ରକ୍ଷାକରି ହେବନି । ବନ୍ଧର ତଳପଟେ ପଥରର ମୋଟା କାନ୍ଥ ବାଡ଼ ଦେଇ ଉଜାଣି ସୁଅକୁ ରୋକିବା ହିଁ ଏକମାତ୍ର ପ୍ରତିକାରର ଉପାୟ । ପଥରଖଣ୍ଡ ସବୁ ତ ଭାସିଯିବ । କାଠବଲ୍ଲିରେ ଲୁହାଛଡ଼ ଗୁନ୍ଥି ବଡ଼ ବଡ଼ ବାକ୍ସ କରି ସେସବୁ ପଥର ବୋଝେଇ ବାକ୍ସକୁ ଗୋଟିଏ ଧାଡ଼ିରେ ପାଣି ସୁଅରେ ବୁଡ଼ାଇ ଦେଇ ପାରିଲେ ସୁଅର ଗତିବେଗକୁ ରୋକି ଦେଇ ହୁଅନ୍ତା । ଚିଫ୍ ଇଞ୍ଜିନିୟରଙ୍କୁ ଏ କଥା ଯେତେବେଳେ କହିଲି ସେ ଶେଷ ନିଷ୍ପତ୍ତି ନେବାର ସ୍ୱାଧୀନତା ମୋ ହାତରେ ହିଁ ଛାଡ଼ିଦେଲେ । ସନ୍ଧ୍ୟା ହେବାର ଯଥେଷ୍ଟ ପୂର୍ବରୁ ଏପରି କେତୋଟି କ୍ରେଟ୍ ବାକ୍ସ ତିଆରି ହୋଇଗଲା । ଯଥେଷ୍ଟ ପଥର ଜମା ହେବା ସଙ୍ଗେ ସଙ୍ଗେ ଚାରିଟି ଡିଜେଲ୍ ଡ୍ରମ୍ - ବନ୍ଧା ଭେଳା ମଧ୍ୟ ପ୍ରସ୍ତୁତ ହୋଇ ସାରିଥିଲା । କିନ୍ତୁ ବିଲେଇ ବେକରେ ମୂଷାମାନେ ଘଣ୍ଟି ବାନ୍ଧିଲା ପରି ସେଇ ନଈ ସୁଅରେ କିଏ କ୍ରେଟ୍ ଆଉ ପଥର ବୋଝେଇ ଭେଳା ନେଇ ଯଥା ସ୍ଥାନରେ କ୍ରେଟ୍‌କୁ ବୁଡ଼ାଇଦେବ ? କେହି ବାହାରିଲେନି ।

ଅଗତ୍ୟା ମୁଁ ଯେତେବେଳେ ପାଣି ଭିତରକୁ ପଶିଗଲି, ଜଣେ ହୃଷ୍ଟପୁଷ୍ଟ ଛଅଫୁଟିଆ ମଜ୍‌ଦୁର ଅନ୍ୟମାନଙ୍କୁ ତିରସ୍କାର କରି ପାଣି ଭିତରକୁ ଡେଇଁପଡ଼ିଲା । ତା'ପରେ ପହଁରି ପହଁରି କ୍ରେଟ୍ ଓ ପଥର ବୋଝେଇ ଭେଳାକୁ ଯଥାସ୍ଥାନକୁ ନେଇଯିବା ପାଇଁ ଲୋକର ଅଭାବ ହେଲାନି । ଭେଳାରେ ବନ୍ଧା ହୋଇଥିବା ଦୁଇଟି ଲମ୍ବ ଦଉଡ଼ି ସାହାଯ୍ୟରେ କୂଳକୁ ଆକଟ କରି ଭେଳା ଯେପରି ଭାସି ନଯାଏ ତା'ର ଦାୟିତ୍ୱ ନେଇଥିବା ଲୋକଙ୍କ ସିଧାସଳଖ ନେତୃତ୍ୱ ନେବା ପାଇଁ ମୁଁ ସେଇ ଛଅଫୁଟିଆ ମଜଦୁର୍‌କୁ ଆଦେଶ ଦେଇଥିଲି । ବିଶେଷ ବାଧାବିଘ୍ନ ବିନା ଗୋଟିକ ପରେ ଗୋଟିଏ କରି ଦିଓଟି କ୍ରେଟ ଯଥାସ୍ଥାନରେ ଡୁବାଇ ଦେଲା ପରେ ତା'ର ଫଳାଫଳ ଦେଖି ଆମର ଉତ୍ସାହ ଦ୍ୱିଗୁଣିତ ହୋଇଗଲା । ତୃତୀୟ କ୍ରେଟ ବେଳକୁ ହିଁ ଭେଳାର ଗୋଟିଏ ବନ୍ଧା ଦଉଡ଼ି ଛିଡ଼ିଗଲା । ଆସନ୍ନ ବିପଦର ସମ୍ମୁଖରେ ଆମେ ସମସ୍ତେ ଏକା ସାଙ୍ଗରେ ଚିତ୍କାର କଲୁ - 'ସୋମବାରୁ !'

ଅଜାଣତରେ ଆଜି ମଧ ଭୟ ଓ ଉତ୍କଣ୍ଠାରେ ମୁଁ ଚିତ୍କାର କରିଉଠିଲି, 'ସୋମବାରୁ !'

ବୁଢ଼ା ଚମକିପଡ଼ିଲା । ତା' ପେଜୁଆ ଆଖି କ୍ଷଣକ ମଧ୍ୟରେ ଜଳିଉଠିଲା - ସତେ ଯେମିତି ଲିଭିଯାଇଥିବା ଦିଓଟି ମହମବତିକୁ କିଏ ହଠାତ୍ ଦିଆସିଲି ମାରି ଜଳାଇଦେଇଛି । ମନେହେଲା ପଲକବିହୀନ ତୀକ୍ଷ୍ଣ ଆଖି ନେଇ ବୁଢ଼ା ମୋ ମୁହଁରେ କିଛି ଗୋଟାଏ ଖୋଜୁଛି । ଆଖି ଦିଓଟି ଯେମିତି ଜଳିଉଠିଥିଲା, କିଛି ସମୟ ପରେ, ସେମିତି ସଳିତା ସରିଯାଇଥିବା ତରଳିଲା ମହମବତି ପରି ଆପେ ଆପେ ଲିଭିଗଲା ।

ଗୋଟିଏ କୌଣସି ଦୁଃସ୍ୱପ୍ନ ଭାଙ୍ଗିଲା ପରେ ମଣିଷ ଯେମିତି ତ୍ରସ୍ତ ହୋଇ ଉଠେ ବୁଢ଼ା ସେମିତି ସେଠାରୁ ଉଠିଲା । ପାଟି ମେଲା - ମୁଣ୍ଡ ଝୁଣି ସତେ ଯେମିତି ଆଖିର ଦୃଷ୍ଟି ସାହାଯ୍ୟରେ ଭୂଇଁରୁ କିଛି ଚିରି ବାହାର କରିବାକୁ ଚେଷ୍ଟା କରୁଥାଏ । ମନେହେଲା ବୁଢ଼ାର ଅଣ୍ଟା ଯେମିତି ଟିକିଏ ବଙ୍କେଇ ଯାଇଛି । ବୁଢ଼ାଠାରୁ କି ଇଙ୍ଗିତ ପାଇଲା କେଜାଣି, ମାଙ୍କଡ଼ଟି ବୁଢ଼ାର କାନ୍ଧ ଉପରକୁ ଉଠିଯାଇ ଦି' ହାତରେ ତା' ମୁଣ୍ଡକୁ ଜାବୁଡ଼ି ଧରିଲା ।

ବୁଢ଼ା ଫେରିଯାଉଥିଲା ମନ୍ତ୍ରମୁଗ୍ଧ ପରି । ଟିକୁ ଆଉ ମିନିର 'ବୁଢ଼ା', 'ପଖାଳ' ଡାକ ସେ ଆଉ ଶୁଣିନି । ମାଙ୍କଡ଼ ବୋଧହୁଏ ଶୁଣିପାରିଲା, ମିଟି ମିଟି କରି ସେ ଆମ ଆଡ଼କୁ ଚାହିଁଲା, ତା'ପରେ ମୁହଁ ବୁଲାଇନେଲା ।

ପିଲାମାନେ ଘର ଭିତରକୁ ଫେରି ଯାଇ ସାରିଥିଲେ । ଛାତି ଭିତରେ ଗୋଟିଏ ଅଜ୍ଞାତ ବେଦନା ନେଇ ମୁଁ ସେଠାରେ ବସିରହିଲି । ବନ୍ଧ ଉଦ୍ଘାଟନ ବେଳର ନେହରୁଜୀଙ୍କ ବାଣୀ କାନରେ ଝଙ୍କାରି ଉଠୁଥିଲା । ସେ କହୁଥିଲେ - 'ଗରିବ ଜନତାର ଲହୁରେ - ଗରିବ ଜନତାର ଲୁହରେ ତିଆରି ସ୍ୱାଧୀନ ଭାରତର ଏ ପ୍ରଥମ ମନ୍ଦିର ମୁଁ ମୋର ଦେଶବାସୀ ସେହି ଅଗଣିତ ଗରିବ ଭାଇଭଉଣୀଙ୍କ ହାତରେ ଅର୍ପଣ କରୁଛି । ତାଙ୍କରି କଲ୍ୟାଣ ପାଇଁ ଏ ପବିତ୍ର ମନ୍ଦିର ଆଜି ଉତ୍ସର୍ଗୀକୃତ ହେଲା ।'

ମୋ ମାନସପଟରେ ଦୃଶ୍ୟମାନ ଚଳଚ୍ଚିତ୍ରର ଏକ ଦିଗରେ ଯେତେବେଳେ ନରବାନର ସମ୍ମିଳିତ ଏକ ଶୀର୍ଣ୍ଣ କାୟାର ଛାୟା ଅପସରି ଯାଉଥିଲା, ସେତିକିବେଳେ ଅନ୍ୟ ଦିଗରୁ ପରଦା ଉପରକୁ ଉଠିଆସୁଥିଲା ଭୁବନେଶ୍ୱରରେ ମୁଣ୍ଡ ଟେକି ଉଠିଥିବା ଅଫିସର, ଇଞ୍ଜିନିୟର ଓ ଠିକାଦାରମାନଙ୍କ ଅଗଣିତ ବିରାଟ ବିରାଟ କୋଠାର ଚିତ୍ରାବଳୀ । ପୃଷ୍ଠଭୂମିରେ ଦିଶୁଥିଲା ବରଗଡ଼ - ବରପାଲି ଜଳସେଚିତ ଅଞ୍ଚଳର ଧନ କୁବେରମାନଙ୍କ ଶସ୍ୟଶ୍ୟାମଳା ସବୁଜ ଧରଣୀ ।

ମୁଁ ବସିଥିଲି ଏକ 'ସ୍ନୋସେମ୍' ସ୍ନାତ୍ ସରକାରୀ ସୌଧର ସାମନା ବାରଣ୍ଡାରେ - ମାଙ୍କଡ଼ ନଚାଳି ବୁଢ଼ାର କଳ୍ପନାର ଜଣେ ଦେବତା - ମାଟିର ହସ୍ତପଦ ନେଇ ।



## ଅଚ୍ୟୁତାନନ୍ଦ ପତି

# ଅଶୁଭ ପୁତ୍ରର କାହାଣୀ

ସେଦିନ. ସେ ଛୋଟ ପେଚା ଛୁଆଟି ପହିଲୁ କରି ଆଖି ଖୋଲିଲା । ଗଛର ଅନ୍ଧାରିଆ ଖୋଲ ଭିତରେ ସେ ଆଖି ଫିଟାଇ ପ୍ରଥମେ ଦେଖିଲା ଅନ୍ଧାର, ଚାରିଆଡ଼େ ଖାଲି ନିଘଞ୍ଚ ଅନ୍ଧାର । ମାଆ ତାର ତା ଉପରେ ଡେଣା ଘୋଡ଼ାଇ ବସିଥିଲା । ତଳେ କୁଟାକାଠିର ଟାଆଁସିଆ ଶେଯ ଉପରେ କଅଁଳ ହାତଗୋଡ଼ ଦିଖଣ୍ଡ ତାର ଥୋଇଥାଇ ସେ କେତେ କଥା ସପନ ଦେଖି ଯାଉଥିଲା । ଗଛର ଉପର ଡାଳରେ କାଆ କାଆ ହୋଇ କଣ ଗୁଡ଼ାଏ ଖୁବ୍ ଜୋର୍‌ରେ ପାଟି କମ୍ଭେଇଲେ । ତା ମାଆର ଡେଣା କାହିଁକି ଚହଲି ଉଠିଲା । ସେ ପକ୍ଷଗୁଡ଼ାକୁ ଟିକିଏ ଭଲକରି ଚହଲାଇ ଦେଇ ତାକୁ ପେଟ ଆଡ଼କୁ ଜାକି ଆଣିଲା । ତାକୁ ଟିକିଏ ଆରାମ ଲାଗିଲା । ସେ ଚୁଁ ଚୁଁ ହେଇ ହସି ପକାଇଲା । ମାଆ ତା କୁନି ଥଣ୍ଟରେ ଥଣ୍ଟ ଘଷି ତାକୁ ତୁନି ହେଇ ରହିବାକୁ ଚୁପ୍ ଚୁପ୍ କହିଲା । ମାଆ ଇମିତି କାହିଁକି କରୁଛି, ସେ ବୁଝି ପାରିଲାନି । ମାଆ ଯେତେବେଳେ କହୁଛି, ଖାଲି ଚୁପ୍ ହେଇଗଲା । ମାଆର ନରମ ପର ଭିତରେ ଉଷୁମ ଟାଣି ଟାଣି ତା ଦେହରୁ ଚମତ୍କାର ଭାଙ୍ଗସବୁ ଫିଟି ଫିଟି ଯାଉଥିଲା । ତାକୁ ଭାରି ହାଲୁକା ଲାଗୁଥିଲା । ସେ ଭାବୁଥିଲା, ସେ ଠିଆ ହୋଇ ପଡ଼ିବ । କାଠିକୁଟାର ବିଛଣା ଭିତରେ ସେ ତାର ଗୋଡ଼ ଟିକିଏ ସଳଖାଇ ଦେଲା । ମାଆ ବି ତା ଉପରୁ କାହିଁକି ଟିକିଏ ଘୁଞ୍ଚି ବସିଲା । ତା ଟିକି ଟିକି ଗୋଡ଼ ଉପରେ ଥଣ୍ଟ ଚୁକେଇ ଚୁକେଇ ମାଆ ତାର ଗୋଡ଼କୁ ସିଧା କରିଦେଲା । ସେ ଉପରକୁ ଟିକିଏ ଚାହିଁଲା । ଅନ୍ଧାର କାହିଁକି କମ୍ ଜଣାଗଲା । ସେ ଆଖି ବୁଜି ପକାଇଲା । ଟିକିଏ ମାଆ ଆଡ଼କୁ ଚାହିଁ ପୁଣି ଉପରକୁ ଚାହିଁଲା । ମା ତାର ଯେମିତି ତା ମନର କଥା ବୁଝି ପାରିଲା । ତା କୁନି ଚେପା ନାକରେ ନିଜର ନାକକୁ ଲଦି ହସି ହସି କହିଲା– "ଧନ ମୋର କେତେ ହୁସିଆର ହୋଇ ଗଲାଣି । ହେଉ, ଟିକିଏ ଆଉ ଥୟ ଧର । ତୋ ଡେଣାରେ ଭଲ କରି ପର ବାହାରି ଯାଉ । ମୁଁ ତତେ ଉଡ଼ିବା ଶିଖାଇ ଦେବି । ଡେଣା ଭାଙ୍ଗିବାର ବାଗବରଗ ସବୁ ବତେଇ ଦେବି । ତୁ ସରଗରେ ବୁଲି ବୁଲି ନୂଆ ନୂଆ ଜିନିଷ ଦେଖିବୁ । ତୁ ଏଠି ସିନା ଅନ୍ଧାରରେ ପଡ଼ିଛୁ ।

ଦୁନିଆକୁ ବାହାରି ଗଲେ ସେଠି ଆଉ ସବୁବେଳେ ଅନ୍ଧାର ନଥିବ । ସରଗରେ ତୋଫା ତୋଫା ଗୋଲ ଜହ୍ନର ଆଲୁଅ ବୋହି ପଡୁଥିବ । କୁନି କୁନି ତାରା ସବୁ ଆଖି ମିଟିମିଟି କରି ତତେ ଗେହ୍ଲା କରିବେ । ମୁଁ ତତେ ଭଲ ଭଲ ଦରବ ତୋ ସାଙ୍ଗରେ ଘୂରି ଘୂରି ଚିହ୍ନେଇ ଦେବି । ତୁ ଖାଲି ବଡ଼ ହୋଇ ଯା । ତୋ ଦିହରେ ଟିକିଏ ତାକତ ଆସୁ ।" ମାଆ ତାର ଖୋଲ କଡ଼ରୁ ଖଣ୍ଡେ ପାକଲା ପିଜୁଳି ଆଣି ତା ଥଣ୍ଟ ଭିତରେ ଗେଞ୍ଜି ଦେଲା । ସେ ଆସ୍ତେ ଆସ୍ତେ ଥଣ୍ଟ ଚଳାଇ ଢୋକି ନେଲା । ଆଃ, କି ମିଠା ! ସେ ଭାବିନେଲା, ସେ ଦୁନିଆ ଦେଖି ନେବ । ଦୁନିଆଟା ଭାରି ମିଠା ।

ଗଛ ତଳେ କଣ ଗୁଡ଼ାଏ ଗୋଟାକ ପରେ ଗୋଟାଏ ହୁକେ ହୋ ହୋଇ ଦୌଡ଼ା ଦୌଡ଼ି କଲେ । ମାଆ ପେଟତଳେ ଶୋଇ ଶୋଇ ତାକୁ ବି ଟିକିଏ ନିଦ ଆସି ଯାଇଥିଲା । ସେ ସପନ ଦେଖି ଯାଉଥିଲା । ଖାଲି ଦୁନିଆର ସପନ । ଚାରିଆଡ଼ ଖାଲି ମିଠା ପିଜୁଳି ଖଣ୍ଡ ଖଣ୍ଡ ହୋଇ ବିଛେଇ ହୋଇ ପଡ଼ିଛି । ସରଗରୁ ଗୋଲ ଜହ୍ନ ତଳକୁ ଓହ୍ଲେଇ ଆସୁଛି । ବିଲକୁଲ ଅନ୍ଧାର ନାହିଁ । ହସରେ ତା ଥଣ୍ଡ ଖୋଲିଗଲା । ଗଛ ତଳୁ ପାଟି ଶୁଣି ସେ ଉଠି ପଡ଼ିଲା । ଚାରିଆଡ଼େ ଖାଲି କିଟି କିଟି ଅନ୍ଧାର । ତା ମନଟା ଖଟା ହୋଇଗଲା । ସାଙ୍ଗେ ସାଙ୍ଗେ ଆଲୁଅର ସପନ ଦେଖି ଉଠିଛି । ମାଆ ତାର ଖୋଲା ମୁହଁରେ ବସି ଡେଣା ଖୋଲି ଝାଡ଼ି ହେଉଥିଲା । ସେ ଡାକ ଛାଡ଼ିଲା– "ମା, ମୁଁ ଆଜି ଦୁନିଆ ଦେଖିବି । ଜହ୍ନ ସାଥିରେ ଖେଳିବାକୁ ମୁଁ ଆଜି ନିଶ୍ଚେ ବାହାରି ଯିବି ।" ମାଆ ତାର ଭିତରକୁ ପଶି ଆସି ତାକୁ ପେଟ ଆଡ଼କୁ ଟାଣିନେଲା । ସେ ମାଆର ପେଟତଳୁ ଖସରିଗଲା । ତାକୁ ଅନ୍ଧାର ମୋଟେ ଭଲ ଲାଗୁନଥିଲା । ମାଆ ହସି ହସି କହିଲା– "ଦୁନିଆକୁ ତୁ ଆସିଛୁ । ତୋ ଦୁନିଆକୁ ତତେ ଯିବାକୁ କିଏ ମନା କରୁଛି । ଦୁନିଆକୁ ବଡ଼ ହୋଇ, ଖୁବ୍ ବଳୁଆ ହୋଇ ନଗଲେ ଦୁନିଆ ତତେ ଠକାଇ ଦେବ । ଟିକିଏ ଥୟ ଧର । ଆଉ କେତେଟା ଦିନ । ମୁଁ ବଳେ ବଳେ ତତେ ନେଇଯିବି । ତୁ ଏଇଠି ଶୋଇଥା । ମୁଁ ଯାଉଛି, ତୋ ଲାଗି ନୂଆ ନୂଆ ଜିନିଷ ଆଣିବି । ତୁ ଜମା ପାଟି କରିବୁନି ।" ମାଆ ତାର ଥଣ୍ଟରେ ଟିକିଏ ୟାକୁ ଖୁମ୍ପି ଦେଇ ଗେହ୍ଲାକରି ବସାରୁ ବାହାରି ପଡ଼ିଲା । ବସା ଦୁଆରେ ଟିକିଏ ଅଟକି ଯାଇଁ ତାକୁ ପୁଣି ଚାହିଁଲା । ମାଆ ଚାଲିଗଲା । ସେ ଆଖି ବୁଜିଲା । ଆଖି ବୁଜି ବୁଜି ଦେଖିଲା ଦୁନିଆ ଉପରେ ଆଲୁଅ ବିଛେଇ ହୋଇ ପଡ଼ିଛି । ଆଲୁଅର ଦୁନିଆ ତାକୁ ପିଜୁଳି ଦେଖି ଯିବାପାଇଁ ଇସାରା ଦେଉଛି । ତା ଆଖି ଲାଗି ଲାଗି ଆସୁଥିଲା । ସେ ଦେଖୁଥିଲା ଡେଣାରେ ତାର ତା ମାଆଠୁ ବି ବେଶୀ ପର ବାହାରି ପଡ଼ିଛି । ସେ ଜହ୍ନ ଦେହରେ ପକ୍ଷି ଘଷି ଘଷି ହସି ହସି ଉଡ଼ିଉଡ଼ି ଯାଉଛି ।

ତା ଗୋଡ଼ ଏଣିକି ଶକ୍ତ ହେଇଗଲାଣି । ସେ ଠିଆ ହୋଇ ପାରୁଛି । ଡେଣାରେ ତାର ପରସବୁ ଆସ୍ତେ ଆସ୍ତେ ଆସୁଛି । ଦୁନିଆ କଥା ଭାବି ଭାବି ମନ ତାର ବାଇଆ ହେଇ ପଡ଼ିଲାଣି । ତା ଦୁନିଆରେ ଜହ୍ନ ଆଲୁଅ, ପାକଲା ପିଜୁଳି ଖାଲି ଖେନ୍ଦି ହେଇ ଯାଉଛି । ଏଣିକି ସେ ସବୁବେଳେ ଖାଲି ବିକଳ ହେଉଛି । ମାଆ ସାଙ୍ଗରେ ଲଗାଉଛି । ସେ ବଡ଼ ହେଲାଣି, ସେ ଦୁନିଆ ଦେଖି ଯିବ ।

ମାଆ ସେଦିନ ତା ଅଝଟପଣିଆ ଦେଖି ପହିଲୁ କରି ତାକୁ ଖୋଲ ମୁହଁକୁ ଆଣିଲା । ସରଗର ଚାନ୍ଦକୁ ଥଣ୍ଟ ବଢ଼େଇ ଚିହ୍ନେଇ ଦେଲା । ଆଖି ତାର ଝଲସି ଉଠିଲା । ଆଃ, କି ସୁନ୍ଦର ! ସେ କେଡ଼େ ଅନ୍ଧାରିଆ ଜାଗାରେ ପଡ଼ି ରହିଥିଲା । ମାଆ ଡେଣା ସାଙ୍ଗରେ ଡେଣା ମେଲାଇ ଟିକିଏ ଟିକିଏ ଖଣ୍ଡିଉଡ଼ା ଦେଲା । ସେ ଏ ଡାଳରୁ ସେ ଡାଳକୁ ଗଲା । ପକ୍ଷି ତାର ଘୋଳେଇ ହେଇ ପଡ଼ିଲା । ଗଛର ସବା ଉପର ଡ଼ାଳକୁ ଗୋଟାଏ ଦମରେ ଉଠିଗଲା । ସେ ଜହ୍ନଆଡ଼େ ଚାହିଁକି ସେଠି ବସି ରହିଲା । ଡେଣାରୁ ତାର ପରାସ ଆପେ ଆପେ କମି ଆସୁଥିଲା । ଜହ୍ନ ଦେହରୁ ଝିପି ଝିପି ହେଇ ଆଲୁଅ ବିଞ୍ଚି ହେଇ ପଡୁଛି । ସେ ଭାବିଲା ଥଣ୍ଟ ମେଲା କରି ସେଥିରୁ ମେଞ୍ଚାଏ ପିଇଯିବ । ମାଆ ଆସି ଏତିକିବେଳକୁ ତା ପାଖରେ ପହଞ୍ଚିଗଲା । ତାକୁ ବୁଝେଇ ସୁଝେଇ ଖୋଲ ଭିତରକୁ ନେଇଗଲା ।

ଥରେ ଦିନବେଳେ ମାଆ ତାର ଟିକିଏ ଘୁମେଇ ପଡ଼ିଥିଲା । ସେ ଆସ୍ତେ ଆସ୍ତେ ଖୋଲ ପାର ହୋଇ ଚାଲି ଆସିଲା । ଇସ୍, ବାହାରେ କେତେ ଆଲୁଅ । ସେ ଦିନଠୁଁ ଆଜିର ଜହ୍ନଟା ଖୁବ୍ ବଡ଼ ହେଇ ଦାଉ ଦାଉ ହେଇ ଜଳୁଛି । ସେ ଚାହିଁଲା । ଆଖି ତାର ପୋଡ଼ି ଉଠିଲା । ବାପରେ ବାପ କେତେ ଆଲୁଅ । ଉପର ଡାଳରୁ ବଣିଛୁଆ ଦୁଇଟା ବାହାରି ଆସି ଏ ଡାଳରୁ ସେ ଡାଳକୁ କୁଦି କୁଦି ଯାଉଛନ୍ତି । ମାଆ ସାଙ୍ଗରେ ତାଳ ପକାଇ ଗୀତ ବୋଲୁଥାନ୍ତି । ୟା ମନ ଭାରି ଖରାପ ହେଇଗଲା । ତା ମାଆଟା ବଣି ମାଆ ଭଳି ସେତେ ଭଲ ନୁହେଁ । ତାକୁ ତ କାହିଁ ଇମିତିକା ବଡ଼ ଜହ୍ନ ତଳେ ଗୀତ ବୋଲେଇ ଶିଖେଇନି । ସେ ଗୀତ ବୋଲି ବୋଲି ବଣିଛୁଆ ପାଖକୁ ଗଲା । ବଣିଛୁଆ ଦିଟା ଡରିଗଲେ । ସେମାନେ ପାଟି କରି ଉଠିଲେ । ତାଙ୍କ ମାଆ ଆସି ୟାକୁ ଖୁମ୍ପି ପକାଇଲା । ୟା ପାଟି ଶୁଣି କୁଆଟେ କା' କା' ଡାକ ଛାଡ଼ି ଛୁଟି ଆସିଲା । ପେଚା ମାଆର ନିଦ ଭାଙ୍ଗିଗଲା । ସେ ବାହାରକୁ ଧାଇଁ ଆସି ଆପଣା ଖୋଲ ଭିତରକୁ ୟାକୁ ଟାଣି ନେଇଗଲା । ମାଆ ଉପରେ ପେଚାଛୁଆ ବେଜାଏ ରାଗିଗଲା । ତା ମାଆ ସବୁ ଭଣ୍ଡୁର କରିଦେଲା । ରାଗରେ ସେ ମାଆକୁ ଦିଚାରି କାମୁଡ଼ା ବି ଦେଲା । ଖୋଲ ପାରହେଇ ପଳାଇବାକୁ ବସିଲା । ତାକୁ କାହିଁକି ଏମିତିକା ବଡ଼ ଜହ୍ନ ଦେଖେଇ ଦେଇନି ବୋଲି ମାଆକୁ ଦାଲକିବାକୁ ବସିଲା । ମାଆ ତାକୁ ବୋଧ ଦେଇ ବୁଝାଉ

ବୁଝାଉ କାନ୍ଦିକରି କହିଲା– "ତୁନି ହୋ'ରେ ପୁଅ, ପାଟି କିଳି ଦେ। ସେ ଜହ୍ନ ନୁହେଁରେ ବାପ, ସେ ହେଉଛି ସୂର୍ଯ୍ୟ। ଆମ ଦୁନିଆରେ ସୂର୍ଯ୍ୟ ନାହିଁ। ଆମେ ଅନ୍ଧାରରେ ରହିବା। ନହେଲେ ଆମେ ମରିବାରେ ବାପ।"

ସେ ମାଆର କଥାରେ ରାଗିଗଲା। କାହିଁକି ସେ ସୂର୍ଯ୍ୟର ଦୁନିଆକୁ ଯିବନି? କାହିଁକି ସେ ଆଲୋକର ରାଜ୍ୟରେ ନ ବୁଲିବ? କିଏ ସେ ଇମିତି ତାଙ୍କୁ ହଇରାଣ କରିବାକୁ ନିୟମ କରିଛି? ସେ ତମ ତମ ହେଇ ଆଗେଇ ଯାଉଥିଲା। ମାଆ ତାକୁ ପେଟ ତଳକୁ ଟାଣି ଆଣିଲା। ମାଆ ପେଟରୁ କେତେଟା ପର ସେ ରାଗରେ ଥଣ୍ଟ ମାରି ଉପାଡ଼ି ପକାଇଲା। ମାଆ ତାର ଖାଲି କାନ୍ଦିଲା। ମାଆ କାନ୍ଦୁଛି, ସେ ଫେରି ଆସିଲା। ବସା ସେପାଖରେ କୁଆଗୁଡ଼ାକ ପାଟି କମ୍ପାଉଥାନ୍ତି। କାହିଁକି ସେ ପୋଡ଼ାମୁହିଁ ସୂର୍ଯ୍ୟକଥା କହି ପୁଅର ମୁଣ୍ଡକୁ ବିଗାଡ଼ି ଦେଲା ବୋଲି ପେଚା ମା ହାଇପି ସାଇପି ହେଉଥିଲା। "ଆମେ ଅନ୍ଧାରର ବାସିନ୍ଦା। ଆମେ ଅଶୁଭର ସମ୍ପ୍ରଦାୟ। ଆମେ ଦୁନିଆର ଅଭିଶାପ। ଆମେ ଆଲୁଅ ଖୋଜିଲେ ମରିବା। ଆଲୁଅର ରାଜୁତିରେ ଆମକୁ ଶିକାର କରିବା ପାଇଁ ଆଲୁଅ ପୁଅମାନେ ଟାକିକି ବସିଛନ୍ତି।" ମାଆ ତାର କହୁଁ କହୁଁ ଖାଲି କାନ୍ଦିଲା। ମାଆକୁ ବୋଧ ଦେଉଁ ଦେଉଁ ସେ କହିଲା– "ମାଆ ତୁ ଟିକିଏ ଥୟ ଧର। ମୁଁ ବଡ଼ ହୁଏଁ ଆଲୁଅ ରାଜ୍ୟକୁ ମୁଁ ତତେ ଅଲବତ୍ ନେଇଯିବି। ମୁଁ ସବୁ ଶତ୍ରୁକୁ ମା ନିପାତ କରିଦେବି।

ସେଦିନ ମାଆ ପୁଅ ଦିଜଣ ଆମ୍ବଡାଳରେ ବସିଥାନ୍ତି। ଆକାଶରେ ଜହ୍ନ ନଥାଏ। ପେଚା ଛୁଆକୁ ଭଲ ଲାଗୁ ନଥାଏ। ହଠାତ୍ ପାଖ ଘରର ଫାଙ୍କ ଦେଇ ଆଲୁଅ ଦିଶିଲା। ପେଚା ଛୁଆର ମନ ଉଲସି ଉଠିଲା। ସେ ପାଟି ଖୋଲି ଗୀତ ପଦେ ଧଇଲା। ଘର ଭିତରୁ କଡ଼ାକଡ଼ା କଥାରେ କିଏ ଗାଳି ଦେଲା– "ଉଠୁଛୁନା ପୋଡ଼ାମୁହାଁ ସେଠୁ। ପିଠାଖଡ଼ିକା ପଚେଇ ଦାଗି ଦେବି ଯେ ବୁଝିବୁ। ଦୂର୍ ଦୂର୍, ତତେ ଝାଡ଼ାବାନ୍ତି ଖାଉ।" ପେଚା ମାଆ ଛୁଆ ମୁହଁରେ ଥଣ୍ଟ ଲଗାଇ ଆଉ ପାଟି ନ କରିବାକୁ କହିଲା। ପେଚାଛୁଆ ରାଗିଗଲା। ବାଃ, ଆଲୁଅକୁ ଘର ଭିତରେ ଆପଣା ସମ୍ପତ୍ତି ଭଳି କାରବାର କରିବେ। ଆଲୁଅକୁ ଦେଖି ଆମେ ଟିକିଏ ଖୁସି ହେଲେ ଗାଳି ଶୁଣିବୁ? ନା, ତା ହେବନି। ସେ ଝରକା ଭିତରେ ପଶି ଆଲୁଅକୁ ଛଡ଼ାଇ ଆଣିବାକୁ ବାହାରିଲା। ମାଆ କାନ୍ଦି ବୋବେଇ ତାକୁ ସେଦିନ ଫେରାଇ ଆଣିଲା।

ସଞ୍ଜପରେ ଘରୁ ବାହାରିବା ଆଗରୁ ସେ ତାର ଡେଣା ଦୁଇଟାକୁ ଭଲକରି ସେଦିନ ଦେଖିନେଲା। ତାର ସବୁ ପର ଉଠି ଯାଇଛି। ଗୋଡ଼କୁ ସିଧାକରି ଦୁଇଚାରିଥର ନାଚିଗଲା। ବେଶ୍ ଶକ୍ତ ଅଛି। ଥଣ୍ଟକୁ ଗଛ ଖୋଲ ଦେହରେ ବାଡ଼େଇ ଦେଲା। ଖୁବ୍ ଟାଣ ହୋଇ ଗଲାଣି। ସେ ଉଡ଼ି ଚାଲିଗଲା। ରାତିର ଅନ୍ଧାର ଭିତରେ ଗୋଟାଏ

ଖୋଲରେ ବସି ରହିଲା । ସେ ଆଉ ଘରକୁ ଫେରିବନି । ସେ ସୂର୍ଯ୍ୟର ଦେଶରେ ବୁଲିବ । ସେ ଆଲୁଅକୁ ଦଖଲ କରିବ । ସେ ଶତ୍ରୁର ମୁହାଁମୁହିଁ ହେଇ ମୁକାବିଲା କରିବ ।

ରାତି ପାହି ଆସିଲା । ଦିଗ୍‌ବଳୟର ତଳଆଡୁ ନାଲଖରାର ପିଚକାରୀ ଉପରକୁ ଉଠିଲା । ସୂର୍ଯ୍ୟ ରାଜ୍ୟରେ ଆଲୋକର ଏହି ପ୍ରଥମ ପ୍ରବେଶକୁ ସେ କେବେ ଦେଖିନଥିଲା । ସେ ଆଖି ଖୋଲି ଆଲୁଅର ଏ କଳସବୁଡ଼ା ଉତ୍ସବକୁ ନିଜକୁ ଭୁଲି ଦେଖିବାକୁ ଲାଗିଲା । ଶହଶହ ଚଢ଼େଇ ଗୀତ ସାଙ୍ଗରେ ଡେଣାର ଭାଙ୍ଗ ପକାଇ ଉଡ଼ିଗଲେ । ତାରି ଶହ ଶହ ଜାତି ଭାଇ ଆଲୁଅରେ ବୁଲି ବୁଲି ଜୀବନର ସ୍ୱାଦୁ ଚାଖିବେ, ଆଉ ସେ ଡରିମରି ଅନ୍ଧାର ଭିତରେ ସଢ଼ି ସଢ଼ି ମରିବ ? ନା, ତା ମନ ଦମ୍ଭରେ ପୂରି ଉଠିଲା । ସୂର୍ଯ୍ୟ ଆସ୍ତେ ଆସ୍ତେ ଉପରକୁ ଉପରକୁ ଉଠୁଥିଲେ । ଦିନର ଆଲୁଅ ବେଶୀ ବେଶୀ ଜଳି ଉଠୁଥିଲା । ଏଡ଼େ ବଡ଼, ଏତେ ସୁନ୍ଦର ଆଲୁଅର ପୃଥିବୀରେ ତା ପାଇଁ କଣ ଟିକିଏ ଜାଗା ନାହିଁ ? ନା, ସେ ଆଜି ମନପୂରା ମଉଜ କରିବ । ସେ ଆଜି ଦୁନିଆକୁ ଜଣାଇଦେବ, ସେ ମଧ୍ୟ ଆଲୋକର ପୁଅ । ତାର ମଧ୍ୟ ଏ ରାଜ୍ୟରେ ଦାବି ଅଛି ।

ସେ ମନଇଛା ଚାରିଆଡ଼େ ବୁଲିବାକୁ ଲାଗିଲା । ଆଖି ମେଲେଇ ଦୁନିଆର ହରେକ ଦରବ ଟିକିନିଖି କରି ଦେଖିଲା । ହଠାତ୍ ପଛଆଡୁ କିଏ ତାକୁ ଆକ୍ରମଣ କଲା । ସେ ବୁଲି ପଡ଼ିଲା । ମାଆ ସେଦିନ ତାକୁ ତାର ଶତ୍ରୁ ବୋଲି ଚିହ୍ନେଇ ଦେଇଥିଲା । ଏଇମାନେ ତାଙ୍କଠୁଁ ଆଲୁଅକୁ ଛଡ଼ାଇ ନେଇଛନ୍ତି । ସେ ମଧ୍ୟ ଥଣ୍ଟକୁ ସଜାଡ଼ି ନେଇ କୁଆଟା ଉପରେ ଚଢ଼ାଉ ଆରମ୍ଭ କରିଦେଲା । କୁଆଟା ପ୍ରତିରୋଧ କରୁଁ କରୁଁ ତା ଜାତି ଭାଇଙ୍କୁ ଡାକ ଛାଡ଼ିଲା । ଦଳ ଦଳ କୁଆ କା' କା'ର ରେରେକାର ଦେଇ ମାଡ଼ି ଆସିଲେ । ଏଡ଼େ ବଡ଼ ମଜଭୁତ୍ ଦଳ ଆଗରେ ସେ ରହି ପାରିବନି ବୋଲି ବୁଝି ପାରିଲା । ଆଗରେ ଦିଶୁଥିବା କୋଠା ଘର ଆଡ଼କୁ ଖୁବ୍ ଜୋର୍‌ରେ ଡେଣା ହଲାଇ ଛୁଟିଗଲା । କାନ୍ଥର ଗୋଟାଏ ଛୋଟ ଗଳାବାଟ ଦେଇ ସେ ଗଳିଗଲା । ଘରର ଭିତର ପାଖ ପର୍ଯ୍ୟନ୍ତ ସେ ପଶିଗଲା । ବାହାରେ ଏଣେ କୁଆଗୁଡ଼ାକ ଭେଳା ଭେଳା ହେଉଥାନ୍ତି । ସେ ଟିକିଏ ନିଶ୍ଚିନ୍ତରେ ସେଠି ବସିଲା । ଟିକିଏ ସୁବିଧା ମିଳୁ, ଶତ୍ରୁର ଦଳ ଭାଙ୍ଗିଯାଉ, ସେ ବି ତାର ପ୍ରତିଶୋଧ ନେଇ ଜାଣେ । ସେ ଆଜି ଆଲୁଅ ରାଜ୍ୟରୁ ତାର ପାଉଣାକୁ ଆଦାୟ କରିବ । ସେ ଅନ୍ଧାରର ଅଭିଶାପ ନୁହେଁ । ସେ ଆଲୁଅର ସନ୍ତାନ । ସେ ଆଜି ଆଲୁଅକୁ ମନମାନା ନିଶ୍ଚୟ ଉପଭୋଗ କରିବ ।

କୋଠାଘର ଭିତରେ ପଲଙ୍କର ମୋଟା ଗଦି ଉପରେ ଧନବୀର ଧୀରୁମଲ୍ଲ ଶୋଇଛନ୍ତି । ଡୁହା ଡୁହା ହେଇ ଜରର କମ୍ପ ତାଙ୍କ ଉପରକୁ ମାଡ଼ି ଆସୁଛି । ଧୀରୁମଲ୍ଲ ବ୍ୟସ୍ତ ହୋଇ ପଡୁଛନ୍ତି । ଜରର ବିନ୍ଧା ଛିଟିକା ଭିତରେ ପିଟି ଛାଟି ହୋଇ ସେ ମଝିରେ

ମଝିରେ ଚିତ୍କାର ଛାଡ଼ୁଛନ୍ତି । "ଦେଖ, ସୋରିଷ ତେଲରେ ଯେମିତି ଅଶୀଭାଗ ଅଗରା ମିଶେ । ହଁ, ମଦନା ବାରିକ ଉପରେ ଆଉ ଯେପରି ପାଞ୍ଚ ନମ୍ବର କେଶ୍ ଦାୟର ହେବ । ଶଳାର ଭଉଣୀ ଚନ୍ଦ୍ରମା ଭାରି ସତୀ ଦେଖେଇ ହେଉଛି । ମୁଁ ଟିକିଏ ଶରଧାରେ ହାତ ପକେଇ ଦେଲି ବୋଲି ଶାଳୀ ମାଇକିନା ମତେ ମାରିବାକୁ ଉଠୁଥିଲା । ଶୁଭୁଛି, କୋଡ଼ିଏ ଜଣଯାଏଁ ଗୁଣ୍ଡା ପଠାଇ ପ୍ରିୟ ମିଶ୍ର ବିଲରୁ ପାକଲା ଧାନ କାଟି ଆଣ । ପଇସାକୁ ପରବାୟ ରଖନି । ପାଠ ଦିଅକ୍ଷର ପଢ଼ିଛି ବୋଲି ଶଳା ମତେ ନମସ୍କାର କରିବନି । ଏଠି ଆସି ଶୁଣ, ଶହେ ଭରି ଚୋରା ଅଫିମ ଦେବ ବୋଲି ସେ କଲିକତିଆ ବଙ୍ଗାଳୀ କହି ଯାଇଛି । ତାକୁ ଟିକିଏ ଆଖି ରଖିଥିବ ।"

ଏଇମାନେ ଆଲୋକ ରାଜ୍ୟର ନାମଯାଦା ଲୋକ । ଯାଙ୍କ ପାଇଁ ସୂର୍ଯ୍ୟ ତାଙ୍କର ସବୁଦିନେ ଆଲୋକ ଦିଅନ୍ତି । ପେଚାଛୁଆ ଆଖି ଖୋଲି ଭଲ କରି ଚାହିଁଲା । ହଠାତ୍ ଧୀରୁମଲ୍ଲଙ୍କ ପାଖରୁ ଆଲୋକ ରାଜ୍ୟର ସଚ୍ଚୋଟ ସଚ୍ଚାକର୍ମୀଙ୍କ ଆଖି ପେଚା ଛୁଆ ଉପରେ ପଡ଼ିଲା ।

"ଅଶୁଭ, ଅଶୁଭ, ମହା ବିତ୍‌ପାତ ଯୋଗ । ଘରେ ଉଲ୍ଲୁକ ବସିଲା । ମାଲିକ ବେମାର ପଡ଼ିଛନ୍ତି ।" କର୍ମୀ ବ୍ୟସ୍ତ ହୋଇପଡ଼ି ପାଟି କମ୍ପାଇଲେ । ଗୋଟାଏ ଲମ୍ବା ବାଉଁଶ ଆଣି ବିଚରା ପେଚା ଛୁଆକୁ ଖେଞ୍ଚି ଖେଞ୍ଚି ତଡ଼ି ଦିଆଗଲା । ଦୁଇଟିଯାକ ଡେଣା ତାର ଜଖମ ହୋଇଗଲା । ସେ କଷ୍ଟେମଷ୍ଟେ ଡେଣା ଟେକି କୋଠା ଉପରେ ବସିଲା । ଗଛ ଉପରୁ କେତେଟା କୁଆ ଆସି ଚଢ଼ାଉ ଆରମ୍ଭ କରିଦେଲେ । କୁଆଙ୍କ ପାଟି ଶୁଣି ଜଣେ ଚାକର କୋଠା ଉପରକୁ ଯାଇ ବାଡ଼ିରେ ପେଚା ଛୁଆଟି ଉପରେ ପାହାର ଲଗେଇଲା । ଛୁଆଟି ତଳକୁ ଗଡ଼ି ପଡ଼ିଲା । ପେଚାଟା ବସିଛି ବୋଲି କୋଠା ଉପରେ ମେଞ୍ଚାଏ କୁଟା ଜାଳି ହଳଦୀ ପାଣିରେ ଲିଭାଇ ଦିଆଗଲା । ଯାହା ହେଉ ଅରିଷ୍ଟ କଟିଗଲା ।

କୁଆପଲ ଅଶକ୍ତ ପେଚାଛୁଆ ଉପରେ ଆକ୍ରମଣ ଚଳେଇ ଦେଲେ । ପେଚାଛୁଆଟିର ଡେଣା ମୂଳରୁ ଥୋଳା ଥୋଳା ରକତ ଥୋପି ପଡୁଥିଲା । ସେ ଥରେ ଉପରକୁ ଚାହିଁଲା । ସୂର୍ଯ୍ୟ ଖୁବ୍ ଉପରେ ଯଥେଷ୍ଟ ଆଲୁଅ ଦେଉଛନ୍ତି । ଖୁବ୍ କଷ୍ଟରେ ଉଠିପଡ଼ି ସେ ତା ବସା ଆଡ଼କୁ ମୁହାଁଇଲା । ଖୋଲଯାଏଁ ଉଠି ପାରିଲାନି । ଗଛମୂଳେ ପଡ଼ିଗଲା । ମାଆ ତାର ପୁଅ ଆସିନି ବୋଲି କ୍ୱାଲୁବାଲୁ ହୋଇ ଚାହିଁ ବସିଥାଏ । କଣ କରିବ? ଦିନଟାରେ ଛୁଆଟା କେଉଁଠି ଆଶ୍ରା ନେବ? ମାଆର ମନଟା ଏଣୁ ତେଣୁ ଭାବି ଭାବି ଗୋଳେଇ ଘାଣ୍ଟି ହେଉଥାଏ । ପୁଅର ପାଟି ଶୁଣି ସେ ଗଛ ମୂଳକୁ ଧାଇଁ ଆସିଲା । ପୁଅକୁ ରକ୍ତ ସୁଡୁସୁଡୁ ଦେଖି ପାଟିରୁ ତାର କଥା ବାହାରିଲାନି । ପେଚା ଛୁଆଟି ଥରେ

ଉପରକୁ ଚାହିଁଲା । ଗଛ ଉପରେ ବଣିଚ୍ଛୁଆ ସବୁ ଡେଇଁ ଡେଇଁ ଗୀତ ବୋଲୁଥିଲେ । ସୂର୍ଯ୍ୟ ଆକାଶ ଦିହରୁ ଆଲୁଅ ପୃଥିବୀ ଉପରକୁ ଖସାଇ ପକାଉଥିଲେ ।

ପେଚାଛୁଆ ମାଆକୁ କତିକି ଡାକି ମାଆ ଗୋଡ଼ରେ ମୁଣ୍ଡ ଗଡ଼େଇ ଗଡ଼େଇ କହିଲା– "ମାଆ, ତୁ କାନ୍ଦନା । ମୋର ଆଉ ଭାଇ ହେଲେ ତାଙ୍କୁ କହିବୁ, ତାଙ୍କ ଭାଇ ଆଲୋକ ରାଜ୍ୟ ଜୟ କରିବାକୁ ଯାଇଁ ବୀରପରି ମରିଛି ।"

ପେଚାଛୁଆଟି ସବୁଦିନ ପାଇଁ ଆଖି ବୁଜିଦେଲା ।

ସୂର୍ଯ୍ୟ ତାଙ୍କ ଦୁନିଆ ଉପରେ ବେଶି ବେଶି ଆଲୁଅ କୁଢ଼େଇ ଦେଉଥିଲେ ।



ମନୋଜ ଦାସ

# ବାଘ

ପର୍ବତରୁ ଉତୁରିଲା ପରେ, ନାନାଦି ଶ୍ୱାପଦ, ମୃଗକୁଳଙ୍କ ତୃଷା ମେଣ୍ଟାଇ ସାରି ନିଘଞ୍ଚ ଶାଳବଣ ଓ ପରବର୍ତ୍ତୀ ପଥୁରିଆ ଅପନ୍ତରା ଅତିକ୍ରମ କରି ଯେଉଁଠି ନଈଟୀ ପ୍ରଥମେ ମଣିଷଙ୍କୁ ଦେଖାଦେଇଛି, ତାହା ସଂପ୍ରତି ପ୍ରତିଷ୍ଠିତ ଏକ ଉପନିବେଶ; ମୁଖ୍ୟତଃ ବୃହତ୍ ଓ ଅନତିବୃହତ୍ କେତେକ ଇଞ୍ଜିନିୟର, ଅର୍ଦ୍ଧଶତ ସରିକି କୁଣ୍ଠିତ କିରାଣି ଓ ସହସ୍ରାଧିକ ଶ୍ରମିକଙ୍କୁ ନେଇ ଗଠିତ । ନଈ ସେଠାରେ ଦେଖା ଦେଇଛି ସତ; କିନ୍ତୁ ଦ୍ୱିପ୍ରହରର କେତେ ଘଣ୍ଟାକୁ ଛାଡ଼ିଦେଲେ ବାକି ସମୟତକ ସେ ଥାଏ ଘନ କୁହୁଡ଼ିର ଓଢ଼ଣା ତଳେ ମୃଦୁ ଦୃଶ୍ୟମାନ ମାତ୍ର ।

ପର୍ବତ ମୁଣ୍ଡରେ ହୋଇଛି ପ୍ରବଳ ବର୍ଷା । ନଈରେ ଆସିଛି ଭରପୂର ବନ୍ୟା ।

ସୂର୍ଯ୍ୟାସ୍ତ ପୂର୍ବରୁ ନଈ କୂଳେ କୂଳେ ଚିତ୍କାର କରି ଦଉଡୁଥିଲେ ଶ୍ରମିକ ବସ୍ତିର ପଂଝାଏ ପିଲା– "ବାଘ, ବାଘ ।"

ଏବଂ ରିକ୍ରିଏସନ୍ କ୍ଲବଘର ଦୁଆର ମୁହଁରେ ଛିଡ଼ା ହୋଇ ପିଅନ କହିଲା, "ହଜୁର ! ନଈରେ ବାଘ ।"

–"ହ୍ୱାଟ ! ବାଘ କ'ଣ କୁମ୍ଭୀର ହୋଇଛି ଯେ ନଈରେ ପହଁରିବ ? ପାଗଳ !" ଚିଫ୍ ଇଞ୍ଜିନିୟର୍ ପଶା ଉପରୁ ମୁଣ୍ଡ ଉଠାଇ କହିଲେ ।

–"ହଜୁର ! ଥରେ ଥରେ ଅଡୁଆରେ ପଡ଼ି ବାଘ ନଈ ସୁଅରେ ଭାସି ଆସେ । ଝଡ଼ ବେଳେ ଗୋଡ଼ ଖସଡ଼ି ପର୍ବତରୁ ନଈରେ ପଡ଼ିଯାଇପାରେ ।"

"ଗୁଡ୍ ହେଭନ୍ସ୍ ।" ଚିଫ୍, ଡେପୁଟି ଚିଫ୍, ଆଡ଼୍‌ମିନିଷ୍ଟ୍ରେଟିଭ୍ ଅଫିସର ଓ ଶ୍ରମିକ ନେତା ପଶା ଛାଡ଼ି ନଈବନ୍ଧକୁ ଉଠିଗଲେ । ସତରେ ମଝି ନଈରେ ବାଘମୁହଁଟାଏ ଦେଖାଯାଉଛି । କୁହୁଡ଼ି ଭିତରେ ଜଣା ପଡୁନାହିଁ ଆକାର ।

–"ଦୌଡ଼ିଯାଇ ମୋ ବଙ୍ଗଳାରୁ ବନ୍ଧୁକଟା ନେଇ ଆସ", ଚିଫ୍ ବୁଲିପଡ଼ି ଆଡ଼ମିନିଷ୍ଟ୍ରେଟିଭ୍ ଅଫିସରଙ୍କୁ ନିର୍ଦ୍ଦେଶ ଦେଲେ, "ଯାଅ, ଜଲ୍‌ଦି ।"

ଜନପଦରେ ହୁଲସ୍ଥୁଲ ପଡ଼ିଗଲା । ବନ୍ଧୁକ ଆସିବା ଭିତରେ ଶତାଧିକ ନରନାରୀ ଏବଂ ସେମାନଙ୍କର ତିନି ତିନି ସନ୍ତାନମାନେ ଆସି ନଈକୂଳରେ ଠୁଳ ହେଲେ ।

ବାଘ ଭାସିଚାଲିଛି । ବନ୍ଧୁକ ବାଗେଇ ସନ୍ତର୍ପଣରେ ଚିଫ୍ କୂଳେ କୂଳେ ଚାଲିଛନ୍ତି । କୁହୁଡ଼ି ଘୋଟି ଆସୁଛି । ଯେଉଁଠି ନଈ ବାଙ୍କ ବୁଲିଛି ଓ ଗୁଡ଼ାଏ ବଣବୁଦା ପାଣି ଭିତରକୁ ପଶି ଯାଇଛନ୍ତି, ସେଇଠି ବାଘ କୂଳକୁ ଉଠିବାକୁ ଚେଷ୍ଟା କରୁଛି । ବାଘ ଓ କୂଳ ଭିତରେ ବ୍ୟବଧାନ ଯେତିକି ଯେତିକି କମି ଆସିଲା, ଜନତା ସେତିକି ସେତିକି ପଛକୁ ରହିଗଲେ । ତା'ପରେ ଗୋଟାଏ ମୁହୂର୍ତ୍ତରେ ଚିଫ୍ ଅବହିତ ହେଲେ ଯେ ଏପରିକି ଶ୍ରମିକନେତା ମଧ ପଛ ପଛ ହେଉଛନ୍ତି ।

ହଠାତ୍ ଛାତି ଭିତରେ ତାଙ୍କର ଗୋଟାଏ ଛୋଟ ବିସ୍ଫୋରଣ ହେଲାଭଳି ଲାଗିଲା । ଆତଙ୍କ ! ବାଘ କୂଳକୁ ଆସିଲେ ମହାବିଷମ ପରିସ୍ଥିତି ଉପୁଜିବ । ଡେପୁଟି ଚିଫ୍ ଅଦୂରରୁ ନିଶ୍ୱାସ ବନ୍ଦ କରି କହିଲେ, "ଫାୟାର, ସାର୍, ଫାୟାର୍ !"

ସେ ବାଘର କପାଳ ଠଉରାଇବାକୁ ଚେଷ୍ଟା କରି ଗୁଳି ଚଳାଇଲେ– ଦୁଇଥର ।

ଜନତା ଉତ୍ସାହଭରେ ସାହେବଙ୍କ ଜୟଧ୍ୱନିସୂଚକ ହଟ୍ଟଗୋଳ କରି ଆଗେଇ ଆସିଲେ । କୁହୁଡ଼ି ସହିତ ବାରୁଦ ଧୂଆଁ ମିଶି କିଛି ସମୟ ବାଘର ଅବସ୍ଥିତି ନିରୂପଣ କରାଇଦେଲା ନାହିଁ । କିନ୍ତୁ ଧୂଆଁ ଉଡ଼ିଯିବା ପରେ ମଧ କାହିଁ ବାଘର ଦେଖା ? ଜନତା ନିସ୍ତବ୍ଧ । ଦଶ ମିନିଟ୍ ପନ୍ଦର ମିନିଟ୍ । ଅନ୍ଧକାର ଘନେଇ ଆସୁଛି । ବୁଦା ଆଢୁଆଳରେ କିଛି ଗୋଟାଏ ଚଳପ୍ରଚଳ ହେବାଭଳି ମନେହେଲା । ଅର୍ଥାତ୍, ବାଘ ଉପରକୁ ଉଠିଆସିଛି ।

ଅନ୍ଧକାର ଓ ଆତଙ୍କ । ଜନତା ଓ ସେମାନଙ୍କ ହାକିମମାନେ ସେଦିନ ସ୍ୱ ସ୍ୱ ବସାରେ ପଶିବାବେଳେ ବିଳ ପ୍ରବେଶର ଅନୁଭୂତି ଲାଭ କଲେ ।

ପ୍ରତ୍ୟାବର୍ତ୍ତନ ପଥରେ ଚିଫ୍ ବାରମ୍ବାର ପଛକୁ ଅନାଉଥିଲେ । ବାଘ ପ୍ରତି ତାଙ୍କର ବିଶେଷ ଡର ନଥିଲା । ଡର ଥିଲା ବାଘର ଗୋଟାଏ ସମ୍ଭାବ୍ୟ ପ୍ରଶ୍ନ ପ୍ରତି । ହଠାତ୍ ଯଦି ବୁଦା ଭିତରୁ ବାହାରିଆସି ବାଘ ତାଙ୍କୁ ଚ୍ୟାଲେଞ୍ଜ୍ କରିବସେ, "ଲଜ୍ଜା ନାହିଁ ? ମୁଁ ସୁଅ ଭିତରେ ପଡ଼ିଯାଇ ଉବୁଟୁବୁ ହେଉଥିବା ବେଳେ ମୋତେ ଗୁଳି କରି ବୀରତ୍ୱ ଦେଖାଉଥିଲୁ ? ବର୍ତ୍ତମାନ ଆ । ହେଇଟି ମୋ କପାଳ । ହାତ ସିଧା ରଖି ଲକ୍ଷ୍ୟ କଲୁ ଦେଖିବା । ବ୍ୟାରେଲ୍ ଦେଇ ଶୂନ୍ୟ ଜ୍ୟାମିତି ଆଙ୍କୁଛୁ କ'ଣ ରେ ?"

× × × × × ×

ନିଶାର୍ଦ୍ଧ । ଚିଫ୍ ପିଉଥିଲେ ଓ ଭାବୁଥିଲେ ! ବାସ୍ତବିକ୍ ଜୀବନରେ ବାରମ୍ବାର ସେ ତାହା ହିଁ କରିଛନ୍ତି । ପ୍ରତିପକ୍ଷ ଅସହାୟ ଅବସ୍ଥାରେ ଥିଲାବେଳେ ହିଁ ସେ ତାକୁ ପରାସ୍ତ

କରିଛନ୍ତି– ପ୍ରେମରେ ଓ ପ୍ରମୋଶନରେ । ଏଇ ରାତିରେ, ଯେପରି କି ସେ ସମସ୍ତ ପରାଜିତ ପ୍ରତିପକ୍ଷର ପ୍ରତିନିଧି ରୂପେ ବାଘ ତାଙ୍କୁ ଫାଙ୍କିଦେଇ କୂଳକୁ ଉଠିଆସିଲା ।

ହଠାତ୍ ତାଙ୍କ ହୃଦୟ ଭିତରେ ଘୋଟିଆସିଲା ଏକ ଦୁରନ୍ତ ଆତଙ୍କ । ସେ ବିଚଳିତ ହେଲେ । ତେବେ ପର ମୁହୂର୍ତ୍ତରେ ସେ ସଚେତନ ହୋଇ ଉଠିଲେ ନାଃ ସ୍ତ୍ରୀ ଗୋଟିଏ ବାଘଦେହୀ ଛାପିଛାପିକିଆ ଗାଉନ୍ ମଡ଼ାଇ ଶୋଇଛନ୍ତି ମାତ୍ର । ବାଘ ଥିଲେ ବାହାରେ ଥିବ, ଝରକା ସେପାରି ଏକ ବିକଟ ଅନ୍ଧକାର ଭିତରେ । ସେ ଝରକା ବାହାରକୁ ଅନାଇଲେ ଓ ତା'ପରେ–

"ଆ... !"

"ଆ.... !"

ଚିଫ୍ ଚିତ୍କାର କଲେ । ହାତରୁ ଗ୍ଲାସ ତଳେ ପଡ଼ି ଚୂରମାର୍ ହୋଇଗଲା । ଶ୍ରୀମତୀ ଚିଫ୍‌ଙ୍କୁ ନିଦ ହୋଇଯାଇଥିଲା । ଧଡ଼ପଡ଼ ଉଠିବସି ସେ ସାହେବଙ୍କୁ କୁଣ୍ଢାଇ ପକାଇ ଚିତ୍କାର କରିସାରି ପଚାରିଲେ, "କ'ଣ, କ'ଣ ?"

"ବାଘ !"

"ଗଲା କୁଆଡ଼େ ?"

ଚିଫ୍ ଅନ୍ଧକାର ଉଦ୍ୟାନ ଆଡ଼କୁ ଆଙ୍ଗୁଳି ଦେଖାଇଦେଲେ । ଉଦ୍ୟାନ ପରେ ପରେ ଡେପୁଟି ଚିଫ୍‌ଙ୍କ ଘର । ଶ୍ରୀମତୀ ଚିଫ୍ ଫୋନ୍ ଉଠାଇଲେ ।

× × × × × ×

ଡେପୁଟି ଚିଫ୍ ମି. ସମ୍ପତ୍ ପିଉଥିଲେ ଓ ଭାବୁଥିଲେ । ସେ ଜଣେ ଅବ୍ୟର୍ଥ ଶିକାରୀ । ସେ କଥା ଚିଫ୍ ଉତ୍ତମ ରୂପେ ଜାଣନ୍ତି । ତଥାପି ତାଙ୍କୁ ସୁଯୋଗ ନ ଦେଇ ଚିଫ୍ ନିଜେ ଗୁଳିକଲେ । ସାଂଘାତିକ ! ଯେହେତୁ ସେ ହାକିମ, ତେଣୁ ତାଙ୍କ ଅଧସ୍ତନର ପ୍ରତିଭାକୁ ମନଇଚ୍ଛା ଦବାଇ ରଖିବେ !

ହଠାତ୍ ଚିଫ୍‌ଙ୍କ ମୁହଁ ତାଙ୍କ କଳ୍ପନାରେ ବୃହଦାକାର ହୋଇଉଠିଲା । ସେ ଆତଙ୍କିତ ଅନୁଭବ କଲେ । ଅବଶ୍ୟ ପିଇଥିବା ଅବସ୍ଥାରେ ଥରେ କୌଣସି ଜିନିଷ ତାଙ୍କୁ ବଡ଼ ଦେଖାଯିବାକୁ ଆରମ୍ଭ କଲେ ତାହା ବଡ଼ରୁ ବଡ଼ ହିଁ ହୋଇ ଚାଲେ ।

ଆତଙ୍କ ବଢ଼ି ଚାଲିଥିଲା । ସମ୍ପତ୍‌ଙ୍କ କଳ୍ପନାରେ ଚିଫ୍‌ଙ୍କ ମୁହଁ ବଢ଼ି ବଢ଼ି ବ୍ୟାଘ୍ରାକୃତି ଧାରଣ କରୁଥିଲା ।

–"ହାଲୋ, ହାଲୋ, ମି ସମ୍ପତ୍! ମୁଁ ମିସେସ୍ ଚିଫ୍ କହୁଛି । ତମ ବଗିଚା ଆଡ଼କୁ ବାଘ ଗଲା । ରାତି ଅଧରେ ତୁମକୁ ବିରକ୍ତ କରୁଥିବା ଯୋଗୁଁ ଦୁଃଖିତ ।"

–"ଆ...ଆ... ଆଇ ସି ! ଓ ଯେସ୍ । ହେଇଟି ଯାଉଛି ।"

ଆଡ୍‌ମିନିଷ୍ଟ୍ରେଟିଭ୍ ଅଫିସର ମି. ବନ୍‌ବନ୍ ପିଉଥିଲେ ଓ ଭାବୁଥିଲେ । ଆଜି ସର୍ବସମକ୍ଷରେ ଚିଫ୍ ମୋତେ ତାଙ୍କ ବଙ୍ଗଳାରୁ ଯାଇ ବନ୍ଧୁକ ଘେନି ଆସିବାକୁ ଯେମିତି ଭାବରେ ହୁକୁମ କଲା, ତାହା ବିପଜ୍ଜନକ । ଟିକିଏ ଉତ୍ତେଜିତ ହେଲେ ଲୋକଟା କେଡ଼େ ଅବିବେକୀ ହୋଇପାରେ! ବନ୍ଧୁକ ଆଣିବା ପାଇଁ ପିଅନକୁ କହିପାରି ନ ଥାନ୍ତା? ଆଗାମୀ କାଲି ଜୋତା ଆଣିବାକୁ ନ କହିଲେ ହେଲା!

ପିଇଥିବା ଅବସ୍ଥାରେ ମି. ବନ୍‌ବନ୍ କିଛି ଗୋଟାଏ ପ୍ରତିହିଂସାମୂଳକ କଳ୍ପନା କରିବାକୁ ଭଲପାଆନ୍ତି । ସେ କଳ୍ପନା କରୁଥିଲେ ବର୍ତ୍ତମାନ ସେଇ ବାଘଟା ପ୍ରତି ବଙ୍ଗଳା ଫାଟକ ଆଗରେ ମନ ଦେଇ ନାମଫଳକଟିମାନ ପଢୁଛି । ହେଇଟି ଚିଫ୍‌ଙ୍କ ବଙ୍ଗଳା; ବାଘ ନିଶରେ ହାତ ମାରି ହତା ଭିତରେ ପଶିଲା । ମୃଦୁ ହସି ବନ୍‌ବନ୍ ବାଘକୁ ଉତ୍ସାହ ଦେଲେ; ହେଇଟି ଚିଫ୍ ବସିଛି । ମଦ ପିଉଛି । ଧର ତା ବେକ । ସିମିତି ନୁହେଁ, ଏମିତି । ଦେ ଥାପୁଡ଼ାଏ । ହାଃ ହାଃ ହାଃ! ମୋତେ ଜୋତା ବୁହାଇବ!

ମି. ବନ୍‌ବନ୍ ନିଜ ଗାଲରେ ଥାପୁଡ଼ା ବସାଇଲେ ।

-"ହେଲୋ, ହେଲୋ, ମି. ବନ୍‌ବନ୍! ମୁଁ ସମ୍ପତ୍ । ବାଘ ତମ ବାଡ଼ିପଟେ ପଶିଲା- ଫର୍ ୟୋର ଇନ୍‌ଫରମେସନ୍ ।"

-"ସ... ସ... ସତେ? ହେ .... ହେ.... ହେଇ ତ ନା କ'ଣ! ଆ...!!"

ଶ୍ରମିକନେତା ସାହୁ ପିଉ ନଥିଲେ ବା ଆପାତତଃ ଭାବୁ ନଥିଲେ । ବନ୍ଧୁକଧାରୀ ଚିଫ୍‌ଙ୍କ ବ୍ୟକ୍ତିତ୍ୱର ପ୍ରଭାବ ଶ୍ରମିକ ଜନତା ଉପରେ କେତେଦୂର ପଡ଼ିଥିବ, ସେଇ ବିଷୟ ଚିନ୍ତାକରି- ଓ ପରେ ପରେ ତାଙ୍କ ଗୁଳିରେ ବାଘ ମରି ନଥିବା ଯୋଗୁଁ ଆଶ୍ୱସ୍ତ ବୋଧ କରି ସଦ୍ୟ ତନ୍ଦ୍ରାମଗ୍ନ ହୋଇଥିଲେ ଓ ସ୍ୱପ୍ନ ଦେଖୁଥିଲେ ।

କଛା ଭିଡ଼ି ସେ ବିଚ୍ ରାସ୍ତାରେ ବାଘ ସହିତ ଯୁଝୁଛନ୍ତି । ବାହା ବାଃ, ବାହା ବାଃ! ଚତୁର୍ଦ୍ଦିଗରେ ଶ୍ରମିକ ଜନତା ଶ୍ରଦ୍ଧା ଓ ଭୟ ସହକାରେ ଅନାଇ ରହିଛି । ତା'ପରେ ସେ ବାଘକୁ ତଳେ କଚାଡ଼ିଦେଲେ । ବିପୁଳ କରତାଳି ଧ୍ୱନି ହେଲା । ପରାଜିତ ବାଘଟି ମଧ୍ୟ ସପ୍ରଶଂସ ଆଖିରେ ତାଙ୍କୁ ଅନାଇ କରତାଳି ଦେଲା । ତା' ପରେ ଜନତାର ନେତା ହିସାବରେ ଚିରାଚରିତ ପ୍ରଥାରେ ସେ ସ୍ଲୋଗାନ୍ ଦେଲେ, "ବାଘ କବଳରୁ ଆମକୁ ବଞ୍ଚାଇଲା କିଏ?" ଜନତା କହିଲା, "ସାହୁ, ସାହୁ!" "ଅନ୍ତତଃ ଉପମନ୍ତ୍ରୀଟାଏ ହେବାକୁ ହକ୍‌ଦାର କିଏ?" "ସାହୁ ସାହୁ ସାହୁ ।" ସାହୁ କିଏ? "ଆମର ପ୍ରାଣପ୍ରିୟ ନେତା, ବାଘ ପେଟରୁ ଆମର ରକ୍ଷାକର୍ତ୍ତା!"

"ହେଲୋ, ହେଲୋ, ମୁଁ ବନ୍‌ବନ୍ କହୁଛି । ମି. ସାହୁ ଶୁଣନ୍ତୁ । ଯେତେଦୂର ମନେହୁଏ ବାଘଟା ଆପଣଙ୍କ କମ୍ପାଉଣ୍ଡରେ ପଶିଲା!"

"ଆ... ମୁଁ କରିବି କ'ଣ?"

"କରିବ, ଏଁ? ହାଃ ହାଃ! ବିଦାୟ!"

ଶ୍ରମିକନେତା ସାହୁ ତପ୍‌ରେ ଥରୁଥିବା ସତ୍ତ୍ୱେ ଏମପ୍ଲିଫାୟାର୍ ଚୁଙ୍ଗା ଶ୍ରମିକ ବସ୍ତି ଆଡ଼କୁ ମୁହାଁଇ କୋଠରି ଭିତରୁ ଘୋଷଣା କଲେ, "ଶ୍ରମିକ ଭାଇମାନେ, ମୁଁ ଆପଣମାନଙ୍କର ନେତା ସାହୁ କହୁଛି। ଆଜି ନଇରେ ଭାସି ଆସୁଥିବା ବାଘଟି ଆମ ଆଖି ଆଗ ଦେଇ ଖସିଯାଇ ବୁଲାବୁଲି କରୁଛି। ବସ୍ତି ଭିତରେ ପଶିପାରେ। ଆପଣମାନଙ୍କ ନିରାପତ୍ତା ପାଇଁ ସମସ୍ତ ବ୍ୟବସ୍ଥା ମୁଁ କରୁଛି। ମୁଁ ଜାଣେ, ସେଇ ପ୍ରତିକ୍ରିୟାଶୀଳ ଜୀବର ଲକ୍ଷ୍ୟ ହେଲି ମୁଁ। ମରିବି ପଛେ, ମୋ ୟୁନିୟନ୍‌ର ଜଣେ ବୋଲି ସଭ୍ୟର କେଶ ସ୍ପର୍ଶ କରିବାକୁ ତାକୁ ଦେବି ନାହିଁ।"

ଅତଃପର ସାହୁ ପୁନର୍ବାର ଥରିବାକୁ ଲାଗିଲେ।

ଅଦୂରର ଶ୍ରମିକବସ୍ତିରେ ଘରେ ଘରେ ବିଦ୍ୟୁତ୍ ଆଲୋକ ଦପ୍‌ଦପ୍ ହୋଇ ଜଳିଉଠିଲା। ବାତାବରଣରେ ଜାଗ୍ରତ ନୀରବତାର ଶିହରଣ।

-"ହଜୁର! ବାଘଟା ଏଯାଏ ପାଣିରେ ଭାସୁଛି। କଣ୍ଟାବୁଦାରେ ଲଟକି ରହିଛି ସେଇ ବାଙ୍କ ପାଖରେ। ରୋଗିଣା ବାଘଟା। ଅନାହାରରେ ମରିଛି ମନେହୁଏ।" ସକାଳେ ପିଅନ କହିଲା।

-"ସତେ? ହୋ ହୋ ହୋ!" ଚିଫ୍ ହସିଲେ।

-"ହଁ ହଜୁର୍! ଆଉ କାଲି ରାତିରେ ଯେଉଁ ବାଘକୁ ଆପଣମାନେ ଦେଖିଲେ, ସେଇଟା ବଡ଼ ଚତୁର। କେଉଁଠି ହେଲେ ଖୋଜ ଚିହ୍ନଟାଏ ଛାଡ଼ି ଯାଇନାହିଁ।"

-"ହୋ ହୋ ହୋ! ସତେ?"

-"ହଁ ଆଜ୍ଞା! ସେଇଟା ସାଧାରଣ ବାଘ ନୁହେଁ। କାରଣ ଗୋଟାଏ ବି କୁକୁର ଭୁକିଲେ ନାହିଁ।"

-"ହୋ ହୋ ହୋ!" ଚିଫ୍ ତୃତୀୟ କପ୍ ଚାହାରେ ଓଠ ଲଗାଇଲେ।



## ରାମଚନ୍ଦ୍ର ବେହେରା

# ଶୋଷ

କିଛି ଭାବିବା ପାଇଁ କିମ୍ବା କେଉଁଆଡ଼େ ଖସିଯିବା ପାଇଁ ଉପାୟ ନଥିଲା । ଗୋଟା ଅଭୂତପୂର୍ବ ଶକ୍ତି ତାକୁ ଉଠେଇ ନେଲ ପାଣି ଭିତରୁ ଏବଂ ଅଳ୍ପ କେତୋଟି ମୁହୂର୍ତ୍ତ ପରେ ସେ ଝୁଲି ରହିଲା ଏହି ବିଶାଳ ଅଥଚ ସୂକ୍ଷ୍ମ ହାତମୁଠା ଭିତରେ, ଆକାଶ ଓ ସମୁଦ୍ର ମଝିରେ । ଘଟଣାଟି ଏମିତି ଅପ୍ରତ୍ୟାଶିତ ଭାବରେ, ତା'ର ସମସ୍ତ ସତର୍କତା ଓ ଅନୁମାନକୁ ପରାଜିତ କରି ଘଟିଯିବ ବୋଲି ସେ ବା ଜାଣିଥାନ୍ତା କିପରି ? କେହି କ'ଣ ଜାଣିପାରେ, ପର ମୁହୂର୍ତ୍ତରେ କ'ଣ ଘଟିବ ?

ହେତୁ ହେଲାଦିନୁ ସେ ବଞ୍ଚି ରହିଥିଲା ସମୁଦ୍ର ଭିତରେ ଆମେ ଯେମିତି ବଞ୍ଚି ରହିଚେ ପୃଥିବୀରେ ଅନାହତ ବେଳ ପର୍ଯ୍ୟନ୍ତ । ଚାରୋଟି ଗୋଡ଼ ଓ ବେକ ସମେତ ମୁହଁ କାଢ଼ି ସେ ଯାଉଥିଲା ଏଣେ ତେଣେ, ପାରୁପର୍ଯ୍ୟନ୍ତ ଚାରିଆଡ଼େ ନଜର ଦେଇ ଓ ସାବଧାନତା ଅବଲମ୍ବନ କରି । ବିଧାତାଙ୍କ ଦୟାରୁ ତା' ପିଠି ଓ ପେଟ ବେଶ୍ ଟାଣୁଆ ଥିଲେ ମଧ୍ୟ ସମୁଦ୍ର ଭଳି ଏକ ଅନନ୍ତ ଇଲାକାରେ ସେ ସନ୍ତୋଷଜନକ ଭାବରେ ଆତ୍ମପ୍ରତ୍ୟୟଶୀଳ ନ ଥିଲା । ସେ ଦେଖୁଥିଲା ଆହୁରି ଅନେକ ବଡ଼ ବଡ଼ ଜୀବମାନଙ୍କୁ, ଯେଉଁମାନେ ଅନ୍ୟମାନଙ୍କ ପ୍ରତି ବେଶ୍ ନିର୍ଦ୍ଦୟ ଓ ସମ୍ପୂର୍ଣ୍ଣ ସହାନୁଭୂତିହୀନ ହୋଇପଡ଼ନ୍ତି ନିଜର ସ୍ଥିତି ସଂରକ୍ଷଣ ସକାଶେ । ସମୁଦ୍ର ଭିତରେ ଅହରହ ଚାଲିଥିବା ହତ୍ୟାକାଣ୍ଡ ଓ ବିବାଦ ଦେଖି ଦେଖି ସେ ଭାବି ନେଇଥିଲା ଯେ, ଏମିତି ଏକ ସମୟ ଆସିଯିବ, ଯେତେବେଳେ ତା'ର ସୁଦୃଢ଼ ପିଠି ଓ ପେଟ ତାକୁ ପ୍ରତିରକ୍ଷା କରିବା ପାଇଁ ନିଜର ଅସହାୟତା ପ୍ରକାଶ କରିବେ ଏବଂ ତା'ପରେ ସମୁଦ୍ର ଭିତରେ ତା'ର ସଂସାର ସରିଯିବ ।

ଏଇମିତି ସଂସାର ସରିଯାଏ । ସେ ମଧ୍ୟ କିଛି କମ୍ ଛୋଟ ଛୋଟ ଜୀବଙ୍କର ସଂସାର ଉଜାଡ଼ି ଦେଇ ନାହିଁ । ଅନେକଙ୍କୁ ସେ କାବୁ କରିଚି । କେଜାଣି ଏଇଭଳି କାବୁ କରିବା ସକାଶେ ସେ ଜୀଇଁ ରହିଥିଲା ସମୁଦ୍ର ଭିତରେ ଏକ ଅବଶ୍ୟମ୍ଭାବୀ ଲୋଭ ଓ ପ୍ରବୃତ୍ତିକୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରି ।

ମାତ୍ର ହଠାତ୍ ଏସବୁ କ'ଣ ଘଟିଗଲା ? ବିନା ଉପକ୍ରମଣିକା ଓ ଚେତାବନୀରେ କ'ଣ ଗୋଟାଏ ଗୁଡ଼େଇ ହୋଇଗଲା ତା' ଚାରିପଟେ । ତା'ର ତଥାକଥିତ ସୁଦୃଢ଼ ଦେହକୁ ଆୟତ୍ତ କରି ଛନ୍ଦି ଦେଲା ଅଦେଖା, ଅଶୁଣା ଶକ୍ତିଟିଏ । କ'ଣ ହେଲା ବୋଲି ଶଙ୍କାଗ୍ରସ୍ତ ହେଉଁ ହେଉଁ ସେ ଅନୁଭବ କଲା, ସେ ଉର୍ଦ୍ଧ୍ୱମୁଖୀ ହେଉଚି । ଛଟପଟ ହେବା ଆରମ୍ଭ କଲା ବେଳକୁ ସେ ଆଉ ନଥିଲା ନିଜ ପରିଚିତ ପୃଥିବୀ ଭିତରେ । ଝୁଲି ରହିଥିଲା ଶୂନ୍ୟରେ । ତଳେ ତା'ର ନିରଙ୍କୁଶ, ନିର୍ବାକ ସମୁଦ୍ର । ଜନ୍ମ ହୋଇ ଏତେବଡ଼ ହୋଇଥିଲା ଯାହାର ବିଶାଳତା ଭିତରେ, ସେ ଚିଉଦିଗକୁ ଛାତି ବିସ୍ତାର କରି ପଡ଼ି ରହିଛି । ତା'ର ହୃତ୍‌ସ୍ପନ୍ଦନର କମ୍ପନ ଚାରିଆଡ଼େ । ସେ କମ୍ପନ ଏତେ ପାଖରେ – ଏଇ ଯେମିତି ଛୁଇଁଦେଇ ହେବ । ଏଇ ଯେମିତି ପଶିଯାଇ ହେବ ସମୁଦ୍ର ଭିତରକୁ । ଅସ୍ଥିର ବ୍ୟାକୁଳତାରେ ସେ ପ୍ରଲୁବ୍‌ଧ ହେଲା ଏବଂ ଛଟପଟ ହେବା ଅବ୍ୟାହତ ରଖିଲା ନିଜ ସଂସାର ଭିତରକୁ ଫେରିଯିବା ପାଇଁ ।

ତା'ର ସ୍ଥିତି କେଉଁଠି, ତାହା ସେ ଦେଖିପାରିଲା କ୍ଷଣକ ମଧ୍ୟରେ । କଳା ମଚ୍‌ମଚ୍ କେହି ଜଣେ ଠିଆ ହୋଇଚି ସମୁଦ୍ର ଉପରେ । ଗୋଟାଏ ହାତ ପ୍ରସାରିତ ହୋଇଚି । .ସେଇ ହାତରୁ ଓହଳି ଆସିଚି ସୂକ୍ଷ୍ମ, ସୁଦୃଢ଼ ଶକ୍ତିଟି, ଯାହା ଭିତରେ ସେ ଆଉଟି ପାଉଟି ହେଉଚି ଖସିଯିବା ପାଇଁ କୌଣସି ମତେ ସମୁଦ୍ର ଭିତରକୁ ।

ଏମିତି କିଛି ସେ ଦେଖି ନ ଥିଲା ଆଗରୁ । ସମୁଦ୍ର ଉପରେ ଠିଆ ହୋଇଥିବା ଏଇ କଳା ମଚମଚ ଅଚିହ୍ନା ଜୀବଟି କିଏ ହୋଇପାରେ ? ମାତ୍ର ଯେମିତି ଢଙ୍ଗରେ ସେ ତାକୁ ଟେକି ଧରିଥିଲା ତା'ର ବାସସ୍ଥାନ ଉପରେ, ସେଇଥିରୁ ସେ ବୁଝିପାରିଲା ଯେ ବିପଦ; ଏମିତି କି ପ୍ରାଣନାଶର ସମୟ ଆସିଗଲା । ସେ ତାକୁ ଟେକି ଧରିଥିଲା ସମସ୍ତ ଯାନ୍ତବ ଦାମ୍ଭିକତାର ସହିତ । ତାକୁ ସେମିତି ଧରି ସେ ସମ୍ଭବତଃ ଅଟ୍ଟହାସ୍ୟ କରୁଥିଲା ଏବଂ ପ୍ରକାରାନ୍ତରେ ଚାଲେଞ୍ଜ କରୁଥିଲା– ଫେରିଯିବୁ ? ଗଲୁ ଦେଖିବା ? ଏଇ ତ ତୋ ପାଖରେ ରହିଚି ତୋ ଘର । ତୁ ଦେଖି ପାରୁଚୁ ତା' ଛାତିର ହୃତ୍-କମ୍ପନକୁ । ଦେଖିବା କେମିତି ଯିବୁ ମୋ କବଳରୁ ?

ଏଇଭଳି ଗୋଟାଏ ଭାଷା ସେ ପଢ଼ି ପାରୁଥିଲା, ସେଇ ଅପରିଚିତ ଜୀବର ଢଙ୍ଗରୁ । ସେ ପ୍ରାଣପଣେ ଚେଷ୍ଟା କଲା ମୁକ୍ତି ପାଇଁ, ଅଥଚ ଏକ ନିଷ୍କରୁଣ, ଦୁର୍ଦ୍ଦାନ୍ତ ଅଟ୍ଟହାସ୍ୟ ତୁହାକୁ ତୁହା ବିଛେଇ ହୋଇ ପଡୁଥିଲା ସବୁଆଡ଼େ । କ'ଣ ସେ କରିବ, କିଛି ଭାବି ନ ପାରି ପ୍ରତିବାଦ କରୁଥିଲା ତାକୁ ଛନ୍ଦି ଦେଇଥିବା ବନ୍ଧନ ବିରୁଦ୍ଧରେ । ସେ ପୂରାପୁରି ହଡ଼ବଡ଼େଇ ଯାଇଥିଲା ଅଟ୍ଟହାସ୍ୟ ଭଳି ଦିଶୁଥିବା ଏବଂ ତାକୁ ଶୂନ୍ୟରେ ଟେକି ଧରିଥିବା ସେ ଜୀବଟିକୁ ଦେଖି ।

ଦାନ୍ତ କଡ଼ମଡ଼ କରି ପ୍ରଚଣ୍ଡ କ୍ରୋଧ ଓ ବିରକ୍ତିରେ ଗୋପୀ ପାଟି କରିଉଠିଲା– "ଶାଳା, ହାରାମଜାଦା କାହାଁକା !"

ପ୍ରଥମ ଥର ଜାଲ ଫୋପାଡ଼ିବା ପରେ ମାଛ ବଦଳରେ ସେ ପାଇଲା କ'ଣ ନା, ଗୋଟାଏ କଇଁଚ ! କିଛି ସମୟ ପାଇଁ ଜାଲଟିକୁ ଟେକି ଧରି ସେ ପଳାୟନବାଦୀ କଇଁଚର ବ୍ୟାକୁଳ ପ୍ରତିବାଦ ଦେଖିନେଲା । ଭାବିଲା, ଲାଭ କ'ଣ? ଅଦରକାରୀ ଜୀବଟିକୁ ଫୋପାଡ଼ି ଦେବା ଦରକାର ପାଣି ଭିତରକୁ । ସମୟ ଗଡ଼ି ଯାଉଚି ।

ଜାଲ ଭିତରୁ ମୁକ୍ତ କଲାବେଳେ କଇଁଚଟି ନିଜର ଗୋଡ଼ ଓ ମୁହଁ ପ୍ରତ୍ୟାହାର କରିନେଲା ନିଜ ଦେହ ଭିତରକୁ । ନିଜକୁ ନିଜ ଭିତରେ ଲୁଚେଇବା ପାଇଁ ଚେଷ୍ଟା କଲା ଏବଂ ସମସ୍ତଙ୍କୁ ସୂଚନା ଦେଲା ଯେ, ସେ କିଛି ନୁହେଁ । ଖାଲି ଏମିତି ଗୋଟାଏ ଗୋଲାକାର, ଆବଶ୍ୟକହୀନ ବସ୍ତୁଟିଏ ।

ମାତ୍ର ଗୋପୀ ଭଳି ଏକ ଅଭିଜ୍ଞ କେଉଟ କଇଁଚର ଏଇ ଛଳନା ପ୍ରତି ଆଦୌ ଧ୍ୟାନ ଦେଇ ନ ଥିଲା । ଜାଲରୁ କଇଁଚକୁ ବାହାର କରି ସମୁଦ୍ର ଭିତରକୁ ଫୋପାଡ଼ି ଦେବାବେଳେ ହାତ ତା'ର ଅଟକିଗଲା ସତେ ଯେମିତି କୁହୁକ ବଳରେ ।

ଭ୍ରୂକୁଞ୍ଚନ କରି ଏକାଗ୍ରତାର ସହିତ ସେ ଦେଖିନେଲା ଧରିଥିବା କଇଁଚଟିକୁ ଏବଂ ସ୍ୱୀକାର କଲା ଯେ, ଏଭଳି କଇଁଚ ସେ ଆଗରୁ ଦେଖି ନ ଥିଲା କେବେ । ବର୍ଷ ବର୍ଷ ଧରି ସେ ଓ ତା'ର ସହକର୍ମୀମାନେ ଡଙ୍ଗାରେ ଚଢ଼ି ସମୁଦ୍ର ଭିତରକୁ ଆସିଛନ୍ତି ମାଛ ମାରିବା ପାଇଁ । ସମୁଦ୍ର ଭିତରୁ ଫସଲ ପାଇଛନ୍ତି ଅନେକ । ଏଇମିତି ଅନେକ କଇଁଚ ଧରି ପର ମୁହୂର୍ତ୍ତରେ ସେମାନଙ୍କୁ ଫେରାଇ ଦେଇଛନ୍ତି ପାଣି ଭିତରକୁ । ମାତ୍ର ବର୍ତ୍ତମାନର ଏଇ ଛୋଟ କଇଁଚଟି ଥିଲା ଅନନ୍ୟ, ବିଚିତ୍ର ଓ ତୁଳନାହୀନ ।

ମାଛ ମାରିବା ପାଇଁ ଆସିଥିବା ଗୋପୀ ପ୍ରୟୋଜନ ନ ଥିବା କଇଁଚକୁ ଧରିଲା ଦୁଇହାତରେ । ଏପଟ ସେପଟ କରି ଖୋଜିବା ଆରମ୍ଭ କଲା ତା'ର ବିଶେଷତ୍ୱକୁ; ଯାହା ତା' ଭଳି ବୟସ୍କ କେଉଟର ଜରୁରୀ କାର୍ଯ୍ୟକ୍ରମକୁ ସ୍ତବ୍ଧ କରିଦେଇଥିଲା ଏବଂ ତା'ର ବିସ୍ମୟାଚ୍ଛନ୍ନ ଦୃଷ୍ଟିକୁ ନିଜ ଉପରେ ବନ୍ଦୀ କରି ରଖିଥିଲା ସେ ପର୍ଯ୍ୟନ୍ତ ।

ଶଙ୍କିତ ଧୈର୍ଯ୍ୟର ସହିତ କଇଁଚଟି ଚୁପ୍‌ଚାପ୍ ରହିଥିଲା, ଆଗଭଳି ପିଠି ଓ ପେଟ ଭିତରେ ଜାକିଜୁକି ହୋଇ । ମଧ୍ୟାହ୍ନ ଅତିକ୍ରମ କରି ଯାଇଥିବା ସୂର୍ଯ୍ୟ ତା' ପିଠିର ଆକାଶରେ ଲଦି ହୋଇଥିଲା ନିରାଶ୍ରୟ ଭାବରେ । ଗୋପୀ ଚାହିଁଲା ଚାରିଆଡ଼କୁ । ସେଇ ଡଙ୍ଗାର ଆର ପାଖରେ ଠିଆହୋଇ ତା' ସାଇର ସନିଆଁ ଜାଲ ଫିଙ୍ଗି ମାଛ ମାରିବାରେ ବ୍ୟସ୍ତ ଅଛି । ଅନ୍ୟ ଦୁଇଟି ଡଙ୍ଗାରେ ଆସିଥିବା ଅନ୍ୟ ଚାରିଜଣ ବହୁ ଦୂରରେ ଅଛନ୍ତି, ଦେଖାଯାଉ ନାହାନ୍ତି । ତା' ଚାରିପଟେ ବିଶାଳ, ନୀଳ ସମୁଦ୍ର ।

ଚାରିଆଡ଼େ ବ୍ୟାପିଯାଇଚି ନୀଳ ଆକାଶକୁ ସବୁ ଦିଗରେ ଦିଗ୍‌ବଳୟର କବ୍‌ଜାରେ ଧରି ରଖିବା ପାଇଁ ।

ଗୋପୀ ହାତରେ ଅବର୍ଣ୍ଣନୀୟ, ଚମତ୍କାର, ଗୋଲ କଇଁଚଟିଏ । ପ୍ରାୟ ସମତଳ ଦେଖାଯାଉଥିବା ସମୁଦ୍ର ଭଳି ତା'ର ସମତଳ ପେଟ । ଢାଙ୍କୁଣୀ ଭଳି ଦିଶୁଥିବା ଆକାଶ ସତେ ଯେମିତି କଇଁଚ ପିଠିର ଏକ ପରିବର୍ଦ୍ଧିତ ପ୍ରକାଶ । କଇଁଚଟି ଦିଶୁଥିଲା ସମୁଦ୍ର ଓ ଆକାଶର ସଂକ୍ଷିପ୍ତ ଆକାରଟିଏ ଭଳି ଏବଂ ଏହାର ସୁନ୍ଦର ନୀଳ ପିଠିରୁ ବିଚ୍ଛୁରିତ ହେଉଥିବା ଅପୂର୍ବ ନୀଳିମା ସମୁଦ୍ର ଓ ଆକାଶକୁ ନୀଳବର୍ଣ୍ଣରେ ରଞ୍ଜିତ କରୁଥିଲା । ସେମାନଙ୍କର ରଙ୍ଗ ନିର୍ଭରଶୀଳ ହୋଇ ରହିଥିଲା ଏଇ କଇଁଚର ନୀଳ ପିଠି ଉପରେ । ଏଇ କଇଁଚ ହିଁ ଯୁଗ ଯୁଗ ଧରି ସୃଷ୍ଟିର ସମସ୍ତ ନୀଳ ରଙ୍ଗ ଉଦାର ଭାବରେ ଯୋଗାଇ ଆସିଛି । ସେଇ ରଙ୍ଗର ଉତ୍ସଟି ବର୍ତ୍ତମାନ ଗୋପୀ ହାତରେ ।

ଗୋପୀ ସେଇଟିକୁ ଫୋପାଡ଼ି ପାରିଲା ନାଇଁ ପାଣି ଭିତରକୁ । ସେ ତନ୍ମୟ ହୋଇଯାଇଥିଲା । ମାତ୍ର ତା'ର କୌଣସି ଯୋଜନା ନ ଥିଲା କଇଁଚ ସମ୍ପର୍କରେ । ଚିପ୍‌ସ 'ଢାଳି ରାସ୍ତା ମରାମତି କରୁଥିବା ଜଣେ କୁଲି ପାଖରେ ଚକ୍ ଚକ୍ ବର୍ଣ୍ଣିଳ ପଥର ଖଣ୍ଡେର ସ୍ଥାନ କେଉଁଠି ?

– "ସନିଆଁ, ଏଣେ ଦେଖିଲୁ ।" ସହକର୍ମୀର ଦୃଷ୍ଟି ଆକର୍ଷଣ କରିବା ପାଇଁ ଚେଷ୍ଟା କଲା ଗୋପୀ । କେଜାଣି କାହିଁକି ସେ ଭାବିନେଲା ଯେ, ପୃଥିବୀର ସମସ୍ତ ମଣିଷ ବିସ୍ମୟର ସହିତ ଏଇ ଅଲୌକିକ ଆଶ୍ଚର୍ଯ୍ୟଟିକୁ ଦେଖିବେ । ସେମାନଙ୍କର ହୃଦ୍‌ବୋଧ ହେବ ସେ କେଡ଼େ ଯତ୍ନ ଓ ଶ୍ରଦ୍ଧାର ସହିତ ବିଧାତା ପରିଚିତ ଦରବ ସୃଷ୍ଟି କଲାବେଳେ ଅଭାବିତ ବ୍ୟତିକ୍ରମ ମଧ୍ୟ ତିଆରି କରି ପକାଏ । ଦେଖଣାହାରୀମାନେ ଏ ଭଳି ବ୍ୟତିକ୍ରମ ଦେଖନ୍ତି ଓ ଚାହାଁନ୍ତି ଆକାଶ ଆଡ଼େ ଏମାନଙ୍କର ନିର୍ମାତାକୁ ଦେଖିବା ପାଇଁ ।

ଗୋଟିଏ ହାତରେ ଜାଲ ଧରି ହାତ ପାପୁଲିରେ କପାଳ ଓ ବେକର ଝାଳ ପୋଛିଲା ସନିଆଁ । ଚାହିଁଲା ଗୋପୀ ଆଡ଼େ ଏବଂ ପଚାରିଲା– "କ'ଣ ?"

"ଏଇ, ଦେଖ !" ହାତରେ ଧରିଥିବା କଇଁଚକୁ ଗୋପୀ ଦେଖାଇଲା ।

"କ'ଣ ? ଏଇ କଇଁଚ ?" ସନିଆଁ ଏକରକମ ଆଶ୍ଚର୍ଯ୍ୟ ହତାଶ ହେଲା । ଗୋଟାଏ ମାମୁଲି କଇଁଚ ପାଖରେ ଏମିତି କେଉଁ ବୈଶିଷ୍ଟ୍ୟ ରହିଚି ଯେ, ସେ ମାଛମରା ସ୍ଥଗିତ ରଖି ତାକୁ ଚାହିଁ ବସିଥିବୁ ? କିଛି ଭଲା ଅଦ୍ଭୁତ ଗୁଣ ଥା'ନ୍ତା ତା' ପାଖରେ ! କୌଣସି ଅଙ୍ଗ ମୋଡ଼ି ଦିଆଯାଆନ୍ତା ଏବଂ ଭୁସ୍ ଭୁସ୍ ହୋଇ ବାହାରନ୍ତା ଧୂଆଁ । ବ୍ୟାପିଯାଆନ୍ତା ଆକାଶ ପର୍ଯ୍ୟନ୍ତ । ବନିଯା'ନ୍ତା ଗୋଟାଏ ରାକ୍ଷସ । କିମ୍ୱା ତା' ପେଟରୁ ବାହାରନ୍ତା ମୋତି-ମାଣିକ୍ୟର ଐଶ୍ୱର୍ଯ୍ୟମୟ ଗନ୍ତାଘର । କିମ୍ୱା କିଛି ନ ହେଲେ ବି ମୁଦିଟିଏ । ଏହି ମୁଦି ନ ଦେଖି ସ୍ୱାମୀ ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଥିବା ଓ ଅନ୍ତଃସତ୍ତ୍ୱା

ହୋଇଥିବା, ଲୁହ ଝରାଉଥିବା କେଉଁ ଅସହାୟା ରମଣୀ ଫେରିପାଆନ୍ତା ତା' ମନର ଈଶ୍ୱରଙ୍କୁ । ଏଇମିତି କିଛି । କାହିଁ? ସେମିତି ସମ୍ଭାବନା ଥିବାର ଜଣାପଡୁ ନାହିଁ ମୁର୍ଦ୍ଧାର ଭଳି ଅଭିନୟ କରୁଥିବା କଇଁଚଟି ପାଖରେ! ହଁ, ଦିଶୁଚି ଗୋଟେ ପ୍ରକାର । ମୁଖ୍ୟତଃ ନୀଳବର୍ଣ୍ଣରେ ଚିତ୍ରିତ ତଥା ଅନ୍ୟ ହାଲ୍‌କା ରଙ୍ଗର ସମ୍ମିଶ୍ରଣରେ ବେଶ୍ ଭଲ ଦିଶୁଚି ।

– "ଦେଖୁନୁ, କେତେ ଭଲ ଦିଶୁଚି !" ଗୋପୀ ପ୍ରବର୍ତ୍ତାଇବା ପାଇଁ ଚେଷ୍ଟା କଲା ସନିଆଁକୁ । "ଆମେ ଅନେକ କଇଁଚ ଦେଖିଚେ । ହେଲେ, ଏମିତି ସୁନ୍ଦର କଇଁଚ କେବେ ବି ଧରା ଦେଇ ନଥିଲେ ଆମ ଜାଲରେ ।"

ବିରକ୍ତିରେ ସନିଆଁ ମୁହଁ ବୁଲେଇ ନେଲା । ପରିହାସ କରି କହିଲା, ଜାଲ ଫୋପାଡୁଥିବା ଅବସ୍ଥାରେ... "ପାଖରେ ରଖିଥା । ହଜାର ଟଙ୍କା ଦେଇ କେହି ଜଣେ କିଣି ନେବେ । ବଡ଼ ଲୋକ ହୋଇଯିବୁ ।"

ତାହା ବି ସମ୍ଭବ ନୁହେଁ । ଏଇ ଗୋଲାକାର ଜୀବଟି ତା'ର ଭବିଷ୍ୟତ ପରିବର୍ତ୍ତନ କରିଦେଇ ପାରିବ ବୋଲି ଗୋପୀର ବିଶ୍ୱାସ ନାଇଁ । ଅଥଚ ପ୍ରଥମ ଜାଲ ଫୋପଡ଼ାରେ ଧରିଥିବା ନିଷ୍ପ୍ରୟୋଜନ କଇଁଚକୁ ସେ ଛାଡ଼ିପାରିଲା ନି କାହିଁକି କେଜାଣି । ଖୁବ୍ ଆସ୍ତେ, ଯତ୍ନର ସହିତ ତାକୁ ଡଙ୍ଗା ଭିତରେ ରଖିଲା ଏବଂ ମନକୁ ମନ କହିଲା– "ଥାଉ । ପିଲାମାନେ ଖେଳିବେ ।"

ସୀମାତୀତ ପାଣିର ପୃଷ୍ଠା ଉପରେ ଭାସି ଚାଲିଥିଲା ସରଳ, ଛୋଟ୍ଟ ଡଙ୍ଗାଟି । ଦୁଇ ପାଖରେ ଠିଆ ହୋଇ ଦୁଇଜଣ ମଣିଷ ବ୍ୟସ୍ତ ରହିଲେ ଦୈନନ୍ଦିନତାରେ । ଡଙ୍ଗାଟି କମ୍ପି ଉଠୁଛି ଅହରହ । ତା'ର ଅସ୍ଥିର ଗତିରେ ନ ଥିଲା କୌଣସି ନିର୍ଦ୍ଦିଷ୍ଟତା, କୌଣସି ନିର୍ଧାର୍ଯ୍ୟ ଦିଗ ।

ଢେର ସମୟ ଧରି କମ୍ପିତ ଡଙ୍ଗାର ଚଟାଣ ଉପରେ ଧୀର ସ୍ଥିର ହୋଇ ବସି ରହିଥିଲା କଇଁଚଟି । ତା'ର ଉଦ୍‌ବେଗ ବଢ଼ି ଯାଇଥିଲା ଏବଂ ସମ୍ଭବତଃ ସେ ଅସହାୟତାର ଲୁହ ଝରେଇବା ଆରମ୍ଭ କରି ଦେଇଥିଲା । ଇଏ କି ବିଚିତ୍ର ପୃଥିବୀ! ବିନା ପାଣିରେ କିଭଳି ବଞ୍ଚିବା ସମ୍ଭବ? କେଉଁଆଡ଼େ ଗଲା, ବିପଦସଙ୍କୁଳ ହେଉ ପଛେ, ତା'ର ପରିଚିତ, ପ୍ରିୟ ପୃଥିବୀ! କୁଆଡ଼େ ଗଲେ, ସେ ଭୟ କରୁଥିବା ସମୁଦ୍ରର ଜୀବମାନେ! କୁଆଡ଼େ ଗଲେ, ସେ ବଞ୍ଚି ରହିବାର ଅବଲମ୍ବନ ଗୁଡ଼ିକ? ତା'ର ଧାରଣା ନ ଥିଲା ଯେ, ସମୁଦ୍ରକୁ ଛାଡ଼ିଦେଲେ ଆଉ କିଛି ଅଞ୍ଚଳ ଅଛି, ଯେଉଁଠାରେ କାଳାତିପାତ କରିବା ସମ୍ଭବ । ସେ ଏବେ କରିବ କ'ଣ? ଯିବ କୁଆଡ଼େ? ଏତେ ଦହଗଞ୍ଜ ଏତେ ଅଣନିଃଶ୍ୱାସୀ ହୋଇ ପଡୁଥିବା ଜୀବନକୁ ଧରି ସେ ଯିବ କେଉଁଠିକି? ଖୁବ୍ ଚଞ୍ଚଳ ସେ ମରିଯିବ କି?

କଇଁଚଟି ଆସ୍ତେ, ଖୁବ୍ ସନ୍ତର୍ପଣରେ ମୁହଁ କାଢ଼ିଲା ତା' ଖୋଳପା ଭିତରୁ ଏବଂ ତତ୍କ୍ଷଣାତ୍ ଜାକିଜୁକି ହୋଇ ରହିଲା ଆଗ ଭଳି । ଚାରୋଟି ବିଶାଳ ଖମ୍ବ ଭଳି ଦିଶୁଚି ଦୁଇଜଣ ମଣିଷଙ୍କ ଗୋଡ଼ । କିଛି ଗୋଟାଏ ଭଲ ମନ୍ଦ ହୋଇ ଯାଇପାରେ । ସେ ପୁଣି ଅପେକ୍ଷା କଲା ।

ମାତ୍ର କେତେ ସମୟ ପର୍ଯ୍ୟନ୍ତ ସେ ଏମିତି ଗୋଡ଼ହାତ ବାନ୍ଧି ପଡ଼ିରହିବ, ମରି ଯାଇଥିବାର ଅଭିନୟ କରି ? ତା'ର ଧୈର୍ଯ୍ୟ ଭୁଷୁଡ଼ି ପଡ଼ିଲା । ସମସ୍ତ ସାହସ ନେଇ ସେ ପୁନରାୟ ମୁହଁ ବାହାର କଲା ଓ ଅଦ୍ଭୁତ, ପାଣିହୀନ, ଅପରିଚିତ ପୃଥିବୀକୁ ଭଲକରି ଦେଖିବା ପାଇଁ । ଅଣଓସାରିଆ, ଲମ୍ବା ଡଙ୍ଗାର ମଙ୍ଗ ଉପରେ ତା'ର ଦୃଷ୍ଟି ପହଁରି ଆସିଲା ସେଇକ୍ଷଣି । ମଣିଷ ଦୁଇଜଣ ଦୁଇଆଡ଼େ ମୁହଁକରି କାର୍ଯ୍ୟବ୍ୟସ୍ତ ଅଛନ୍ତି । ଉପରଟା ଶୂନ୍ୟ । ଅପେକ୍ଷା କଲା, ତା'ର ଏଇ ଢଙ୍ଗଟିକୁ ତାକୁ ବନ୍ଦୀ କରିଥିବା ମଣିଷମାନେ ବରଦାସ୍ତ କରୁଛନ୍ତି କି ନା' ଦେଖିବା ପାଇଁ ।

ସେ ଉତ୍ସାହିତ ହେଲା ଏଇଥିପାଇଁ ଯେ, ତା' ଉପରେ କିଛି ହେଲେ ଅପ୍ରୀତିକର ଘଟିଲା ନାଇଁ । ଗୋଟିଏ ଦୁଇଟି ପାହୁଣ୍ଡ ନେଲା ଏବଂ ଅପେକ୍ଷା କଲା । ନା, କିଛି ଘଟୁନାଇଁ । ଅସାମାନ୍ୟ ଆନନ୍ଦରେ ସେ ବିଭୋର ହେଲା । ସମସ୍ତଙ୍କ ଅଲକ୍ଷରେ ସେ ଖସି ପଳାଇଯିବ । ପଳାଇଯିବ ଏ ଡଙ୍ଗାରୁ କୌଣସି ମତେ । ତା'ପରେ ସେ ଖୋଜିବ ତା'ର ସମୁଦ୍ରକୁ । ଏ ଡଙ୍ଗାରୁ ସମୁଦ୍ର କେତେ ବାଟ କେଜାଣି ?

ସହଜରେ ଦିଶିଯାଉଚି ଡଙ୍ଗା କାନ୍ଥର ଉଚ୍ଚତା । ଏଇ ଉଚ୍ଚତା ଟପି ଗଲେ ମୁକ୍ତିର ଅନନ୍ତ ଅଞ୍ଚଳ । ଜଣାପଡୁଚି, ଏଇ ଉଚ୍ଚତା ଯେପରି କିଛି ନୁହେଁ । ଅଳ୍ପ କେତୋଟି ପଦକ୍ଷେପ ଏହାକୁ ଅତିକ୍ରମ କରି ପାରିବ । କଇଁଚଟି ଚେଷ୍ଟା କଲା ଡଙ୍ଗାର ପାଚେରୀ ଚଢ଼ିବା ପାଇଁ । ଚେଷ୍ଟା କଲା ଏବଂ ଖସି ଆସିଲା ବାରମ୍ବାର ଡଙ୍ଗାର ଚଟାଣ ଉପରକୁ । କ୍ରମେ ସେ ଅଥୟ ହୋଇ ପଡୁଥିଲା ଏବଂ ଖସି ପଳେଇ ଯିବାର ଚେଷ୍ଟା ଓ ଇଚ୍ଛା ତୀବ୍ରତର ହୋଇ ପଡୁଥିଲା । ଏଇ ଇଚ୍ଛା ବାରମ୍ବାର ବିଫଳ ଚେଷ୍ଟାର ସମ୍ମୁଖୀନ ହେଉଥିଲା ଏବଂ ପରିଣାମରେ, ତା'ର ଅସହାୟତା ଓ ବ୍ୟାକୁଳତା ବଢୁଥିଲା ଆସ୍ତେ ଆସ୍ତେ ।

କିଛି ସମୟ ପାଇଁ ସେ ଚୁପ୍‌ଚାପ ବସି ରହିଲା । ଶକ୍ତି ସଂଗ୍ରହ କଲା ପରବର୍ତ୍ତୀ ପର୍ଯ୍ୟାୟର ଚେଷ୍ଟା ପାଇଁ । ଏଥର ସେ ଅନ୍ୟ ଏକ ଦିଗକୁ ମୁହେଁଇଲା । ପୁଣି କ'ଣ ଭାବି, ମୁହଁ ଫେରାଇଲା ଏବଂ ପ୍ରଚଣ୍ଡ ଆତୁରତାରେ ସେ ଦରାଣ୍ଡି ପକାଇଲା ଡଙ୍ଗାର ଚଟାଣ । କେଉଁଠି ଟିକିଏ ଫାଙ୍କ ଥାଆନ୍ତା କି । ଏମିତି କି ସାମାନ୍ୟ ଛିଦ୍ରଟିଏ । ସେ ନିଜକୁ ତା' ଭିତରେ ଘୋଷାରି ନିଅନ୍ତା । କିଛି ହେଲେ ସୁଯୋଗ ସେ ପାଉଛି !

ମୁକ୍ତି ପାଇବାର ନିଶା ଏତେ ପ୍ରବଳ ହୋଇ ଯାଇଥିଲା ଯେ ତାକୁ କଇଦୀ କରି ରଖିଥିବା ମଣିଷମାନଙ୍କର ଉପସ୍ଥିତି ଏବଂ ସମ୍ଭାବ୍ୟ ଶାସ୍ତି କଇଁଚର ଚେତନାରେ

ସେତେବେଳେ ଆଦୌ ନ ଥିଲା । ଜଣେ ପାଗଳ ଭଳି ସେ ଖାଲି ଖୋଜି ଚାଲିଥିଲା ଡଙ୍ଗାର ଦେହକୁ, ଟିକିଏ ବାଟ ପାଇବା ଆଶାରେ । ‘ଡଙ୍ଗାର ପାଚେରୀ ଖୁବ୍ ବେଶି ଉଚ୍ଚ ନ ଥିଲେ ମଧ୍ୟ, ତା’ର ହୃଦ୍‌ବୋଧ ହୋଇ ସାରିଥିଲା ଯେ, ଏହାକୁ ଟପିବା ସମ୍ଭବ ନୁହେଁ । ଏହା ଜାଣି ସାରିବା ପରେ ବି, ସେ ଚଢ଼ିବାକୁ ଚେଷ୍ଟା କରୁଥିଲା ତା’ ଉପରେ ଏବଂ ପର ମୁହୂର୍ତ୍ତରେ ଖସି ଆସୁଥିଲା ଡଙ୍ଗାର ଚଟାଣ ଉପରକୁ ।

ଚାଲିଥିଲା ଏଇ ପ୍ରକାରର ଏକ ଅକୃତକାର୍ଯ୍ୟ ଚେଷ୍ଟା ଅନବରତ ଭାବରେ । ଉପରେ ତା’ ପିଠି ଭଳି ଦିଗହଜା ଆକାଶ ଓ ତଳେ ସୀମାହୀନ ସମୁଦ୍ରର ବ୍ୟାପ୍ତି । ସାମାନ୍ୟ ଗୋଟିଏ ବିନ୍ଦୁ ଭଳି ଦିଶୁଥିବା ଓ ଅହରହ ଅସ୍ଥିର ଭାବରେ କମ୍ପି ଉଠୁଥିବା ଡଙ୍ଗାର ପେଟ ଭିତରେ ଆହୁରି ସାନ, ନଗଣ୍ୟ କଇଁଚଟି ଅବ୍ୟାହତ ରଖିଥିଲା କେଉଁଆଡ଼େ ଖସି ପଳେଇ ଯିବାର ବ୍ୟାକୁଳ ଚେଷ୍ଟା । ଅନନ୍ତ ଶୂନ୍ୟତା ଭିତରେ ଏକ ସଙ୍କୁଚିତ ଡଙ୍ଗାର ବାଡ଼ ଆବଦ୍ଧ କରି ରଖିଥିଲା ତାକୁ ଏବଂ ତା’ର ମୁକ୍ତିର ବାଟ ବନ୍ଦ କରି ରଖିଥିଲା । ଏତେ କମ୍ ଉଚ୍ଚ ଦେଖା ଯାଉଥିବା ପାଚେରୀ ବି ଅନତିକ୍ରମ୍ୟ ହୋଇପାରେ ଏବଂ ସେ ତା’ର ସ୍ୱାଧୀନତା ମଝିରେ ଅଲଙ୍ଘନୀୟ ପ୍ରତିବନ୍ଧକ ହୋଇ ଠିଆ ହୋଇପାରେ ! ଏକଥା କେହି କ’ଣ ବିଶ୍ୱାସ କରନ୍ତି ସେଇମିତି ପରିସ୍ଥିତି ନ ଆସିବା ଯାଏଁ ?

ସବୁଦିନ ଭଳି ପ୍ରାୟ ଏକ ସମୟରେ ତିନୋଟିଯାକ ଡଙ୍ଗା କୂଳରେ ଲାଗିଲେ, ସେ’ଦିନର ଫସଲ ବୋଝେଇ କରି । କୂଳରେ ଅପେକ୍ଷା କରିଥିଲେ ସବୁଦିନ ଭଳି କେଉଟ ବସ୍ତିର ଆଠ ନ’ଜଣ ପିଲା ଦକ୍ଷ ବାପାମାନଙ୍କର ପ୍ରତ୍ୟାବର୍ତ୍ତନକୁ । ସେମାନେ ସମସ୍ତେ ଛ’ରୁ ଦଶ ବର୍ଷ ବୟସର, ସମସ୍ତେ ମଇଳା, ନିରକ୍ଷର ଓ ଅଧା ଲଙ୍ଗଳା । ସମୁଦ୍ର କୂଳରୁ କିଛି ଦୂରରେ ସେମାନଙ୍କର ବସ୍ତି । ବଖରାଏ ଲେଖା ଅଳ୍ପ କେତୋଟି ଘର । ବାରମ୍ବାର ବତାସରେ ଉଡ଼ି ଯାଉଥିବା ଛପର । କୌଣସିମତେ ଘରର ସୀମା ନିର୍ଦ୍ଧାରଣ କରୁଥିବା କାନ୍ଥ । ସୁ ସୁ ପବନ ସତ୍ତ୍ୱେ ଅବାଧ ହୋଇ ନିଜର ସ୍ଥିତି ବଜାୟ ରଖିଥିବା ଶୁଖୁଆ ଓ ପଚା ମାଛର ଗନ୍ଧ । ରାଶି ରାଶି ବାଲିର ସ୍ତୂପ ଭିତରେ ଗୋଡ଼ ଲୁଚେଇ ଠିଆ ହୋଇଥିବା ଝାଉଁଗଛ ।

ଏଇ ହେଲା କେଉଟବସ୍ତିର ପରିପାଟି । ସମୁଦ୍ର ବଞ୍ଚେଇ ରଖିଚି ଏହାକୁ; ଅଥଚ ଏହାର କ୍ରୁଦ୍ଧ ନିଃଶ୍ୱାସରେ ବସ୍ତିର ଚାଳ ବିପର୍ଯ୍ୟସ୍ତ ହୁଏ । ବେଳେ ବେଳେ ଜୀବନ ଛିନ୍‌ଛତ୍ର ମଧ୍ୟ ହୁଏ । ଏହାର ପୃଷ୍ଠଭୂମିରେ ଜୀବନ ସମସ୍ତ ଦାମ୍ଭିକତା ଓ ଆତ୍ମବିଶ୍ୱାସର ସହିତ ଠିଆ ହୁଏ । ସେମାନେ ପୁଣି ଡଙ୍ଗା ଧରି ଯାଆନ୍ତି ସମୁଦ୍ର ଭିତରକୁ । ପିଲାମାନେ ପୁଣି ବାହାରି ପଡ଼ନ୍ତି ସମୟ କଟେଇବା ପାଇଁ । ସବୁ ଦୁର୍ଯୋଗ ଓ ଦୁର୍ବିପାକ ପ୍ରକୃତିର ଗୋଟାଏ ଗୋଟାଏ କୌତୁକ ଭଳି ମନେ ହୁଏ ।

ବସ୍ତିର ଏଇ ଆଠ-ନ' ଜଣ ପିଲାଙ୍କ ପାଇଁ ସବୁ ବିଶାଳ ଓ ଅନନ୍ତ ସମୁଦ୍ର ଆକାଶ, ବାଲିର ଅପନ୍ତରା ଓ ସମୟ । ସେମାନଙ୍କର ଦୃଷ୍ଟିକୁ ବାଧା ଦେବା ଭଳି କେଉଁଠି କିଛି ପ୍ରତିବନ୍ଧକ ନ ଥାଏ । ସାରାଦିନ ସେମାନେ ସମୟ କଟାଇବା ସମସ୍ୟାର ସାମ୍ନା ସାମ୍ନି ହୁଅନ୍ତି । ଗଛ ଚଢ଼ି, ସମୁଦ୍ର କୂଳରେ ଖେଳି ସେମାନେ ଆବିଷ୍କାର କରନ୍ତି ଯେ, ଆହୁରି ଅନେକ ସମୟ ପରେ ସେମାନଙ୍କର ବାପାମାନେ ଫେରିବେ ।

ସେଦିନ ଡଙ୍ଗା ତିନୋଟିରୁ ମାଛ ଖଲାସ ହେବା ପରେ ଗୋପୀ ଗର୍ବର ସହିତ ଘୋଷଣା କଲା– "ପିଲାମାନେ, ତୁମପାଇଁ ବଢ଼ିଆ ଜିନିଷଟିଏ ଆଣିଚି ।"

ସମସ୍ତେ ଘେରିଗଲେ ଗୋପୀକୁ ଏବଂ ଜିନିଷଟି କ'ଣ ବୋଲି ସେ କହିବା ପୂର୍ବରୁ ସେମାନେ ତାହାକୁ ଦେଖି ସାରିଥିଲେ । ସେମାନେ ପରସ୍ପରର ମୁହଁ ଦେଖିଲେ । ସମସ୍ତଙ୍କର ମୁହଁର ଆଗ୍ରହ ନିଷ୍ପ୍ରଭ ହୋଇ ଯାଉଥିଲା ।

ଜିନିଷଟିର ବିଶେଷତ୍ୱ ବୁଝେଇବା ପାଇଁ ଚେଷ୍ଟା କଲା ଗୋପୀ – "ଏଇଟା କଇଁଚଟିଏ ବୋଲି ତୁମ ମୁହଁଟିମାନ ଶୁଖିଗଲା । ନୁହେଁ କି ? ଏଇଟା କଇଁଚଟିଏ, ହଁ; ହେଲେ ଏମିତି କଇଁଚ ଆମେ ଆମ ଜୀବଦ୍ଦଶାରେ କେବେ ବି ଦେଖି ନ ଥିଲୁ । ତା' ନ ହୋଇଥିଲେ ମୁଁ ଏତେ କଷ୍ଟ କରି ଏଇଟାକୁ ଆଣିଥାନ୍ତି କାହିଁକି ? ନିଅ, ଖେଳିବ ।"

ସେ ଦୁଇଟି ଆଗ୍ରହହୀନ ହାତକୁ ତାହା ବଢ଼ାଇଦେଲା । ପିଲାମାନେ କଇଁଚକୁ ଦେଖୁଥିବା ବେଳେ, ସେମାନଙ୍କର ସନ୍ତୁଷ୍ଟ ବାପାମାନେ କୂଳର ବାଲି ଅତିକ୍ରମ କରି ଫେରି ଯାଉଥିଲେ ବସ୍ତିକୁ ।

ସୂର୍ଯ୍ୟ ଦିଗ୍‌ବଳୟର ପାଖାପାଖି ସେତେବେଳେ । ସମୁଦ୍ର କୂଳ ନିର୍ଜନ ଓ ପରିତ୍ୟକ୍ତ । କେବଳ କଇଁଚଟି କେନ୍ଦ୍ରବିନ୍ଦୁ ହୋଇ ରହିଥିଲା ଜଣଙ୍କ ହାତରେ ଏବଂ ସମସ୍ତେ ତାକୁ ଘେରି ଏକ ବ୍ୟୂହ ରଚନା କରିଥିଲେ । ସେଇଟିକୁ ଏକ ଆକର୍ଷଣୀୟ ଦରବ ବୋଲି ଗ୍ରହଣ କରିବା ପାଇଁ ଚେଷ୍ଟା କରୁଥିଲେ ସେମାନେ । ସମୁଦ୍ର ଲହଡ଼ିର ଆହ୍ୱାନ ଓ ହାତ ସମ୍ପ୍ରସାରଣ ପ୍ରତି ସେମାନଙ୍କର ଜମା ଧ୍ୟାନ ନ ଥିଲା ।

ତେବେ ଗୋଟାଏ କଇଁଚକୁ ନେଇ କିଭଳି ଖେଳାଯାଇ ପାରେ ? ସେମାନେ ଭାବିପାରୁ ନ ଥିଲେ ଏହାର ଉତ୍ତର । ପୁଣି, ତା' ପ୍ରତି ସେମାନଙ୍କର ମୂଳ ଦୃଷ୍ଟିକୋଣଟି ଆଦୌ ବଦଳୁ ନ ଥିଲା । ସେମାନେ ତାହାକୁ ଗୋଟିଏ ମାମୁଲି କଇଁଚ ବୋଲି ହିଁ ଭାବୁଥିଲେ । ସେମିତି କିଛି ଅସାଧାରଣ ବ୍ୟତିକ୍ରମ ବୋଲି ମନେ କରୁ ନ ଥିଲେ ।

ସେତେବେଳେ କଇଁଚର ଉଦ୍‌ବେଗ ହୃତ୍‌କମ୍ପନ ବଢ଼ି ଯାଇଥିଲା ଅସମ୍ଭବ ଭାବରେ । ମୁକ୍ତିପାଇଁ ନିଷ୍ଫଳ ଅନ୍ୱେଷଣ ତାକୁ କ୍ଳାନ୍ତକରି ଦେଇଥିଲା । ପୁଞ୍ଜିଭୂତ କ୍ଷୋଭ ଓ ପ୍ରତିବାଦରେ ତା'ର ତନ୍ତ୍ରୀ ଜଡ଼ସଡ଼ ହୋଇ ଯାଉଥିଲା । ପୁଣି ସେ ଆର୍ତ୍ତନାଦ

କରୁଥିଲା ପରାଜୟର ଦଂଶନରେ । ତା'ର ଅଭ୍ୟସ୍ତ ପୃଥିବୀରୁ ବିଚ୍ଛିନ୍ନ ହେବା ଫଳରେ ସେ ନିଜର ଚେତନାକୁ ଭଲକରି ଧରି ରଖିପାରୁ ନ ଥିଲା । ତା'ର ହଂସା ଉଡ଼ି ଯାଉଥିଲା ଅସମ୍ଭବ ଶୋଷରେ । ପାଣିହୀନ ଶୂନ୍ୟତା ସହିତ ଆଦୌ ସାଲିସ୍ କରିପାରୁ ନ'ଥିଲା ତା' ଜୀବନ । ଅଣନିଃଶ୍ୱାସୀ ହୋଇ ସେ ନିଃସହାୟ ଭାବରେ ଅପେକ୍ଷା କଲା କୌଣସି ଗୋଟିଏ ମୁହୂର୍ତ୍ତକୁ – ମୁକ୍ତିର ମୁହୂର୍ତ୍ତ, ଯାହାର ସମ୍ଭାବନା ନ ଥାଏ କିମ୍ବା ମୃତ୍ୟୁର ମୁହୂର୍ତ୍ତ; ଯାହା ଆସିବାରେ ଅଯଥା ବିଳମ୍ବ କରେ ।

ଧରିଥିବା ପିଲାଟି ତାକୁ ତଳେ ପକେଇ ଦେଲା ଏବଂ କହିଲା– "ଏଇଟା ମରିଗଲା ଭଳି ଜଣାପଡୁଛି । ଚାଲ, ଆମେ ଦୂରରେ ଠିଆହେବା । ବଞ୍ଚିଥିବ ଯଦି ଚାଲିବ । ଆମକୁ ଦେଖିଲେ, ଶଳାଟି ହାତମୁହଁ ପଦାକୁ ବାହାର କରିବ ନାହିଁ ।"

ସମସ୍ତେ ଠିଆ ହେଲେ କିଛି ଦୂରରେ । ତଳେ ଆପାତତଃ ଶୁଖିଲା, ଅସମତଳ ବାଲି । କଇଁଚଟି ଆସ୍ତେ ମୁହଁ କାଢ଼ିଲା । ତା' ସାମନାରେ ଅନନ୍ତ ନୀଳିମା, ତା'ର ପୃଥିବୀ । ସହସା ସେ ଉତ୍‌ଫୁଲିତ ହେଲା ଏବଂ ପ୍ରାଣପଣେ ଧାଇଁବା ଆରମ୍ଭ କଲା ତା'ର ପୃଥିବୀ ଆଡ଼େ ।

– "ବଞ୍ଚିଚି ବେ ।" ଶୁଭିଲା ଏକ ଉତ୍ସାହୀ ଚିତ୍କାର ଏବଂ ତା'ପରେ କ'ଣ ଘଟିଲା ତାହା ବୁଝିପାରିଲାନି କଇଁଚଟି । ତା ମୁହଁ ଉପରେ ସେ ଶକ୍ତ ଆଘାତଟିଏ ଅନୁଭବ କଲା । କିଛିବାଟ ଶୂନ୍ୟରେ ଉଠିପଡ଼ି ରହିଲା ଅନେକ ଦୂରରେ, ପାଣିର ଧାରରୁ ଢେର ବ୍ୟବଧାନରେ । ଆପଣା ଛାଏଁ ତା'ର ଗୋଡ଼ ମୁହଁ ପଶିଗଲେ ତା' ପିଠି-ପେଟ ଭିତରକୁ । ତା ଭିତରୁ ସେ ଦେଖି ପାରିଲା ତା ସାମନାରେ ତାକୁ ନେଇ ଖେଳ ଆରମ୍ଭ କରିଥିବା କେତେଜଣଙ୍କୁ । କେତେବେଳେ ଏଇମିତି ଖେଳ ଶେଷହୁଏ, କେଜାଣି ?

– "ପାଖରେ ଠିଆହେଲେ ଗୋଡ଼-ମୁହଁ ଜମା ବାହାର କରୁନି । ଆଣିଲୁ ସେଇ ବାଡ଼ିଟା ଯାର ଗୋଡ଼-ହାତ ବାହାର କରିବା ।" ଆଉ ଜଣେ କହିଲା ।

ପ୍ରସ୍ତାବ ଅନୁସାରେ ଜଣେ ଆଣିଦେଲା ତିନି-ଚାରି ଫୁଟର ଶକ୍ତ ବାଡ଼ିଟିଏ । କହିଲା– "ଏହାର ପିଠି ଉପରେ ଏ ବାଡ଼ିଟା ରଖୁଚି । ତୁମେ ଦୁଇଜଣ ବାଡ଼ିର ଦୁଇମୁଣ୍ଡରେ ଠିଆ ହୁଅ । ଗୋଡ଼-ମୁହଁ ବାହାରି ପଡ଼ିବ ।"

ସେୟା କରାଗଲା । ଚିକ୍‌କଣ ପିଠି ଉପରୁ ଖସି ଆସୁଥାଏ ବାଡ଼ିଟା । ମାତ୍ର ତାର ଦୁଇ ମୁଣ୍ଡରେ ଯେଉଁ ଓଜନ ଠିଆ ହେଉଥିଲା, ତା' ଫଳରେ କଇଁଚର ଗୋଡ଼ ଓ ମୁହଁ ବାହାରକୁ ବାହାରି ଆସୁଥିଲା ବେଳେ ବେଳେ । ପରେ କିନ୍ତୁ ତା'ର ଗୋଡ଼-ମୁହଁ ତ ଦୂରର କଥା, କଇଁଚଟି ଆଦୌ ଦେଖାଗଲା ନାହିଁ । ପୋତି ହୋଇଗଲା ବାଲି ଭିତରେ ।

ତା' ଉପରୁ ବାଡ଼ିଟି କାଢ଼ି ନିଆଗଲା । ଅନ୍ୟଜଣେ ବାଲିର ପରସ୍ତରେ ତାହାକୁ ପୋତିଦେଲା ଏବଂ କହିଲା– "ଭିତରୁ ଆସି ପାରୁଚି କି ନା, ଦେଖିବା ।"

ସେ ଏତକ କହିଚି କି ନାହିଁ କଇଁଚଟି ବାଲିର ପଲସ୍ତରା ଅମାନ୍ୟ କରି ଉଠି ଆସିଲା ଉପରକୁ ଏବଂ କାହାରିକୁ ଭୟ ନ କରି ଚାଲିବା ଆରମ୍ଭ କଲା । ସମସ୍ତଙ୍କୁ ତିରସ୍କାର ଓ ଅମାନ୍ୟ କରି ସେ ବାସ୍ତବିକ ଦୌଡ଼ିବାକୁ ଲାଗିଲା । ତା' ଗତିରେ ଥିଲା ନିର୍ଭୀକ ସ୍ପର୍ଦ୍ଧା । ସେ ସୂଚେଇ ଦେଉଥିଲା ଯେ, ଏମିତି ସଙ୍କଟ ସମୟରେ ଜୀବନ ନିଜକୁ ବାଜି ଲଗେଇ ଦିଏ, ନିଜକୁ ରକ୍ଷା କରିବା ପାଇଁ । ସେତେବେଳେ ନିର୍ଭୟର ସହିତ ଜୀବନ ଗ୍ରହଣ କରିନିଏ ବାହାରର ସମସ୍ତ ଚାଲେଞ୍ଜକୁ; ସମସ୍ତ ବିପଦର ସମ୍ମୁଖୀନ ହେବା ପାଇଁ ସେ ଅଣ୍ଟା ଭିଡ଼ି ବାହାରି ପଡ଼େ । ପରିଣାମ କ'ଣ ହେବ, ତାହା ହିସାବ କରିବାକୁ ଫୁରୁସତ ନ ଥାଏ ତା' ପାଖରେ ।

କଇଁଚଟି ଦୌଡ଼ିଲା ଏକ ରକମ । ସମସ୍ତେ କୌତୁକର ସହିତ ଦେଖିଲେ ଏଇ ଦୃଶ୍ୟଟିକୁ । ତା' ଚାରିପଟେ ଘେରି ଯିବା ପାଇଁ ସେମାନଙ୍କୁ ବେଶି ସମୟ ଲାଗିଲା ନାହିଁ ।

– "ବଲ୍ ଭଳି ଖେଳିବା ।" ପ୍ରସ୍ତାବ ଦେଲା ଜଣେ ।

– "ବଲ୍ ଭଳି ? ଗୋଡ଼କୁ କାଟିବ, ଏଇଟା ଟାଣୁଆ ହୋଇଚି ଭାରି ।" ଅନ୍ୟ ଦୁଇ-ତିନି ଜଣଙ୍କର ନିରୁତ୍ସାହିତ ଉତ୍ତର ଶୁଭିଲା ।

– "ଶୁଣ, ଏଇମିତି କରିବ । କଇଁଚଟି ଯାହା ପାଖରେ ପହଞ୍ଚିବ, ସେ ତା'ର ପେଟ ତଳେ ଗୋଡ଼ରଖି, ଗୋଡ଼ରେ ତାହାକୁ ଫୋପାଡ଼ିବ ଉପରକୁ । ଏମିତି କଲେ ଗୋଡ଼କୁ ବାଧିବ ନାହିଁ ।"

ପ୍ରସ୍ତାବଟି କାର୍ଯ୍ୟକାରୀ ହେଲା ତତ୍କ୍ଷଣାତ୍ । ଚାଲିଲା କିଛି ସମୟ ପାଇଁ ଏଇ ଖେଳ । କଇଁଚଟି ଉଠୁଥାଏ ଶୂନ୍ୟତା ଭିତରକୁ ଏବଂ ପଡୁଥାଏ ବାଲି ଉପରେ । ଏମିତି ନିରବଚ୍ଛିନ୍ନ ଭାବରେ ଏ ଖେଳ ଚାଲିଲା ଯେ, କଇଁଚଟି ସଂଜ୍ଞାହୀନ ହୋଇଗଲା । ନିଜକୁ ସେ ଆଉ ଅନୁଭବ କରିପାରିଲା ନାହିଁ । ଗୋଡ଼-ମୁହଁହୀନ ଏକ ଗୋଲାକାର ବସ୍ତୁରେ ପରିଣତ ହୋଇ ସେ ପଡୁଥାଏ ପୃଥକ ସ୍ଥାନ ମାନଙ୍କରେ ।

ମାତ୍ର ଏମିତି କେତେବେଳଯାଏଁ ବା ଖେଳ ଚାଲୁ ରଖିବା ସମ୍ଭବ ହୋଇଥାନ୍ତା ? ସମସ୍ତଙ୍କର ଆଗ୍ରହ ହଜିଗଲା କ୍ଲାନ୍ତି ଓ ବିରକ୍ତି ଭିତରେ । ହାଲିଆହୋଇ ସମସ୍ତେ ଘରମୁହାଁ ହେଲେ ।

ଆଉ କିଛି ସମୟ ପରେ ସୂର୍ଯ୍ୟର ଅବଶିଷ୍ଟାଂଶ ସମୁଦ୍ର ଭିତରେ ହଜିଯିବ । ପରିତ୍ୟକ୍ତ ଖେଳନା ଭଳି ଦୀର୍ଘସମୟ ପର୍ଯ୍ୟନ୍ତ କଇଁଚଟି ପଡ଼ିରହିଲା ବାଲି ଜର୍ଜରିତ ହୋଇ ପାଣିଧାରର ଅଳ୍ପ ଦୂରରେ । ସମଗ୍ର ବ୍ରହ୍ମାଣ୍ଡର ଆଉ କେହି ନ ଥିଲେ

ସେତେବେଳେ। ସମୁଦ୍ରର ଲହଡ଼ିଭଙ୍ଗା ଗର୍ଜନ ହିଁ ଥିଲା ଏକମାତ୍ର ଶବ୍ଦ। ମୁମୂର୍ଷୁ ଅବସ୍ଥାରେ ପଡ଼ିଥିବା ଦରମଲା କଇଁଚଟି ହିଁ ଥିଲା ଏକମାତ୍ର ସର୍ବଶେଷ ଜୀବନ।

ଯୋଜନ ଯୋଜନ ଲମ୍ବର ଲଡଡ଼ିମାନେ ଉଠୁଥିଲେ ସମୁଦ୍ର ଛାତିରେ। ଧାଇଁ ଆସୁଥିଲେ କିଛି ବାଟ। ସେମାନଙ୍କର ଅଣ୍ଟା ଭାଙ୍ଗି ଯାଉଥିଲା। ମଡ୍-ମାଡ୍ ଶବ୍ଦ କରି ପରାଜୟର ମାଡ଼ରେ ସେମାନେ ସମତଳ ହୋଇ ଯାଉଥିଲେ। ଅନ୍ତହୀନ ପ୍ରକ୍ରିୟା ଚାଲିଥିଲା ଏଇମିତି। ଅଥଚ ବାଲିର କାନ୍ଥ ଅତିକ୍ରମ କରି କେଉଁଆଡ଼େ ଖସି ପଳେଇ ଯିବାର ଉପାୟ ନ ଥିଲା। ଅନନ୍ତ କାଳର ବନ୍ଦୀ ଏଇ ସମୁଦ୍ର ଅବ୍ୟାହତ ରଖିଥିଲା ମୁକ୍ତିର ସ୍ୱପ୍ନକୁ। ସେ ବିଧ୍ୱସ୍ତ ସ୍ୱପ୍ନ ରାଶିରାଶି ବୁଦ୍ ବୁଦ୍ ହୋଇ କେଉଁଆଡ଼େ ନିଶ୍ଚିହ୍ନ ହେବା ପୂର୍ବରୁ, ପୁଣି ରାଶି ରାଶି ବୁଦ୍ ବୁଦ୍। ଗୋଟିଏ ଲହଡ଼ିର ଅଣ୍ଟା ଭାଙ୍ଗିବା ପୂର୍ବରୁ ପୁଣି ଏକାଧିକ ଲହଡ଼ି ଓ ତା' ପରେ ସଂଖ୍ୟାହୀନ ଲହଡ଼ିର ବିଶ୍ୱସ୍ତ ପ୍ରତିଶ୍ରୁତି।

ଯା'ପରେ ଆଉ କ'ଣ କରାଯାଇ ପାରେ? ଏକ ଅସ୍ୱଷ୍ଟ, ଖଣ୍ଡିତ ଚେତନା ଫେରି ଆସୁଥିଲା କଇଁଚ ପାଖକୁ। ସେ ଚେଷ୍ଟା କଲା ମୁଣ୍ଡ ଓ ଗୋଡ଼ ବାହାର କରିବାପାଇଁ। ନା, ହେଉନି। ତା' ଦେହର ସମସ୍ତ ସନ୍ଧି ବାଲିରେ ଭରପୂର। ସେ ଚେଷ୍ଟାକଲା ଆଉଥରେ। ଅବରୁଦ୍ଧ କରିଥିବା ବାଲିର କାନ୍ଥ କିଛି ଅଂଶରେ ଖସିଡ଼ି ପଡ଼ିଲା। ମୁହଁକାଢ଼ି ଦେଖିବାକୁ ଚେଷ୍ଟାକଲା ସେ। ସବୁ କୁହୁଡ଼ିଢଙ୍କା, ଜାଲଜାଲୁଆ। ସେଇ ନିଷ୍ପ୍ରଭ ଦୃଷ୍ଟିରେ ସେ କିନ୍ତୁ ଦେଖି ପାରିଲା, ତା' ପୃଥିବୀର ସୀମା ସମୁଦ୍ରର ପାଣିଧାର।

ସେ ଅସ୍ଥିର ହୋଇ ପଡ଼ିଲା ଅସମ୍ଭବ ଭାବରେ। ନିଜ ପ୍ରତି ଏକ ତୀବ୍ର ଆବେଗରେ ସେ ସତେ ଯେପରି ଓଦା ହୋଇଗଲା। ନିଜକୁ ସେ ଏତେ ଭଲ ପାଇ ନ ଥିଲା ଯା' ପୂର୍ବରୁ। ଜୀବନ ଏତେ ମମତା ଓ ସ୍ନେହ ଦାବୀ କରେ ବୋଲି ଧାରଣା ନ ଥିଲା ତା'ର। କିନ୍ତୁ, କାହିଁ? ସେ ତ ଚାଲି ପାରୁନି ଆଦୌ!

ଅବଶ ହୋଇ ପଡ଼ିଲା ସେ କିଛି ସମୟ ପାଇଁ। ବର୍ତ୍ତମାନ ସବୁ ଦୁଃସ୍ୱପ୍ନଭଳି ଜଣାପଡୁଛି। ପାଣିରୁ ତାକୁ ଟେକି ଆଣିବାଠାରୁ ଆରମ୍ଭ କରି ବର୍ତ୍ତମାନର ଏ ଅର୍ଦ୍ଧମୃତ ଅବସ୍ଥା ପର୍ଯ୍ୟନ୍ତ। ଏମିତି କାହିଁକି ଘଟିଲା, କେଜାଣି? ଏମିତି କ'ଣ ଘଟେ? ଗୋଟିଏ ଜୀବନକୁ ତା' ସ୍ନେହର ପୃଥିବୀ ଭିତରୁ ଉଠେଇ ନିଆଯାଏ ଏବଂ ନିଷ୍କରୁଣ, ନୃଶଂସ ଅତ୍ୟାଚାର ପରେ ତାକୁ ଏଇମିତି ଅକାମୀ କରି ପକେଇ ଦିଆଯାଏ, ତା' ପୃଥିବୀଠାରୁ ଅଳ୍ପ ଦୂରରେ? ଇଏ ପୁଣି କି ଅଦ୍ଭୁତ ପରିବେଶ! ଚାରିଆଡ଼େ ବାଲିର ଐଶ୍ୱର୍ଯ୍ୟ, ଯାହା ସହିତ ସେ ବଞ୍ଚି ରହିଥିବା ପୃଥିବୀର ଲେଶମାତ୍ର ସାମଞ୍ଜସ୍ୟ ନାହିଁ। ଜୀବନ ଯଦି ଏଇଭଳି ପରିବେଶ ଭିତରକୁ ଟଣାହୋଇ ଆସେ ଏବଂ ଏଇଭଳି ନିର୍ମମତାର ସମ୍ମୁଖୀନ ହୁଏ, ତେବେ ଜୀବନ କ'ଣ? ଅଭିଶାପ? କିନ୍ତୁ ତାହାକୁ ବଞ୍ଚେଇ ରଖିବା ପାଇଁ ଏତେ ବ୍ୟାକୁଳତା ଆସେ କେଉଁଠୁ? କାହିଁକି?

ସମସ୍ତ ଶକ୍ତି ଏକାଠି ଠୁଳକରି କଇଁଚଟି ଚାଲିବା ଆରମ୍ଭ କଲା । ମାତ୍ର ଗୋଟିଏ ପଦକ୍ଷେପ । ତା' ପରେ ସେ ପୁଣି ପଡ଼ି ରହିଲା । ଆଉ ହେବନି, ବୋଧହୁଏ । ଅଥଚ କେତେ ପାଖରେ ଅଛି ତା'ର ସମୁଦ୍ର? କେତେ ପାଖରେ, ସତେ! ଏଇ ଯେମିତି ଛୁଇଁଦେଇ ହେବ! ଏଇ ଯେମିତି ସେ ବୁଲିବ, ତା'ର ନୀଳିମା ଭିତରେ । ଶେଷହୀନ ସ୍ୱପ୍ନ ଦେଖିବ ଓ ସୃଷ୍ଟିକରିବ ତା'ର ଉତ୍ତରପୁରୁଷ! ଏତେ ସୁନ୍ଦର ଭବିଷ୍ୟତ ଅପେକ୍ଷା କରିଚି ତାକୁ ଅଳ୍ପ କେତୋଟି ପାହୁଣ୍ଡ ଦୂରରେ!

ଏତେ ଦହଗଞ୍ଜ ହେବା ପରେ ସଂସାରରୁ ଆଉ ଅଧିକ କ'ଣ ଆଶା କରୁଥିଲା ସେଇ ମୃତପ୍ରାୟ, ଏକଦା ସୁନ୍ଦର, ଅନନ୍ୟ କଇଁଚଟି? ବର୍ତ୍ତମାନ ତା' ଦେହର ଆକର୍ଷଣ ବିବର୍ଣ୍ଣ ହୋଇ ଯାଇଥିଲା, ତା' ଜୀବନ ମଳିନ ହୋଇ ଯାଇଥିଲା; ତଥାପି ତା'ର ନିଷ୍ପ୍ରଭ ଆଖିରେ ସ୍ପଷ୍ଟ ହୋଇ ଉଠୁଥିଲା ଏକ ଅପ୍ରତିଦ୍ୱନ୍ଦୀ ଶୋଷ । ସେ ଚାହିଁଥିଲା ସମୁଦ୍ର ଆଡ଼େ ଏମିତି ଢଙ୍ଗରେ ସତେ ଯେପରି ସମୁଦ୍ରର ସମସ୍ତ ପାଣି ତା' ଶୋଷ ପାଇଁ ଆଦୌ ଯଥେଷ୍ଟ ନ ଥିଲା । ସେଇମିତି ପଡ଼ି ରହି ସେ କେଜାଣି ଆହ୍ୱାନ କରୁଥିଲା– ବହୁତ ପାଣି ତୋ ପାଖରେ ଅଛି ବୋଲି ତୋର ଭାରି ଅହଂକାର ପରା! ଗର୍ବରେ ତୋ ଛାତି ଫୁଲି ଉଠେ! ସନ୍ତୁଷ୍ଟ କର ମୋ ଶୋଷକୁ । ହଁ, କେବଳ ମୋରି ଶୋଷକୁ!

ନିଜର ପଙ୍ଗୁତା ବିରୁଦ୍ଧରେ ସଂଘର୍ଷ ଚାଲୁ ରଖିଥିଲା କଇଁଚଟି । ତା' ସାମନାରେ ଥିବା ସମୁଦ୍ର କ୍ରମଶଃ ଅଶାନ୍ତ ହୋଇ ପଡୁଥିଲା । ସମସ୍ତ ବାଲିର କାନ୍ଥକୁ ପରିହାସ କରି ସେ ଆହୁରି ବ୍ୟାପ୍ତ ହେବାପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ ଆରମ୍ଭ କଲା । ଅନ୍ୟ ଦିନଠାରୁ ଯଥେଷ୍ଟ ଦୀର୍ଘ, ଯଥେଷ୍ଟ ଉଚ୍ଚ ଲହଡ଼ି ସୃଷ୍ଟି ହେଲା ତା' ଛାତିରେ । ବାଲିର କାନ୍ଥ ଉପରେ ସେ ହାତ ବଢ଼ଉଥିଲା କିଛି ଗୋଟାଏକୁ ନିଜ ଭିତରକୁ ଆଣିବା ପାଇଁ ।

– "ଚାଲିଆ, ମୋ ଭିତରକୁ ।" ସତେ ଯେପରି ସମୁଦ୍ରର ମର୍ମସ୍ଥଳରୁ ବାହାରିଲା ଏଇ ସ୍ନେହମୟ, ବାତ୍ସଲ୍ୟପୂର୍ଣ୍ଣ ଡାକଟି । "ବାପରେ, ମୋ ଭିତରକୁ ଚାଲିଆ । ଆଉ କେଇଟି ମାତ୍ର ପାହୁଣ୍ଡ । ତା'ପରେ ତୋତେ ଲୁଚେଇ ରଖିବି ମୋ ଗର୍ଭରେ । ମୋ ଆଖିର ଲୁହରେ ଧୋଇଦେବି ତୋର ସମସ୍ତ କ୍ଷତ, ପୋଛିଦେବି ତୋ ଦେହର ଯାବତୀୟ ବାଲିର ମଇଳା । ଚାଲିଆ, ମୋ ଧନ ।"

କଇଁଚଟି ପ୍ରଲୁବ୍ଧ ହେଲା ଏବଂ ପୁଣି ଥରେ ଚାଲିବାକୁ ଚେଷ୍ଟା କଲା । ଜମା ହେଉନି । ସେ ଏବେ କରିବ କ'ଣ? ଅସମତଳ ବାଲିର ଚଟାଣ ଉପରେ ତା' ଦେହ କେବଳ ଥରୁଚି, ଜୀବନର ସଙ୍କେତ ଦେଇ । ମାତ୍ର ତା'ର ଗତିଶୀଳତା କାହିଁ? ଅଳ୍ପ କେତୋଟି ପଦକ୍ଷେପର ବ୍ୟବଧାନ । ଅଥଚ ସେ ତ ପାରୁନି!

ସେଦିନ ଭଳି ସମୁଦ୍ର ଏତେ ଅସ୍ଥିର ଓ ବିଦ୍ରୋହୀ ହୋଇ ନ ଥିଲା । ତା'ର ଗର୍ଜନରେ ଏଇ ଯେପରି ଖଣ୍ଡ ଖଣ୍ଡ ହୋଇ ଆକାଶ ଭାଙ୍ଗି ଖସି ପଡ଼ିବ ତା' ଭିତରକୁ । ବାଲିର କାନ୍ଥ ଭୁଷୁଡ଼ି ପଡ଼ିବ ରସାତଳକୁ । ସମୁଦ୍ର ମୁଣ୍ଡ ପିଟୁଥିଲା ନାହିଁ ନ ଥିବା ଆବେଗ ଉତ୍କଣ୍ଠାରେ । ବାରମ୍ବାର ହାତ ପ୍ରସାରିତ ହେଉଥିଲା ତାକୁ ବନ୍ଦୀକରି ରଖିଥିବା ବାଲିର ପାଚେରୀ ଉପରେ । ମାତ୍ର ସବୁଥର ରିକ୍ତହାତ ତା'ର ଫେରି ଯାଉଥିଲା ତା' ପାଖକୁ ।

– "ଚାଲିଆ, ମୋ ଭିତରକୁ ।" ଏ ଆହ୍ୱାନ ଥିଲା ଶେଷହୀନ । "ତୋତେ ଭାରି ଶୋଷ । ନୁହଁ? ଚାଲିଆ । ମୋ ପାଣିପିଇ ମୋତେ ଶୁଖେଇ ଦେ । ତୋହରି ପାଇଁ ଏ ପାଣି । ଆ, ତୋତେ ହାତ ବଢ଼େଇ ଡାକୁଚି ପରା! ଦେଖୁଚୁ ତ, ମୁଁ ବି ଏଇ ବାଲିର ଶୃଙ୍ଖଳରେ ବନ୍ଦୀ । କ'ଣ ଆଉ କରିବି ମୁଁ?"

ଯୁଗ ଯୁଗ ଧରି ଚାଲିଥିଲା ଏଇଭଳି ସଂଘର୍ଷ । ଏକଦା ସୁନ୍ଦର, ଚମତ୍କାର ଓ ଉଚ୍ଚ ଅଭିଳାଷ ଥିବା ଓ ବର୍ତ୍ତମାନ ଦରମଲା, ଅତ୍ୟାଚାରିତ, ବାଲି ବିମଣ୍ଡିତ ହୋଇଯାଇଥିବା ଆହତ କଇଁଚର ସମୁଦ୍ର ଭିତରକୁ ଯିବାପାଇଁ ପ୍ରାଣାନ୍ତକ ଚେଷ୍ଟା ଏବଂ କ୍ଷୁଧିତ, ନିରୁପାୟ ସମୁଦ୍ର ତାକୁ ହାତ ବଢ଼େଇ ନିଜ ଭିତରକୁ ନେଇ ଯିବାର ବିଗଳିତ ବ୍ୟାକୁଳତା । ଶୋଷ ସନ୍ତୁଷ୍ଟ ହୁଏ ନାଇଁ, କ୍ଷତ ଭଲ ହୁଏ ନାଇଁ । ସମୁଦ୍ରର ଆବେଗ ମୁଣ୍ଡପିଟି, ହାତ ବଢ଼େଇ ଅହରହ ଲୁହମିଶା ସ୍ୱରରେ କହୁଥାଏ– "ବାପରେ, ଚାଲିଆ ମୋ ଭିତରକୁ ।"

କଇଁଚଟି ଶୁଣେ ଓ ଉଲ୍ଲସିତ ହୁଏ । ହେଇ ଦିଶୁଥିବା ପାଣିକୁ ଛୁଇଁବା ବି ସମ୍ଭବ ହୁଏ ନାଇଁ । ସମୁଦ୍ର ଓ ତା' ମଝିରେ ଥିବା ବାଲିର ବ୍ୟବଧାନଟି ଅପରାଜେୟ ହୋଇ ରହିଥାଏ, ଯେମିତିକି ଡଙ୍ଗାର ଅନତିକ୍ରମ୍ୟ ହୋଇ ରହେ ସମୁଦ୍ର ଓ ତା' ମଝିରେ ।

ସେତେବେଳେ କିଏ ବା ପାଖରେ ଥାଏ ଏସବୁ ବୁଝିବା ପାଇଁ? ସ୍ନେହରେ କିଏ ଘୁଞ୍ଚେଇ ଦିଏ କଇଁଚକୁ ପାଣିର ଧାର ପର୍ଯ୍ୟନ୍ତ? ନିର୍ମମତା ହେଉ ପଛେ କିଏ ବା ତାକୁ ଫୋପାଡ଼ି ଦିଏ ପାଣି ଭିତରକୁ?

ମାତ୍ର ସେଦିନର ଘଟଣାଟି ଆଉ ଅଧିକ ବର୍ଣ୍ଣନା କରିବା ସମ୍ଭବ ହେଉନାଇଁ । ବୋଧହୁଏ କଇଁଚ ଓ ସମୁଦ୍ରର ଏଇ ମିଳିତ ବ୍ୟାକୁଳତା, ଅସଫଳ ଚେଷ୍ଟା ଆହୁରି ମର୍ମସ୍ପର୍ଶୀ ଓ ଅସହ୍ୟ ହୋଇ ପଡ଼ିଥିଲା । ଏଇଥିପାଇଁ ଏହାକୁ ସମସ୍ତଙ୍କ ଦୃଷ୍ଟିର ଅନ୍ତରାଳକୁ ନେଇଯିବା ସକାଶେ ସ୍ୱର୍ଗ ଓ ମର୍ତ୍ତ୍ୟ ମଧ୍ୟରେ ଘନୀଭୂତ ହେଉଥିଲା ଅନନ୍ତ ଅନ୍ଧକାର ।



ରବି ସ୍ୱାଇଁ

# ହୃଦୟଯୋଗ

ବୟସ ହେଇଗଲେ ସବୁ ଏମିତି । ଆଉ ବେଶି ଖାଇବାକୁ ମନ ଡାକୁନି । ବୁଢ଼ା ଶାଗୁଣା ମାଉଁସ ଖଣ୍ଡକ ତା ଧାରୁଆ ଥଣ୍ଟରେ କାଟି ଗିଳିଲା ବେଳେ ଏଇ କଥା ଚିନ୍ତା କଲା । ଆଉ ଯୁବା ବୟସ ତ ନାଇଁ ଅନ୍ୟମାନଙ୍କ ସହ ମାଡ଼ଗୋଳ କରି ମନ ଇଛା ଯେତେ ଖାଇପାରିବ । ଏଇନେ ମଢ଼ ଦେହରୁ ମାଉଁସ ଖଣ୍ଡେ କାଟୁ କାଟୁ ଥଣ୍ଟ ଘୋଳେଇ ହେଇ ପଡୁଚି । ଟିକିଏ ଖାଇଦେଲା ପରେ ଆଉ ଖାଇବାକୁ ମନ ଡାକୁନି । ତା' ଚାରି ପାଖରେ ଆଉ ସବୁ ଶାଗୁଣା ବିଲୁଆ କୁକୁରମାନେ ଭୋଜି ମଉଜ କରୁଥିବାବେଳେ ସେ ଅବଶ ହେଇପଡୁଚି । ସେମାନଙ୍କ ହସଖୁସିରେ ମିଶି ପାରୁନି । ନା ଆଉ ବେଶିଦିନ ନୁହଁ । ବେଳ ହେଇ ଆସିଲାଣି । ଏଥର ବାହୁଡ଼ିବା କଥା । ବୁଢ଼ା ଶାଗୁଣାକୁ ଭାରି ନିର୍ବଳୁଆ ଲାଗିଲା ।

ଅଳପ ଛଡ଼ାରେ ଶୀତୁଳିଆ ଛାଇ କିଛି ଜମା ହେଇ ରହିଥାଏ । ସେଇଠିକି ସେ ଖଣ୍ଡି ଉଡ଼ା ଦେଇ ଚାଲି ଆସିଲା । କୋଉ କାଳରୁ ଏଇ ଛାଇ ଖଣ୍ଡକ ଜମା ହେଇ ରହିଚି । ତା' ଆଖି ଫିଟିଲା ଦିନୁ ସେ ଏଇ ଚାକୁଣ୍ଡା ଗଛକୁ ଦେଖି ଆସୁଚି । ଏତେବଡ଼ ଫାଙ୍କା ବାଟଟାରେ ଗୋଟିଏ ବୋଲି ଗଛ, ପାଖ ମଶାଣି ପଡ଼ିଆରେ ଗୋଟିଏ ଦୁଇଟି ଖଜୁରି ଗଛ ଛଡ଼ା କିଛି ଆଡୁସାଡୁ ବଣବୁଦା । ଡାକେ ବାଟ ଗଲେ ଗାଁଗଣ୍ଡା । ତେଣିକି ତେଣିକି ।

ମଣିଷମାନେ ସତରେ କେତେ ଡରୁଆ । ଗାଁ ମଶାଣିକୁ ଦୂରକୁ ଠେଲି ଦେଇଚନ୍ତି । ଭଲ ବାରଟିଏ ନାଇଁ ସେଠିକି । ସମସ୍ତେ ଜାଣିଚନ୍ତି ତାଙ୍କୁ ଦିନେ ନା ଦିନେ ଏଇଠିକି ଆସିବାକୁ ପଡ଼ିବ । ତଥାପି ଡର । ସବୁଦିନେ ସବୁବେଳେ ସେଇ ଡର ତାଙ୍କୁ ଜାବୁଡ଼ି ଧରିଚି ।

ବୁଢ଼ା ନିଜ ଭିତରକୁ ଅନେଇଲା । ଜୀବନରେ ସେ କେତେ ମଢ଼ ଖାଇଚି । ମଣିଷ କି ଗୋରୁଗାଈ ମଲେ ସେ କେତେ ଖୁସି ହେଇଚି । ହେଲେ ଏଇନେ ତା ନିଜ

କଥା ଭାବିଲା ବେଳକୁ ସବୁକିଛି ଗୋଳମାଳିଆ ଧରି ଯାଉଚି । ମୁଣ୍ଡ ବୁଲେଇ ଦଉଚି । ମନ କହୁଚି- ନାଁରେ ଆଉ ସେଇ କଥା ଭାବେନା ।

ବୁଢ଼ା ମଶାଣିକୁ ଅନେଇଲା । ଶାଗୁଣାପଲ ମଢ଼ ଧିଅରୁ ମାଉଁସ ନାଡ଼ି ଟଣାଟଣି କରି ଖାଉଚନ୍ତି । କୁକୁର ବିଲୁଆ ପାଗଳ ହେଇ ଯାଉଚନ୍ତି ଟିକିଏ ଟିକିଏ ମାଉଁସ କି ହାଡ଼ ଖଣ୍ଡିଏ ପାଇଁ । ହ- ଖାଉନ୍ତୁ । ମନବୋଧ କରି ଖାଉନ୍ତୁ । ମୋରି ପିଲା କବିଲା ତ । ଟିକିଏ ମଉଜ କରୁଚନ୍ତି । ଭଲ । ଭଲ । ତାଙ୍କରି ସୁଖରେ ମୋରି ସୁଖ । ଆନନ୍ଦର ଉଷୁମରେ ସେ ଆଖି ବନ୍ଦ କଲା ।

ଶୁଖିଲା ଡାଙ୍ଗ ଖଣ୍ଡେ ତା କଡିରେ ପଡ଼ିବାରୁ ସେ ଆଖି ମେଲି ଓପରକୁ ଅନେଇଲା । ବଡ଼ ଆଚମ୍ବିତ କଥା । ତାଙ୍କ ଦଳର ଟୋକା ଶାଗୁଣାଟାଏ ଚାକୁଣ୍ଡା ଗଛର ଗୋଟିଏ ଥୁଣ୍ଟା ଡାଳରେ ବସି ରହିଚି । ଅଜବ ଟୋକା ଏଇଟା । ଟିକିଏ ଟିକିଏ ମାଉଁସ ପାଇଁ କେମିତି ମାଡ଼ଗୋଳ ଠେଲାପେଲା ଲାଗିଚି । ଏ ଟୋକାଟା ଏଇଠି ଏମିତି ମନମାରି ବସି ରହିଚି ? ଆଖିର ପଲକ ବି ଟିକେ ପକଉନି । ଟିକେ ହଲଚଲ ହଉନି । ଶଳା ଟୋକା ବାଆଜି ଭଳିଆ ତପରେ ବସି ଯାଇଚି । ନା - ଧିଅପା କିଛି ଖରାପ ହେଲା କି ? ହେଇଥିବ । ଧିଅ ଓପରେ କ'ଣ ପରତେ ଅଛି ? ଏଇନେ ଭଲ ତ ଏଇନେ ଖରାପ । ରୋଗ ବଇରାଗ କା ହାତରେ ବା ଅଛି ?

ହେଇ ଟୋକା କ'ଣ ଧିଅ ବାଧିକା ହେଇଚି କିରେ ?

ଟୋକାଟା ତ ଉଁ କି ଚୁଁ କିଛି କହୁନି । ଘଟଣା କ'ଣ ? କାଇଁକି ଏମିତି ମନ ମାରି ବସି ରଇଚି ?

ବୁଢ଼ା ଡେଣା ମେଲା କଲା । ଟୋକା ଶାଗୁଣା ବସିଥିବା ଖେଣ୍ଟା ଡାଳରେ ବସି ପଡ଼ିବା ବେଳେ ଡାଳଟା ଟିକେ ହଲିଗଲା । ଟୋକା ଶାଗୁଣା ସାମାନ୍ୟ ଟିକିଏ ହଲି ଯାଇ ପୁଣି ଥିର ହୋଇଗଲା । ବୁଢ଼ା ଅପେକ୍ଷା କଲା, ସିଏ ଆଗ ମୁହଁ ଖୋଲୁ । କିନ୍ତୁ କି ଅଜବ କଥା ସେ ଆଗଭଳିଆ ସେମିତି ବସି ରହିଲା । ଯେମିତି ତା ପାଖରେ କେହି ନାହାନ୍ତି । ସେ ଏକଦମ୍ ନିରୋଳା । ବୁଢ଼ା ଆଉ ଅପେକ୍ଷା କରି ପାରିଲାନି । ଟୋକାଟାର କ'ଣ ଯେ ହେଇଚି କିଛି ସମ୍ଝି ହଉନି ।

ଆରେ ତୋର କ'ଣ ହେଇଚି କିରେ ?

ତଥାପି ସେ ନୀରବ । ଯେମିତି ମୁଣ୍ଡାଏ ଥଣ୍ଡା ନୀରବତା ଖୁଣ୍ଟା ଡାଳଟି ଉପରେ ଜମାଟ ବାନ୍ଧି ଯାଇଚି ।

ବୁଢ଼ା ଆଉ ଟିକିଏ ନରମ ଗଳାରେ ପଚାରିଲା– ବାପାଟା ପରା, କ'ଣ ହେଇଚି କହ ।

ସେ ଏଥର ମୁହଁ ବୁଲେଇ ବୁଢ଼ାର ଆଖିକୁ ଅନେଇ ରହିଲା । ବୁଢ଼ା ତା' ଆଖିକି ଦେଖି ଦଉ ଦଉ ତା' ଛାତିରେ ଛନକା ପଶିଗଲା । ଏ କ'ଣ ? ଏତେ ଦୁଃଖ ଏ ଟୋକାର ଆଖିରେ ଆସିଲା କୋଉଠୁ ? ପୁଣି ଯେତେବେଳେ ସମସ୍ତେ ମନ ଭରି ଖାଇବାରେ ବେସ୍ତ, ଏ ଏମିତି ଦୁଃଖରେ ବୁଡୁବୁଡୁ ହେଇପଡୁଚି କାଇଁକି ? ଯେମିତି ଦୁନିଆ ଯାକର ଆରତ ତା' ଆଖିରେ ଫୁଟି ଉଠିଚି ।

ବାପାରେ ତୋର କ'ଣ ହେଇଚି କହ । ନ କହିଲେ ମୁଁ ଜାଣିବି କେମିତି ?

ଟୋକା ଶାଗୁଣାଟି ଥରି ଥରି ଆରମ୍ଭ କଲା– ଜେଜେ, ତମେ ଆମର ଦଳପତି । ସବୁଠାରୁ ବେଶି ବୟସ ତମର । ତମ ଅଭିଜ୍ଞତା ବି ସମସ୍ତଙ୍କ ଠାରୁ ଅଧିକ । ତମକୁ ଆଜି ମୋ ହୃଦୟ ଖୋଲି କଥାଟେ କହିବି ।

ବୁଢ଼ା ଭାବି ପାରିଲାନି କଥାଟା କ'ଣ ହେଇପାରେ । ତଥାପି କିଛି ଓଜନିଆ କଥା ଟୋକାଟା କହିବାକୁ ଯାଉଚି । ତେଣୁ ସେ ଟିକିଏ ସିଧା ହେଇ ବସିଲା, ମନଧ୍ୟାନ ଦେଇ ଶୁଣିବା ସକାଶେ ।

ଅନେକ ଦିନ ହେଲାଣି ଏଇ କଥାଟି ମୋ ମନକୁ ଘାରିବାରେ ଲାଗିଚି । କେତେଦିନ ହେଲାଣି ମୋ ଆଖିକି ନିଦ ଆସୁନି । କିଛି ଖାଇବା ପାଇଁ ମନ ବଳୁନି । ମତେ ଲାଗୁଚି ମୁଁ ନ ଖାଇ ନ ପିଇଁ ଏମିତି ଭାବି ଭାବି ମରିଯିବି । ହେଲେ ମୋ ସମସ୍ୟାର ସମାଧାନ କରି ପାରିବି ନାହିଁ ।

ତୋ କଥା ତ ବାପା ମୁଁ କିଛି ସମଝି ପାରୁନି । ତୋର କ'ଣ ହେଇଚି ? ତୁ ଏମିତି କ'ଣ ଭାବୁଚୁ ଯେ ଖାଇବା ପିଇବା ଏପରିକି ଶୋଇବା ବି ତେଜ୍ୟା କରି ଦେଲୁଣି ? ତୋର ପୁଣି ସମସ୍ୟା କ'ଣ ? ଟୋକାଟା ଖେଳିବୁଲି ଚଉଦିଗ ଦଲକଉଥାନ୍ତୁ । ତୋ ଆଗରେ ଖେଦି ଯିବାକୁ ସାରା ପୃଥିବୀଟା ପଡ଼ିଚି । ସାରା ଆକାଶଟା ତତେ ଅନେଇ ବସିଚି । ତୋର ଫେରେ ଗୋଟା ସମସ୍ୟା କ'ଣରେ ?

ମୁଁ ଜାଣିଚି ତମେ ମୋ କଥାକୁ ଏଡ଼େଇ ଦବ । ସେଇଥିପାଇଁ ମୁଁ କାହା ପାଖରେ ମୁହଁ ଖୋଲୁ ନଥିଲି ।

ନାଇଁରେ ବାପା ମୁଁ ସେ କଥା କହୁନି । ମୁଁ ତୋ କଥା ନିଶ୍ଚୟ ଶୁଣିବି । ଯଦି ସମାଧାନର ବାଟ ଜାଣିଥିବି ତେବେ ନିଶ୍ଚୟ ତୋତେ କହିବି । ଅସଲ କଥାଟା ହଉଚି ବାପା ମୁଁ ଏତେ ଉମର କାଟିଲି, ହେଲେ, ଏପରି କଥା ମତେ କେହି କହି ନଥିଲେ । ସେଇଥିପାଇଁ ମୁଁ ଯାହା ଆଚମ୍ଭିତ ହଉଚି । ହଉ ଏଥର ଫିଟେଇ କହ ।

ଜେଜେ ଆମେ ଜାତିରେ ଶାଗୁଣା । ଏଇ ପୃଥିବୀରେ ମଣିଷଠାରୁ ବି ଅଧିକ ବର୍ଷ ଆମେ ବଂଚୁଛେ । ହେଲେ ଆମକୁ କେହି ଟିକିଏ ହେଲେ ଆଦର କରୁ ନାହାନ୍ତି କାଇଁକି ? ଆମେ ସମସ୍ତଙ୍କଠାରୁ କେବଳ ଘୃଣା ହିଁ ପାଇ ଆସୁଚେ ?

ଏପରି ପ୍ରଶ୍ନ ଶୁଣି ବୁଢ଼ା ଆବାକାବା ହେଇଗଲା । ଇଏ କି ପ୍ରଶ୍ନ ? ଆମେ ଯେତେବେଳେ ମଢ଼ ଖାଉଚେ ଆମକୁ କିଏ କ'ଣ ଘରକୁ ଡାକି ନେଇ ପିଢ଼ାପାଣି ଦିଅନ୍ତା ? କି କଥା ଇଏ ତେବେ ଏଇ ? ସାଧାସିଧା କଥାଟି ଯେତେବେଳେ ତା ମନକୁ ଏତେ ସରି ଘାରିଚି ତେବେ ତାକୁ ତା'ରି ବାଟରେ ବୁଝେଇ ଦେବା ଦରକାର । ପିଲା ଲୋକ । ମନଟା କ'ଣ କୁଆଡୁ ଟିକେ ଏମିତି ହେଇ ଯାଇଚି । ଠିକ୍ ବାଟରେ ପଡ଼ିଯିବନି କି ?

ଜାଣିଲୁ ବାପା ତୁ ଗୋଟିଏ ଉଚିତ କଥା ଉଠେଇଚୁ । ଆମ ଦିନକାଳ ତ ଏମିତି ଏମିତି ସଇଲା । ଆଉ ବା କେଇଟା ଦିନ । ତମେ ସବୁ ନୂଆ ଯୁଗର ଶାଗୁଣା । ନୂଆ କଥା ଦେଖୁଚ, ଶିଖୁଚ, ଚିନ୍ତା ବି କରୁଚ । ଭଲ । ଭାରି ଭଲ । ତେବେ ଏଇ ଯୋଉ କଥାଟି ପଚାରିଲୁ ସେଇ ବିଷୟରେ କହୁଚି । ତୁ ଭାବୁଚୁ ଆମକୁ କେହି ଆଦର କରୁ ନାହାନ୍ତି । ଅନ୍ୟମାନଙ୍କୁ ଆଦର କରୁଚନ୍ତି । ସେଇଟା ବାପା ଠିକ୍ କଥା ନୁହଁ । ଏଠି କେହି କାହାକୁ ଆଦର କରୁନି । ଆମେ ଦେଖୁଚେ ମଣିଷ ଗାଈ ଗୋରୁଙ୍କୁ ଏତେ ଆଦର ଯତନ କରୁଚି । କାରଣ ସେ ଗାଈଠଉଁ ଦୁଧ ପାଉଚି ଆଉ ବଳଦ ତା ଜମିକି ଚଷୁଚି । ଗାଈ ଦୁଧଦବା ବନ୍ଦ କରି ଦେଲେ କି ବଳଦ ବୁଢ଼ା ହେଇଗଲେ ତାକୁ କଂସେଇକି ବିକି ଦଉଚି । ତେବେ ସେ ଗାଈକି ଆଦର କଲା କୋଉଠି ? ସେ କେବଳ ନିଜର ସ୍ୱାର୍ଥକୁହିଁ ଆଦର କରିବାରେ ଲାଗିଚି । ତେଣୁ ଆମକୁ କିଏ କାହିଁକି ବା ଆଦର କରନ୍ତା ? ଆମେ ଯେ ଅନ୍ୟର ଉପକାର କରୁନୁ ସେ କଥା ନୁହଁ । ଆମେ ନ ଥିଲେ ମଢ଼ମାନଙ୍କୁ କିଏ ଖାଇଖୁଇ ସଫା କରି ଦିଅନ୍ତେ ? ମଢ଼ ସବୁ ପଡ଼ି ରହିଲେ ଏ ପୃଥିବୀରେ କେହି ରହି ପାରନ୍ତେ ତ ? ତେବେ ଆମର ଉପକାରକୁ ସେମାନେ ତାଙ୍କ ସ୍ୱାର୍ଥ ଦୃଷ୍ଟିରୁ ମାପି ପାରୁ ନାହାନ୍ତି । ସେଇଥିପାଇଁ ଆମେ କ'ଣ କରିପାରିବା ? କେବଳ ଭୟରେ ସେମାନେ ଆମକୁ ଘୃଣା କରୁଚନ୍ତି । ଆମେ ତ ତାଙ୍କର କିଛି କ୍ଷତି କରୁନା । ତୁ କାନ ଉଠିବା ଦିନରୁ କେବେ ଶୁଣିଚୁ କୋଉଠି ଶାଗୁଣାଟିଏ ମଣିଷକୁ ମାରି ଦେଇଚି ବା ହାଣି ପକେଇଚି । ନା, ଆମେ ମଲା ମଣିଷର ମାଉଁସ ଖାଉଚେ । ବରଂ ତାଙ୍କର ଉପକାର କରୁଚେ । ଓଲଟି ସେମାନେ ଯଦି ଆମକୁ ଘୃଣା କରିବେ ଆମେ କ'ଣ କରିପାରିବା ? ପ୍ରକୃତି ଆମକୁ ଯେମିତି ଗଢ଼ିଚି ଆମେ ସେଇ ଅନୁସାରେ କାମ କରିଯିବା । କିଏ ଆମକୁ କ'ଣ ଭାବୁଚି ସେଥିରେ ଆମର ଯାଏ କେତେ ଆସେ କେତେ ?

ଏତକ କହି ସାରିଲାପରେ ବୁଢ଼ାଶାଗୁଣାକୁ ନିଜ ମନ ଟିକିଏ ଉଷୁମ ଲାଗିଲା । ସେ ଧରିନେଲା ଯାହାହଉ ପିଲାଟା ସବୁକଥା ବୁଝିଗଲା । ଏଥରକ ହାଲୁକା ହେଇଯିବ । ଏଠୁ ଉଡ଼ିଯାଇ ଅନ୍ୟମାନଙ୍କ ସହ ଯୋଗଦବ । ହେଲେ ଟୋକା ଶାଗୁଣାଟା ସେଠୁ

ଟିକେ ହେଲେ ହୁଙ୍କିଲାନି । ତା' ଆଖିର ଭାବ ବି ଟିକିଏ ହେଲେ ଊଣା ହେଲାନି । ବରଂ ଅଧିକ ଚିନ୍ତାମଗ୍ନ ହେଇଗଲା ।

ଜେଜେ ତମେ ଯାହା କହୁଚ ତାହା ହୁଏତ ଆଂଶିକ ଭାବରେ ସତ ହେଇପାରେ ହେଲେ ମୋ ମନରେ ଯୋଉ ପ୍ରଶ୍ନ ଉଠିଚି ଏଥିରେ ତାହା ପ୍ରଶମିତ ହେଉନି ।

ତେବେ ତୁ କ'ଣ ଜାଣିବାକୁ ଚାହୁଁଚୁ ମୁଁ ତ କିଛି ଧରିପାରୁନି ବାପା ।

ମୁଁ ହୁଏତ ତମକୁ ଠିକ୍ ଭାବରେ ପଚାରିପାରୁନି । ତେବେ ତମେ ଯାହା କହୁଚ ସେକଥା ମୁଁ ଆଗରୁ ଭାବିଥିଲି । କିନ୍ତୁ ଆମ ସମସ୍ୟା ସେଠି ନାଇଁ । ଆମେମାନେ ମୂଳରୁ ଯେମିତି ଥିଲେ ଏବେବି ସେମିତି ପଡ଼ି ରହିଚେ । ମଣିଷ ତା'ର ଦିନକୁ ଦିନ ଉନ୍ନତି କରିବାରେ ଲାଗିଚି । ଯାନବାହାନ କଳକାରଖାନା, କୋଠାବାଡ଼ି କାହିଁରେ କ'ଣ । ଘର ଭିତରେ ଆରାମରେ ବସି ଦେଶ ବିଦେଶର ଖବର ଦେଖିପାରୁଚି । ଆଉ ଆମେ ?

ଟୋକା ଶାଗୁଣାର ଏପରି କଥା ଶୁଣି ବୁଢ଼ାଶାଗୁଣା ଗୁମ୍ ଖାଇଗଲା । ଏଭଳି କଥାର କି ଉତ୍ତର ଦେବ ସେ ଚିନ୍ତା କରିପାରିଲା ନାହିଁ । ଏ ବାବଦରେ ଯେତେ ବେଶି ଚିନ୍ତାକଲା ଏ ବିଷୟଟି ସେତେ ବେଶି ଓଜନିଆ ଓ ଜଟିଳିଆ ଜଣାପଡ଼ିଲା । ସତରେ ତା ଆଖି ଫିଟିଲା ଦିନରୁ ତ ତାଙ୍କର କିଛି ଉନ୍ନତି ହେଇନି । ଯେମିତି ଥିଲେ ସେମିତି । ଯାର କାରଣ କ'ଣ ମୁଁ ବା କେମିତି କହିପାରିବି ? ହଁ ମଣିଷ ଉନ୍ନତି କରିଚି । ସେମିତି ସେମିତି ଲାଗୁଚି । ହେଲେ କେମିତିକା ଉନ୍ନତି ହେଇଚି ମତେ ବା କୋଉ ଜଣା ? ଆମେ ତ ମଣିଷବସ୍ତି ପାଖ ମାଡ଼ୁନା । ତାଙ୍କର ସବୁ କ'ଣ ଘଟୁଚି କେମିତି ବା ଜାଣନ୍ତି ? ଏ ଟୋକାକୁ ବା କ'ଣ କଇବି ? କ'ଣ କଇଦେବି ମୁଁ କିଛି ଜାଣେନି ବୋଲି ? ତେବେ ମୋ ଦଳପତିର ମାନଥାନ ଆଉ ରଇବ ନା ? ମୁଁ କ'ଣ କରିବି ? ଟୋକାଟା ମତେ କି ଅଡୁଆରେ ପକେଇଦେଲା ?

ଏ ପ୍ରଶ୍ନର ହାବୁଡ଼ରୁ ନିଜକୁ ମୁକୁଳେଇବାକୁ ଚେଷ୍ଟାକଲାବେଳେ ନିଜେ ସେଇ ଜାଲରେ ପଡ଼ିଗଲା । ମଣିଷ କାଇଁକି ଆଗଉଚି ? ଆମେ କାଇଁକି ଆଗେଇବାନି ? ନାଇଁ ଆର ଗୋଟା କିଛି କୂଳକିନାରା ବାହାର କରିବାକୁ ପଡ଼ିବ ।

ଦି'ଟା ଶାଗୁଣା ସେଇ ଚାକୁଣ୍ଡା ଗଛର ଖେଣ୍ଟା ଡାଳ ଉପରେ ବସିଥାନ୍ତି । ଟୋକାଶାଗୁଣା ଅନେଇ ରହିଥାଏ ବୁଢ଼ାର ଆଖିକି । ବୁଢ଼ା ଆଖିବୁଜି ଅନେଇ ରହିଥାଏ ନିଜ ଭିତରକୁ । ଯେମିତି ଦି'ଟା ଯୁଗ ପଥର ପାଲଟି ଯାଇଚନ୍ତି । ପଡ଼ି ରହିଚନ୍ତି ମହାକାଳର କୂଳରେ ।

ଅନେକ ଅନେକ ସମୟ ପରେ ବୁଢ଼ାଶାଗୁଣା ଆଖି ଖୋଲିଲା । ଟୋକାଶାଗୁଣା ସେମିତି ତାକୁ ଅନେଇ ବସିଥାଏ । ବୁଢ଼ା ଶାଗୁଣାକୁ ଦେଖାଗଲା, ଏଇ ଟୋକାଟା

ସତରେ ବହୁତ ବୁଢ଼ା ହେଇଯାଇଚି । ଯାର ଉମର କଳି ହବନି । ହେଲେ ତା' ନିଜର ବୟସ କମିଯାଇଚି । ଯେପରି ତା'ର ବାଲୁତ କାଳ ତା ଭିତରକୁ ପଶି ଆସୁଚି ।

ଉଠୁ ଯିବା ।

କୋଉଠିକି ?

ମୋ ପଛେ ପଛେ ଆ ।

ବୁଢ଼ା ଆଗରେ ଉଡୁଥାଏ । ତାକୁ ଲାଗୁଥାଏ, ଭାରି ହାଲୁକା ଆଉ ଚଞ୍ଚଳ । ଟୋକା ଉଡୁଥାଏ ତା ପଛେ ପଛେ । ଉଡୁଥିବା ବେଳେ ବୁଢ଼ାଶାଗୁଣା କହିଲା– ଜାଣିଲୁ, ଆଗେଇବାର ଇଲମ ଖାଲି ମଣିଷକୁ ମାଲୁମୁ ଅଛି । ଏଇ ଜଗତରେ ଆଉ କେଇ ପାଇନି । ଆମକୁ ସେଇ ଇଲମ ଟିକକ ହାସଲ କରିବାକୁ ପଡ଼ିବ । ଆ, ଉଡ଼ିଆ ।

ଉଡ଼ି ଉଡ଼ି ଉଡ଼ି ଉଡ଼ି ସେମାନେ ଯାଇ ପହଞ୍ଚିଲେ ଗୋଟିଏ ଗହଳିଆ ବୁଢ଼ାଗଛ ପାଖରେ । ତାରି ଉପରକୁ ଓହ୍ଲେଇ ପଡ଼ିଲେ । ଏପରି ଥାନଟିକୁ ବାଛି ବସିଲେ ଯେମିତି ତାଙ୍କୁ କେହି ଦେଖି ପାରିବେନି । ହେଲେ ସେମାନେ ତାଙ୍କ ଚାରି ପାଖକୁ ଭଲ ରକମ ଦେଖି ପାରିବେ ।

ସଂଜ ହେଇ ଆସୁଥାଏ । ଆଉ ଆଉ ଚଢ଼େଇ ସବୁ କିଚିରି ମିଚିରି ହଉଥାନ୍ତି । ବୁଢ଼ା କହିଲା– ଏମିତିକା ଗୋଟାଏ ଜାଗା ଆମର ଦରକାର ଥିଲା । ମଣିଷ ବିଷୟରେ ଏଉଠୁ ଭଉତୁ କଥା ଜାଣିହବ ।

ଅଳପ ସମୟ ପରେ ଚାରିଆଡ଼େ ଆଲୁଅ ଜଳି ଉଠିଲା । ତାଙ୍କ ଗଛ ଭିତରଟାକୁ ଛାଡ଼ିଦେଇ ଚାରିଆଡ଼ ଦିନ ଭଳିଆ ଫରଚା ହେଇଗଲା ।

ବୁଢ଼ା ଶାଗୁଣା ଚମକି ପଡ଼ିଲା । ଇରେ ବାପରେ କି ହାଲୋଳ ! ରାତିଟା ବି ଏଠି ଦିନ ହେଇ ଯାଉଚି ? ତାଙ୍କରି ଆଗରେ ଗାଡ଼ି ମଟରର ସୁଅ ଛୁଟିଥାଏ ରାସ୍ତା ଉପରେ । ବହୁତ ଲୋକ ବି ରଙ୍ଗ ବେରଙ୍ଗ ଲୁଗାପଟା ପିନ୍ଧି ଯା'ଆସ କରୁଥାନ୍ତି । ସବୁଆଡ଼େ ଉଁଚା ଉଁଚା ଘର ସରଗ ଆଡ଼କୁ ମୁଣ୍ଡ ବଢ଼େଇ ଛିଡ଼ା ହେଇଚି । କଳ କାରଖାନାର ଚିମିନି ସବୁ କାହିଁ କେତେ ଉପରକୁ ଉଠି ଯାଇଚି । ବୁଢ଼ା ଶାଗୁଣା ଆବାକାବା ହେଇ ଯାଉଥାଏ । ଏ ଶାଗୁଣା ଜୀବନଟା ଯାହା ନଷ୍ଟ ହେଇଗଲା । କିଛି ଜାଣି ହେଲାନି କି କିଛି ଦେଖି ହେଲାନି ଏ ଜୀବନରେ । ଖାଲି ମଢ଼ା ଗିଳି ଗିଳି ବେଳକାଳ ସବୁ ସରିଗଲା । ଧନ୍ୟ କହିବ ଏ ଟୋକାକୁ । ଇଏ ମତେ ନ କହେ ନା ମୁଁ ଏଠିକି ନ ଆସେ । ଯା' ହଉ ଏ ଚକ୍ଷୁ ପବିତ୍ର ହେଇଗଲା ।

ଜେଜେମ, ତମ ପଛକୁ ଟିକେ ଅନାନି ।

ବୁଢ଼ା ପଛକୁ ବୁଲି ପଡ଼ିଲା । ଦେଖୁ ଦେଖୁ ତୋବା ତୋବା ହେଇଗଲା ।

କେତେ ସାଜସଜ୍ଜା କେତେ ଆଲୁଅ । ଗୋଟାଏ ପଡ଼ିଆ ସାରା ଗାଡ଼ି ଭର୍ତ୍ତି ହେଇଚି । ପୁଣି କେତେ ଗାଡ଼ି ଆସୁଚି କେତେ ଗାଡ଼ି ଯାଉଚି । କେତେ ଲୋକ ଆସୁଚନ୍ତି କେତେ ଲୋକ ଯାଉଚନ୍ତି । ଭିତରେ ଧୂମ୍‌ଧାମ୍ ଖିଆପିଆ ଲାଗିଚି । ସମସ୍ତେ ହସ ହସ । ଖୁସିବାସିରେ ଗଡ଼ି ଯାଉଚନ୍ତି ।

ବୁଢ଼ା ଶାଗୁଣା ଖୁସିରେ ଗଦ୍‌ଗଦ୍ ହେଇ ପଡୁଥାଏ । ଏତେ ଦିନେ ଯାଇ ସେ ଦୁନିଆ ଦେଖିଲା । ଦୁନିଆର ହାବଭାବ ଜାଣିଲା । ଆମେ ଦେଖିଲେ ଶିଖିଲେ ଯାଇ ଆଗେଇବା ନା ଆଉ କ'ଣ ?

ଏତିକିବେଳେ ଟୋକା ଶାଗୁଣା କହିଲା– ଜେଜେ ଜେଜେ ଦେଖିଲ ଦେଖିଲ ସେଠି କିଏ ସବୁ ଆସୁଚନ୍ତି ?

ବୁଢ଼ା ଦେଖିଲା କେତେଟା ଅପରିଚ୍ଛନିଆ ମଣିଷ ସିଆଡ଼କୁ ମୁହେଁଇଚନ୍ତି । ଛିଣ୍ଡା କୌତରା ଲୁଗା ପିନ୍ଧିଛନ୍ତି । ତାଙ୍କ ଗୋଡ଼ରେ ମଇଳା କନା ଗୁଡ଼ା ହେଇଚି । ହାତରେ ଆଙ୍ଗୁଠି ସବୁ ଘୋରି ହୋଇ ଯାଇଚି । ମୁହଁର ନାକ ବସି ଯାଇଚି । ସେମାନେ ଛୋଟେଇ ଛୋଟେଇ ଘୁଷୁରି ଘୁଷୁରି ସିଆଡ଼କୁ ଆସୁଚନ୍ତି ।

ଏମାନେ ସବୁ ଏମିତି କାଇଁକି ଦେଖା ଯାଉଚନ୍ତି, ଜେଜେ ?

ବାପାରେ, ମତେ ଯାହା ନାଗୁଚି ଯାଙ୍କୁ ସବୁ ରୋଗ ବଇରାଗ ହେଇଚି ।

ଏମାନଙ୍କୁ ତ ଭାରି କଷ୍ଟ ହଉଥିବ ?

ଆଙ୍କ ପାଇଁ ମଣିଷ କାଇଁକି କିଛି କରୁନି ?

ମୁଁ କେମିତି କଇ ପାରିବିରେ ବାପା ?

ସେତେବେଳକୁ ସେଇ ଲୋକମାନେ ଆଲୁଅ ସଜାସଜ୍ଜି ପାଖକୁ ଆସି ଯାଇଥିଲେ । କ'ଣ ହେଲା କେଜାଣି କେତୋଟି ଭଲ ଲୋକ ତାଙ୍କ ଆଡ଼କୁ ଚିହିଁକି ଆସିଲେ । ହଟ୍ ହଟ୍ ହଟ୍ ବୋଲି ପାଟି କଲେ । ସେଇ ଲୋକଗୁରା ଖାଲି ପାଟିକି ଦେଖେଇ ନେହୁରା ହଉଥାନ୍ତି । ଭଲ ଲୋକଙ୍କ ଭିତରୁ କେହି ଜଣେ ବାଡ଼ିଟିଏ ଆଣି ସେମାନଙ୍କୁ ବାଡ଼େଇବାରୁ ସେମାନେ ଛୋଟେଇ ଛୋଟେଇ ଦଉଡ଼ି ଦଉଡ଼ି ପଳେଇଗଲେ ।

ସେମାନେ ସବୁ ଖାଇବାକୁ ଆସିଥିଲେ ନା ?

ହଁ ସେଇଆତ ଜଣାଯାଉଚି ।

ତାଙ୍କୁ ଏମାନେ ମାରି ତଡ଼ିଦେଲେ କାଇଁକି ?

ବୁଢ଼ା ଶାଗୁଣା ଏସବୁ କିଛି ସମଝି ପାରିଲା ନାହିଁ । ଗୁମ୍‌ମାରି ଭାବିବାକୁ ଲାଗିଲା । ଜେଜେ ଦେଖିଲ ସେଠି କ'ଣ ହଉଚି ।

କ'ଣରେ ବାପା ?

ହେଇ ଅନା ।

ବୁଢ଼ା ଶାଗୁଣା ସିଆଡ଼କୁ ଅନେଇଲା । ଖିଆପିଆ ସରିଲା ପରେ ସେଇଠି ପତର ଫୋପଡ଼ା ହଉଥାଏ । ଅଇଁଠାପତର ଚାଟିବାକୁ ଦଳେ କୁକୁର କାମୁଡ଼ାକାମୁଡ଼ି ଲାଗିଥାନ୍ତି । ଆହା - ଆହା - ତାଙ୍କ ଭିତରେ ମଣିଷଟାଏ ବି ପଡ଼ିଯାଇଥାଏ । କୁକୁରଗୁରା ତା ଓପରକୁ ଚଢ଼ି ଯାଉଥାନ୍ତି । ସିଏ ବି କୁକୁରଙ୍କ ମୁହଁ ପାଖରୁ କ'ଣ ଟାଣି ନେଇ ଖାଇ ଯାଉଥାଏ ।

ଇଏ କୁକୁରଗୁରା ତ ମଢ଼ା ଖାଇଲା ଭଳିଆ ହଉଚନ୍ତିରେ ବାପା । ହେଲେ ମଣିଷଟାଏ ତ କୁକୁରଗୁରାଙ୍କ ଭିତରେ ପଇଚି ।

କାଇଁକି ଜେଜେ ?

ବୁଢ଼ା ପୁଣି ଗୁମ୍ ଖାଇଗଲା । ତା'ର ତା ନିଜ ଆଖିକି ପରତେ ହେଲାନି । ସେ ଆଉ ଥରେ ନିରିଖେଇ କରି ଅନେଇଲା । ହଁ ତ ମଣିଷଟାଏ । ତାଙ୍ଗ ପରିକା ଗୋଡ଼ହାତ । ଏକଦମ୍ ନଙ୍ଗଳା ହେଇ କୁକୁରଙ୍କ ଭିତରେ ବଇଚି । କୁକୁରଙ୍କ ଠାରୁ ଝାମ୍ପି ନେଇ କ'ଣ ଖାଇ ଯାଉଚି । ଶୀତରେ ତା ଧିଅହାତ ଠକ ଠକ ହେଇ ଥରୁଚି । ହଁ ତ ମଣିଷଟାଏ । ବୁଢ଼ା ଶାଗୁଣା ଆଖି ବୁଜି ପକେଇଲା । ଆଉ କିଛି ଭାବି ପାରିଲାନି ।

ଜେଜେ ଏଠି ଆଉ ଭଲ ଲାଗୁନି । ଚାଲ ଆଉ କୋଉଠିକି ପଳେଇଯିବା ।

ନାଇଁରେ ବାପା ଏଇଠି ରାତିଟା କଟେଇ ଦେ । ଏତେ ଆଲୁଅରେ କୁଆଡ଼ିକି ଯିବା ? ବାଟ ପାଇବା ତ ? ଆଖି ଜାଲୁଜାଲୁଆ ମାରିଯିବନି ? ସକାଳ ହଉ ପଳେଇବା । ଏଇଠି ଆଉ କେଇଘଡ଼ି ରଅବିସ ନେଇଯା ବାପା ।

ରାତି ବଢ଼ି ଚାଲିଲା । ସେ ଦି'ଜଣଙ୍କୁ ବି ନିଦ ଲାଗି ଆସିଲା । ଗଛତଳୁ ଲୋକଙ୍କର ପାଟିଗୋଳ ତାଙ୍କ ନିଦ ଭାଙ୍ଗି ଦେଲା । ଦୁହେଁ ତଳକୁ ଅନେଇଲେ । ଗଛତଳେ ଛାଇ ଛାଇକିଆ ଆଲୁଅ ପଡ଼ିଥାଏ । ସେଇଠି କେତେ ଜଣ ମଣିଷ ଗୋଟାଏ ତିରିଲା ଲୋକକୁ ଗାଡ଼ି ଭିତରୁ ଭିଡ଼ି ଆଣୁଥାନ୍ତି । ସେ ପାଟିକରି କାନ୍ଦୁଥାଏ । ସେମାନଙ୍କ ଗୋଡ଼ ଧରୁଥାଏ । ସେମାନେ ତାକୁ ଟେକି ଆଣିଲେ । ସେମାନେ ସମସ୍ତେ ଟଳମଳ ହଉଥିଲେ । କାହାର ପାଦ ଠିକ୍ ଭାବରେ ପଡୁନଥିଲା । ତିରିଲା ଲୋକଟି ଜୋର୍‌ରେ କାନ୍ଦୁଥିବା ବେଳେ ସେମାନେ ତାକୁ ଜବରଦସ୍ତ ତଳେ ଶୋଇ ପକେଇଲେ । ତା' ଧିଅରୁ ଲୁଗାପଟା ଟାଣି ଓଟାରି ଫୋପାଡ଼ି ଦେଲେ । କିଏ ଗୋଟାଏ ତା ଓପରକୁ କୁଦି ପଡ଼ିଲା । ମଢ଼ଟାକୁ ବେଢ଼ିଗଲା ଭଳିଆ ସେମାନେ ତାକୁ ବେଢ଼ି ଯାଇଥାନ୍ତି । କିଏ

ଆମ୍ଭୁଡୁଥାଏ । କିଏ କାମୁଡୁ ଥାଏ । ତା'ର ଆଉ ପାଟି ଶୁଭୁ ନଥାଏ । ତା' ଧିଅବି ଆଉ ଛଟପଟ ହଉ ନଥାଏ । ସେ ସେମିତି ଅଭୁତ ନଙ୍ଗଳା ହେଇ ପଡ଼ିଥାଏ । ସବାଶେଷରେ ସେଇ ମଣିଷଗୁଡ଼ାକ ଗାଡ଼ି ଭିତରକୁ ପଶି ଯାଉଥିଲେ ।

ବୁଢ଼ା ଶାଗୁଣାର ପାଟିରୁ କେମିତି ଗୋଟାଏ ଶବ୍ଦ ବାହାରି ଆସିଲା ।

ଟୋକା ଶାଗୁଣା ପଚାରିଲା- ଜେଜେ...

ବୁଢ଼ା ଶାଗୁଣା ସେତକ ହୁଏତ ଶୁଣି ପାରିଲା ନାଇଁ । ସେ ହଠାତ୍ ଡେଇଁ ପଡ଼ିଲା ତଳକୁ ସେମାନଙ୍କ ଉପରକୁ । ଗାଡ଼ି ହଠାତ୍ ଛାଡ଼ି ଦେଲା । ଅଣଆୟତ୍ତ ବୁଢ଼ା ଶାଗୁଣା ଗଛ ତଳ ଚଉତରାର ଧାରରେ ବାଜି ଛିଟିକି ପଡ଼ିଲା କିଛି ଦୂରକୁ ।

ଟୋକା ଶାଗୁଣା ରା' ଧରି ଉଠିଲା - ଜେଜେ...

ସେତେବେଳକୁ ରାତି ପାହି ନଥିଲା ।



ରଜନୀକାଂତ ମହାନ୍ତି

# ବିଶା ଶହେ କାହାଣ ଅନ୍ଧାର

ଚେମା ମା' କାନ୍ଦୁଚି । ଠକ୍ ଠକ୍ ତତଲା ନୁହ ଖସି ପଡୁଚି ମାଟି ଉପରେ । ଏଣେ କୁଲାରେ ଧାନ ପାଛୁଡୁଚି ତ ଏଣେ କାନ୍ଦୁଚି । ବେଳେ ବେଳେ କାନ୍ଦର ଇମିତି ଲହର ପଡ଼ି ଯାଉଛି ଯେ କୁଲା ରଖିଦେଇ ଭେଁ ଭେଁ କାନ୍ଦୁଚି । ରାସ୍ତାରେ ଯିବା ଆସିବା କରୁଥିବା, କଳେଇ ଭାର ବୋହୁଥିବା, ଛେଲା ବଳଦ ଗୋଡ଼ଉଥିବା ଲୋକସବୁ ତା' ଆଡ଼କୁ ଅନେଇ ଦେଇ ମୁହଁ ଥମ ଥମ କରି ଦିଅନ୍ତି । ଯେମିତି କି ଅବିକା ଗୋଟେ କାଳର ବଢ଼ି ଆସିଯିବ । ଏମିତି କି କାନ୍ଦି କାନ୍ଦି ଚେମା ମା' ବେଳେ ବେଳେ ଚେତା ହରେଇ ଦିଏ । ସବୁ ଲୋକ ସେଇଠି ଗଦା ହୋଇଯାଆନ୍ତି । ପାଣି ଛଟା ଛଟି କରି ସାଷ୍ଟାମ କରାନ୍ତି । ସେଇ ଚେମା ମା' କାନ୍ଦୁଚି । ଏଇବର୍ଷ ପହିଲୁ ସେ ରାସ୍ତାର ଧୂଳିଧାନ ପାଛୋଡ଼ିବା ଆରମ୍ଭ କରିଚି । ଧାନ ପାଚି କଳେଇ ବୁହା ବେଳକୁ ଏ ଗଣତନ୍ତ ଦେଶର ପାକଲା ବୁଢ଼ୀ ମା'ଙ୍କ ଦାନ୍ତକୁ ଦାନ୍ତ ବାଜିଯାଉଥିବା ଶୀତର ଥୁରୁ ଥୁରୁ ସକାଳୁ ହାତରେ ବାଡ଼ି, କୁଲା ଆଉ ଟୋକେଇ ଧରି ବାହାରି ଯିବାକୁ ପଡ଼େ କଳେଇ ଭାର ଓ ଛେଲା ବଳଦ ଯିବା ଆସିବା କରୁଥିବା ରାସ୍ତାଗୁଡ଼ିକ ଉପରକୁ । ନିଜ ନିଜ ବ୍ୟକ୍ତିଗତ ଉପଲବ୍ଧିର ସ୍ତରକୁ ହାତରେଖା ଓ କପାଳରେ ଧରି ଜୀବନକୁ ଗଡ଼େଇନେବାକୁ ଦେଉଥିବା ଗଣତନ୍ତ ଅବଶ୍ୟ ଏହି ପାକଲା ବୁଢ଼ୀମାନଙ୍କର ଶେଷ ଦିନ ଗୁଡ଼ିକରେ ସେମାନଙ୍କୁ ସାର୍ବଭୌମ ଭିକାରି କରି ଗଢ଼ିବାରେ ସାହାଯ୍ୟ କରେ । ଚେମା ମା' କାନ୍ଦୁଚି ଏଥିପାଇଁ ଯେ ତା ନିଜ ଜମି ପାଖଦେଇ ଯାଇଥିବା ରାସ୍ତାରେ ଆଜି ତାକୁ ବସିବାକୁ ପଡ଼ିଚି । ଗଲା ସନ ସେ ଜମିଟି ତାର ଥିଲା । ଏବର୍ଷ ନଟିଆ ମହାନ୍ତିର । ହଠାତ୍‌କରି ସେ ଚିହିଡା ଛାଡ଼ିଲା, କି, କିରେ ଅଲ୍‌ପେଇସ ଛୁଆ, ମୋ ଜମିରୁ ଧାନ ଟୁଙ୍କି ନଉଚ କାହିଁକି ? ଆଏଁ ! ବନ୍ଧା କଳେଇର ଅଗ ଟୁଙ୍କି ନଉଚ, ତମକୁ ସବୁ ବିଧାତା ଛାଡ଼ିଲାଣି କି ?

ଧାନର ଅଗ ଟୁଙ୍କି ନେଇ ଯାଉଥିବା ପିଲାଙ୍କ ଭିତରୁ ବଗୁଲିଆ ବାଇନ ଝପଟି ଆସିଲା ଚେମା ମା' ପାଖକୁ । ଦାଣ୍ଡିକି ଦି'ପଦ ଶୁଣେଇ ଦେଲା, ଏ ବୁଢ଼ୀଟା ବଡ଼

କୁନ୍ଦୁରି ! କିଲୋ ଚେମା ମା, ଏଟା କ'ଣ ତୋ ଜମି କିଲୋ ! ତୁ କ'ଣ ନାଗି ଆମକୁ ଗାଳି କରୁଚୁ । ଅନାନି, ଦେମି ଦି ପଦ୍ ସଲଖେଇ, ଜାଣିଥା । ରାଗରେ ଗର ଗର ହେଇ ବାଇନ ଚାଲିଗଲା । ଗୀତ ଗାଇ ଗାଇ ଧାନ ଅଗ ଟୁଙ୍କିବାରେ ଲାଗିଲା । ଚେମା ମା ସେମିତି ଚାହିଁ ରହିଲା । ହାତର କୁଲାଟା ସେମିତି ଥିର୍ ହେଇଗଲା । ଆଖି ଆଗରେ ବୋଝେ ଅନ୍ଧାର କୁଢ଼େଇଗଲା । ଗତସନ ପା' ସେ ଜମିକୁ ସେ ବିକି ଦେଇଚି । ଏବେ ବି ତାର ବୋଲି ସେ ହଉଚି କାଁ ? ଜମିର ହକ୍ ଦାବି ହସ୍ତାନ୍ତର ହେଇଯାଇଚି ସତ, କିନ୍ତୁ ପ୍ରାଣର ଅନ୍ତରଙ୍ଗ ମମତାର ଅଧିକାର ଆହୁରି ଶେଷ ହେଇ ଯାଇନାହିଁ । ସେ ଜମିକୁ ନିଜର ବୋଲି ଚିନ୍ତା କରିବାକୁ ଯାଇ କେତେ ବଡ଼ ଭୁଲ୍‌ଟାଏ ସେ ନ କରିଚି !

ଦି ସନ ତଳେ ଚେମା ମା' ଏଇ ଅମଳ ସମୟରେ ଧାନ ସାଉଁଟି ବାହାରି ଥିଲା ଯେ ଚେମା ତା ମାଆ ହାତରୁ ଡାଲା ଛଡ଼େଇ ନେଇଥିଲା । କହିଥିଲା, ମାଗି, ସାଉଁଟି କାହାର କେବେ ପେଟ ପୁରିଚି ମାଆ ! ଯେତେବେଳେ ମୁଁ କିଛି ବୁଝିପାରୁ ନଥିଲି, ସେତେବେଳେ ତୁ ଏସବୁ କାମ କରି ଆସୁଥିଲୁ । ଏବେ ଆଉ ମୋତେ ଏ ସବୁ ଭଲ ଲାଗୁନି । ପୁଅର ରୁଚିକୁ ସେ ଦିନ ମାନି ନେଇଥିଲା । କିନ୍ତୁ ଆଜି ଆଣ୍ଠେଇ ଆଣ୍ଠେଇ ଧାନ ସାଉଁଟିବା ତା ପକ୍ଷେ ଏତେ କଷ୍ଟ ଯେ ଶେଷରେ ରାସ୍ତାର ଧୂଳିଗୋଡ଼ି ମିଶା ଧାନ ପାଛୋଡ଼ିବାକୁ ପଡୁଚି । ଆହା, ଚେମା ମା କାନରେ ଖାସ୍ ପେଚାରଡି ଶୁଭୁଚି । କୁଲାରୁ ବଡ଼ ବଡ଼ ଗୋଡ଼ି ବାଛିବାରେ ଲାଗିଲା । କାନ୍ଧରେ ଧାନ ଅଖା ପକାଇ, ଗୌଣି, ଝାଡୁ, ପହଁରା ଧରି, ପାନକଳେ ଜାକି ଧରି ଡଗ ଡଗ ପହଞ୍ଚିଲା ସୁଜି । ଚେମା ମା' ହାତରୁ କୁଲା ଛଡ଼େଇ ନେଇ ତର ତର କରି ଧାନରୁ ଗୋଡ଼ି ବାଲି ବାଛି ଦଉ ଦଉ କହିଲା, ଚେମା ବୋଉ, ଆସି ବେଳ ଓଟା ହେଲାଣି, ଚାଲ । ଏକ ସକାଳ ପହରୁ ଆଇଲୁଣି ଯେ ଜମା ଏଇ ଅଧଗଉଣୀଏ ଧାନ କରିଚୁନାଲୋ ? ସୁଜି ବଡ଼ ରାହାବାଳୀ । ଏଇ ଗାଁର ଝିଅ । ଏଇ ଗାଁର ବୋହୂ । ଜଣ ଜଣ କରି ଚାରି ଜଣ ଘରଜୋଇଁଆ ଆଣି ରଖିଲା ସୁଜି ବୋଉ । କିନ୍ତୁ ଶେଷକୁ ସୁଜି ଘଇତାପାଲଟି ସେମାନଙ୍କୁ ଘଉଡ଼ାଇ ଦେଲା । ତା' ପାସଙ୍ଗକୁ କୁଆଡ଼େ କେହି ମର୍ଦ୍ଦ ତାଳ ଦେଇପାରିଲେନି । ଏଇ ତିନି ବର୍ଷ ହେଲା ସୁଜି ବାହାରେ ଚରିବୁଲି ଖାଉଚି । ପଇସା ରୋଜ୍‌ଗାର କରୁଚି ବି । ଏକାଏକ୍ ସୁଜି ଦୁଇ ତିନିଟା ମର୍ଦ୍ଦଙ୍କୁ ଟେକି ଫୋପାଡ଼ିଦେବ । ଏତେ ବଳ ତାର । ଦି'ବର୍ଷ ହେଲା ତାର ପୁଅଟିଏ । ବେଧଛୁଆ । କା 'ଠୁଁ' ହେଇଚି କିଆଣି ? ତା ସାଙ୍ଗରେ ଟିକଲ କାଢ଼ିନେ କହିବ, ଆମ ଗାଁରେ ପାଣିଆ ମର୍ଦ୍ଦଟେ କିଏ ଅଛି ବା ? କିଏ ଛାତିରେ ହାତ ଦେଇ କହିବ ଆସୁନି ! ଏଇମିତି ଟିଟ୍‌କାରୀ ମାରି କହିବ । କାମ

ଦାମରେ ଭାରି ଫରୁଆଡ଼୍ ସେ । ଚେମା ମା'ର ଧାନରୁ ଗୋଡ଼ ବାହାର କରି ତା ଗୌଣୀରେ ଧାନ ପକାଉ ପକାଉ କହିଲା, କିଲୋ ଚେମା ବୋଉ, କାଆ ନ ରାବୁଣୁ ଅଇଲୁଣି ତ, ଅଧଗଉଣିଏ ଧାନ କରି ପାରିନୁ? କିମିତିଆ ପାଛୁଡୁଚୁ କି?

ଚେମା ମା' ବି ବୁଝିପାରେନି । ଅନ୍ୟମାନଙ୍କର ଏତେ ଏତେ ଧାନ ଦେଖି ସେ ତାଟକା ହେଇଯାଏ । ସମସ୍ତଙ୍କ ଆଗରୁ ସେ ଆସୁଚି । ସମସ୍ତଙ୍କ ପଛରେ ସେ ଘରକୁ ଫେରୁଚି, ଅଥଚ ତାର ଏତେ କମ୍ ଧାନ କାହିଁକି? ସେ ତ ମୋଟେ ଥକ୍କା ନଉନି କି ହାତ ବନ୍ଦ କରୁନି । ଯାର ଗୁମର ସେ କିଛି ବୁଝିପାରେ ନାହିଁ । ଆଶ୍ଚର୍ଯ୍ୟର ନହଡ଼ିଟିଏ ତାର ମୁଣ୍ଡ ଡେଇଁ ଚାଲିଯାଏ । ସେ ଆଲୁବାଲୁ ଚିନ୍ତା କରେ । କୂଳକିନାରା ପାଏନି । ଏକଥା ସେ ସୁଜିକୁ ପଚାରିଲା । ସେ ଖେଁ ଖେଁ ହସିଲା । କହିଲା– ଦାଉଣୀରେ ତୁ ନୂଆ ଯୋଖୀ ହେଇଚୁ । ଆଗ ପତୁଳିରେ ତିନି ଚାରି ଘେରା ବୁଲିଆ । ବଳେ ଜାଣିଯିବୁ କେତେ ଜୋର୍‌ରେ ଧାଇଁତେ ପଡ଼ିବ । ବୁଝିଲୁ ଚେମାବୋଉ, ସବୁ କାମରେ ଆଦବ କାଇଦା ରହିଚି । ଇମିତିକି ଭିକ ମାଗିତେ ଗଲେ ବି ତାର ଆଦବ୍ କାଇଦା ମାଲୁମ ଥିବା ଦର୍କାର । ନହେନେ ଭିକ ମିଳିବନି । ସେମିତି, ତୁ ରାସ୍ତା ଯେତେ ଖରକ, ଧାନ ସିନା ସେଠି ଝଡ଼ିଥିନେ ତୁ ପାଇବୁ । ସବୁଠୁଁ ସହଜ ଉପାୟ ହେଲା ଧାନ ବେଶି ଝଡୁଥିବା ଜାଗାରେ ବସିବା । ପୋଲ ପାଖରେ, ଗଡ଼ାଣିରେ, ଉଠାଣିରେ ଧାନ ବେଶି ଝମ୍‌କେ । ବେଶି ଝଡ଼େ । ତା ବହର ଯେ ପାଇଚି, ସେ ସେମ୍ତି ଜାଗା ବାଛି ବସୁଚି । ବୁଝିଲୁ?

ଚେମା ମା'ର ଆଖି ଖୋସିଗଲା । ଯା ଭିତରେ ବି ଏତେ ଗୁମର ଅଛି? ସେତ ଏତେ ଚିନ୍ତା କରିନି । ସୁଜି ଡାକିଲା, ହଉ, ଏବେ ଯିବା ଆଏ । କେତେ ଉଛୁର ହେଲାଣି । ଚେମା ମା' ବୋଝ, କୁଲା ସବୁ ଧରି ଛିଡ଼ା ହେଲା । ତା' ଆଖି ଫେରିଗଲା ତାର ସେ ପୁରୁଣା ଜମିକୁ । ବାଇନ ଆଉ କେତୋଟି ଛୁଆଙ୍କୁ ଧରି ଧାନ ଟୁଙ୍କିବାରେ ବେସ୍ତ । ଚେମା ମା'ର ପାଟି ଖଲ ଖଲ ହେଲା । କିନ୍ତୁ ଓଠକୁ ଓଠ ଜାବୋଡ଼ି ରଖିଲା । ଆଖିରୁ ବୁନ୍ଦେ ଗରମ ଲୁହ ନିଗିଡ଼ି ଆସିଲା । ବାଡ଼ିଧରି ଠିକେ ଠିକେ ଘରମୁହାଁ ହେଲା ।

× × × × × ×

ତାଟି ଖୋଲିଲାବେଳକୁ ଖାଁ ଖାଁ । ଦଣ୍ଡେ ଛିଡ଼ାହେଇ ପଡ଼ିଲା ଚେମା ମା । ଘରକୁ ଯିବାକୁ ଇଚ୍ଛା ହେଲାନି ମୋଟେ । ତାଟି ପାଖରୁ ପହ୍ଲାଟାକୁ ଆଖି ବୁଲାଇ ଆଣିଲା । ହାଡ଼ଭଙ୍ଗା ଦୀର୍ଘଶ୍ୱାସ ବାହାରି ଆସୁଚି । ପହ୍ଲପାଖରେ ଘରଟେ ତୋଳିଥିଲା ଚେମା । ଜମା ତିନିଦୁଆ କାନ୍ଥ ଦିଆହେଇଚି । ବର୍ଷା ପାଣିରେ ଭାଙ୍ଗିରୁଜି ଗଲାଣି । ନେଉଟିଆ ଶାଗତଳା ଦିଟା କରିଥିଲା ଚେମା । ମଞ୍ଜି ବୁଣିଥିଲା । ଗଜା ଉଠିଥିଲା ବାସ୍ ସେଇଠୁ

ଶେଷ । ଆ'... ମୋ ଚେମାରେ..., ଧାଇଁଗଲା ଚେମା ମା । ଅର୍ଗଳି ପିଣ୍ଡା ଉପରେ କଚ୍‌କିନା ବସି ପଡ଼ିଲା । ଧାନ ଗଉଣିରୁ ଧାନଗୁଡ଼ାକ ବିଛୁରି ପଡ଼ିଲା । ଚାରିଆଡ଼ । ହେଇତ, ମୋ ଚେମା ଶାଗତଳାରେ ପାଣି ଛିଞ୍ଚୁଚି! 'ରେ ଚେମା...' । ଚେମା ମା' ଦାଣ୍ଡିଆ ମାରିଗଲା କ୍ଷଣିକଲାଗି । ତା'ପରେ ଛାଡ଼ିଲା ଗାଳି, ହା ଡାଙ୍କୁଣିଖିଆ, କୁଷ୍ଠବ୍ୟାଧିଆ ଗୁଡ଼ାକ, ତମକୁ ସବୁ ସାପ ଖାଉନାଇଁ ନା? ତମ ମୁଣ୍ଡରେ ବଜ୍ର ପଡୁନାଇଁ ନାଁ? ତମ ମାଇପି ଝିଅଙ୍କୁ କେ ରାତିଅଧିଆ ଟେକି ନଉନାଇଁ ନା? ତମେ ସବୁ ଅର୍ଦ୍ଧବୁର୍ଷୁଳିଆ ହେଇ ମରରେ... । ପୁଷୁନାହରା ପୁଅକୁ ମୋର ମାରି ମାରି ମାରି ଦେଲରେ ଚଣ୍ଡାଳ! ମଲାପରେ ତମେ ସବୁ କୁକୁର ହେଇ ଜନ୍ମ ହୁଅରେ! ଚେମା ମା' ଲୋଟି ପଡ଼ିଲା ସେଇ ପିଣ୍ଡାରେ । ଖାଇବା ପିଇବା ସବୁ ସେଇଠି । ବାସ୍, ପଡ଼ି ରହିଲା ସଞ୍ଜ ପନ୍ତେ । ସାଇର ଝିଅ ଗଉରୀ ଆସି ଡାକିଲା, ନାନୀ, ଏବେ ଉଠ୍! ସଞ୍ଜ ହେଲାଣି ପା' ।

– ଏଁ, ସଞ୍ଜ ହେଇଗଲା? ଚେମା ମା' ପଚାରିଲା ।

– ହଁ ।

– ଅନ୍ଧାର ହେଇଗଲା ଲୋ ଝିଅ! ଯା' କହି ମୁଣ୍ଡ କୋଡ଼ିହେଲା ଚେମା ମା!

× × × × × ×

ଚେମା ମା' ଚେମାକୁ କହିଲା– ତୁ ତ ଏବେ ପାରିଲୁ । ମୁଣ୍ଡକୁ ହାତ ଲାଗିଲାଣି, ଏ ଅଧମାଣ ଜମିକୁ ସାହାରା କରି କିମିତି ଆମେ ବଞ୍ଚିବା? ପୁଣି କେ ବର୍ଷ ଧୋଇ ତ କେ ବର୍ଷ ମରୁଡ଼ି । ତୁ ଗୋଟେ କାମ କର । ଏ ଗାଁରେ ଚୌଧୁରୀବାବୁ ଘର ଜମିଦାରୀ ଥିଲା ସମୟରେ ତୋ ବାପା ବାରବର୍ଷ ବୟସରୁ ଜୀବନସାରା ତାଙ୍କ ଘରେ ଖଟିଥିଲେ । ସେ ଚୌଧୁରୀବାବୁଙ୍କ ପୁଅ ଭୁବନେଶ୍ୱରରେ ବଡ଼ କଣ୍ଟ୍ରାକ୍‌ଟର ହେଇଚି । ବଡ଼ କୋଠାଘର । ବୁଢ଼ାବାବୁ ଆରପାରିକି ଗଲେଣି । ତୁ ସିଧାଯିବୁ । ତାଙ୍କ ପୁଅକୁ କହିବୁ, ମୋ ବାପା ତମ ବାପାଙ୍କ ଘରେ କାମ କରୁଥିଲେ । ମୁଁ ତମ ପାଖରେ କାମ କରିବି । ମୁଁ ସନା ପୁଅ । ମାଆ ପଠେଇଚି । ବୁଝିଲୁ? ସେ ତୋତେ ନିଶ୍ଚେ ... ପାଖରେ ଚାକିରି ରଖେଇଦବ!

ମାଆର ବୋଲ ମାନି ଚେମା ଭୁବନେଶ୍ୱର ଗଲା । କଣ୍ଟ୍ରାକ୍‌ଟର ଚୌଧୁରୀଙ୍କ ପାଖରେ ପହଞ୍ଚିଲା । ଚୌଧୁରୀବାବୁଙ୍କ କୋଠା ଦେଖି ସେ ତାଟକା ହେଇଗଲା । ଗେଟ୍‌ରେ ଲେଖାଥିଲା, 'କୁକୁରକୁ ସାବଧାନ' । ଗାଁ ଇସ୍କୁଲରେ ଚେମା ଯେତିକି ପାଠ ପଢ଼ିଥିଲା, ସେତିକି ବହି ପଢ଼ିବା ଲାଗି ଯଥେଷ୍ଟ ଥିଲା । କୁକୁରକୁ ସାବଧାନ କାହିଁକି? ନିଜର ଏମିତି ଏକ ପ୍ରଶ୍ନରେ ସେ ଦଣ୍ଡେ ଠିକା ମାରିଗଲା । ଗାଁରେ ତ କେତେ କୁକୁରଙ୍କୁ ନାଉ ମାରି ମାରି ସେ ଠିକଣା କରିଦେଇଚି । ଯାଙ୍କ କୁକୁରଟା ଆଉ

କେମିତିଆ କି? ଚେମା ମୋଟେ ଶଙ୍କିଲାନି। 'କୁକୁରକୁ ସାବଧାନ' ପ୍ରତି ବେପରୁଆ ଢଙ୍ଗ ଦେଖାଇ ଫାଟକ ଖୋଲି ଭିତରକୁ ପଶିଗଲା। ତିନିଚାରି ପାହୁଣ୍ଡ ଯାଇଚି କି ନା ଭୋ ଭୋ ଶବ୍ଦ କରି ଧାଇଁ ଆସୁଥିଲା ଭାଲୁଲୋମ ଭଳି ସାରା ଦେହରେ ଲୋମ ଓହଳି ପଡ଼ିଥିବା କଳା ମଚ୍ ମଚ୍ କୁକୁରଟାଏ। ତା'ର ଆଖି ଜଳୁଥିଲା। ଯେମିତିକି କୁକୁରଟା ବହୁଦିନଧରି ଅପେକ୍ଷା କରିଥିବା ନିଜସ୍ୱ ସ୍ୱାଧୀନତାକୁ ଜାହିର କରିବ। ନିଜ ଇଚ୍ଛା ମୁତାବକ ଜଣକୁ କାମୁଡ଼ିବ। ଚେମା ଖୁବ୍ ଡରି ଯାଇଥିଲା। ପିନ୍ଧିଥିବା ଲୁଗା ତିନ୍ତିଯିବା ଉପରେ। ସତକୁ କୁକୁରଟା ସେମିତିଆ ହେଇଚି। ନହେଲେ, ଖାଲି କ'ଣ ସାବଧାନ କରି ଦିଆ ହେଇଥାନ୍ତା ଫାଟକ ଖୋଲିବା ପୂର୍ବରୁ। କୁକୁରଟା ପାଖେଇ ଆସୁଚି। ହଠାତ୍ ଏକ ନାରୀକଣ୍ଠରୁ 'ପପୁ' 'ପପୁ' ଶବ୍ଦ ଆସିଲା। କୁକୁରଟି ସେଇଠି ନୀରବ ହେଇଗଲା। ରଙ୍ଗ ରଙ୍ଗ ଆଖି ମଉଳି ଗଲା। ବୁଲିପଡ଼ି ପପୁ ତାର କର୍ତ୍ତ୍ରୀ ନିକଟକୁ ଧାବମାନ ହେଲା। ଅବାକ୍ ଚେମା ଧୀରେ ଧୀରେ ପାହୁଲ ପକାଇ ଅଗ୍ରସର ହେଲା। ଯେମିତି କି ସେ ହଡ଼ିକାଠ ନିକଟକୁ ବଳି ପଡ଼ିବା ପାଇଁ ଯାଉଛି। ମୁହଁ ତଳକୁ ପୋତି ପୋତି। ସାମ୍ନାରେ ଛିଡ଼ା ହେଇଥିବା ତରୁଣୀ 'ପପୁ' ବୋଲି ହାତରେ ଧରିଥିବା ମାଂସ ଚପ୍‌ଟାଏ ନିଜର ଡାହାଣହାତି ପ୍ରାନ୍ତର ଆଡ଼କୁ ଜୋର୍‌ରେ ଫୋପାଡ଼ି ଦେଲା। ପପୁ ଧାଇଁଲା ମାଂସ ଚପ୍‌କୁ ଲକ୍ଷ୍ୟ କରି। ତରୁଣୀଜଣକ ବେପରୁଆ ଢଙ୍ଗରେ ପ୍ରଶ୍ନକଲା– କୁଆଡ଼େ, କାହାକୁ ଖୋଜୁଛୁ?

ପ୍ରଥମରୁ ତୁ, ତା ସମ୍ବୋଧନରେ ଚେମାର ମନ ଫିକା ପଡ଼ିଗଲା। ସେ ଝାଳନାଳ ହେଇପଡ଼ିଲା। କିନ୍ତୁ ସମ୍ଭାଳିଗଲା। ଚାକିରି ପାଇଁ ଆସିଚି ସେ। କହିଲା– ବାବୁଙ୍କ ପାଖକୁ ଆସିଚି। ଗାଁରୁ।

– କୋଉ ବାବୁ? ଏଠି ତ ସମସ୍ତେ ବାବୁ। ଆମର ଖାନସାମା, ଚାକରଙ୍କୁ ବି ଲୋକେ ବାବୁ ବୋଲି କହନ୍ତି। ତୁ କୋଉ ବାବୁଙ୍କୁ ଖୋଜୁଛୁ?

– ବଡ଼ବାବୁ। ଚୌଧୁରୀ ବାବୁ। ସେ କଣ୍ଟ୍ରାକ୍‌ଟର ଅଛନ୍ତି। ତାଙ୍କରି ଗାଁରେ ମୋର ଘର। ଆସିଚି ଚାକିରି ପାଇଁ। ମାଆ ପଠେଇଚି।

ତରୁଣୀ ସାମାନ୍ୟ ଉତ୍ତ୍ୟକ୍ତ ହେଲା। କହିଲା– ତୁ କ'ଣ ତାଙ୍କର ସମାସ୍କନ୍ଦ ଯେ ଚୌଧୁରୀ କଣ୍ଟ୍ରାକ୍ଟର ବୋଲି କହୁଚୁ? ଅସଭ୍ୟ, ଅଭଦ୍ରଟା ସେ ବାବୁ, ବଡ଼ ବାବୁ, ବୁଝିଲୁ?

ଚେମା ବା' ଜାଣନ୍ତା କିମିତି ଏତେ ଆଦବ କାଇଦା। ଚୌଧୁରୀବାବୁ, କଣ୍ଟ୍ରାକ୍ଟର ବାବୁ ବୋଲି କହିଲେ କ'ଣଟା କ୍ଷତି ହୋଇଗଲା। ସେ ବୁଝି ପାରିଲାନି। କେମିତିଆ କେଜାଣି ଏ ସହରୀ ନିୟମ। ଝିଅଟାର ବେକ୍‌ରୁ ପାଦଯାଏ ଲୋଟୁଥିବା ଜାମା ଖଣ୍ଡକର ନାଁ ତ ଏ ଯାଏ ସେ ଜାଣିନି। ଉଚ୍ଚା ଛାତି, ପିଚା ଓ ଜଙ୍ଘ ତ ଫୁଟିକି ଦିଶୁଚି। ଝିଅଟା ପଚାରିଲା– ଏଠି କି ଚାକିରି କରିବୁ?

ଚେମା ତତ୍‌କ୍ଷଣାତ୍ କହିଲା– ଗାଁରେ ଆପଣଙ୍କ ପୂର୍ବପୁରୁଷ ଜମିଦାରୀ ଥିଲା ବେଳେ ମୋ ବାଆ ସାରାଜୀବନ ଆପଣଙ୍କ ଘରେ ଖଟିଛି । ବା' ଆଉ ନାହିଁ । ଚାଲି ଗଲାଣି । ଗାଁରେ ତ ଆମର ଆଉ କିଛି ସମ୍ବଳ ନାହିଁ । ମାଆ କହିଲାରୁ ଆଇଚି । ଘରଦ୍ୱାର କାମ କରିମି । ବାବୁ ମୋତେ ରଖିବେ ନା?

ଝିଅଟା କିଛି ନ କହି କ'ଣ ଭାବିଲା କେଜାଣି ଆଉ ଗୋଟେ ମାଂସଚପ୍ ବାଁ ଆଡ଼କୁ ଜୋର୍‌ରେ ଫିଙ୍ଗିଦେଲା । ନିଜ ଉଦ୍ଦେଶ୍ୟରେ ଅଭିପ୍ରେତ ଏଇ ମାଂସଚପ୍‌ଟି ଭାବି କୁକୁର ପପୁ ଧାଇଁ ଯାଉଥିଲା । ହଠାତ୍ ଝିଅଟାର ଆବେଗପୂର୍ଣ୍ଣ 'ପପୁ' ଶବ୍‌ଦରେ ସେଇଠି ଠକ୍ କିନା ଛିଡ଼ାହୋଇ ପଡ଼ିଲା । ଏବଂ ଝିଅଟାର 'କମ୍ ହିଏର' ଆଦେଶରେ ଭୋକିଲା ଆଖିରେ ଫେରି ଆସିଲା ତା ମୁନିବ ନିକଟକୁ । ସେଠୁ ଝିଅଟା କହିଲା– ଧାଇଁଗଲୁ ସେ ମାଂସଚପ୍‌ଟା ନେଇ ଆସିବୁ । ଯେତେ ଜୋର୍ ପାରିବୁ ଦଉଡ଼୍ । ଗଲୁ ଦେଖି ।

କୁକୁର ପାଇଁ ଉଦ୍ଦିଷ୍ଟ ମାଂସଚପ୍ ସେ ଆଣିବ? ଯାହାପାଇଁ କୁକୁରଟା ଧାଉଁଥିଲା, ତା'ପାଇଁ ସେ ଧାଇଁବ? ସେ କ'ଣ କୁକୁର ପ୍ରତିଦ୍ୱଂଦୀ? ଚେମାକୁ ବଡ଼ ଖରାପ ଲାଗିଲା । କିନ୍ତୁ ସେ କ'ଣ କରିବ? ନୌକରୀ କରିବାକୁ ଆସିଚି । ହୁଏତ ଏଇଟା ତାର ପରୀକ୍ଷା ହେଇପାରେ । ସେଥିପାଇଁ ସେ ଧାଇଁଲା । ଖୁବ୍ ଜୋର୍‌ରେ । ପ୍ରାଣପଣେ । ତା' ଜୀବନରେ କେବେ ଏତେ ଜୋର୍‌ରେ ସେ ଧାଇଁ ନଥିଲା । ମାଂସଚପ୍ ତିନିଚାରି ହାତ ଅଛି ସେ ଶୁଣିଲା ସେଇ ଝିଅଟାର କଣ୍ଠ, ଛିଡ଼ା ହୁଅ ସେଇଠି । ଚେମା ଦମ୍‌କରି ଛିଡ଼ା ହୋଇ ପଡ଼ିଲା । ପୁଣି ସେଇ ଝିଅର ନିର୍ଦ୍ଦେଶରେ ସେ ଧାଇଁ ଧାଇଁ ଫେରିଆସିଲା । ଚେମା ଅନୁଭବ କଲା ସେଇ ଝିଅଟାର ସେ ଆଜ୍ଞାଧୀନ ହେଇ ପଡ଼ିଚି । ସେ କାହିଁ ମାଂସଚପ୍‌କୁ ତ ଛୁଇଁ ପାରିଲାନି? ଅନ୍ୟର ଆଦେଶରେ ସେ ଏଠି ଚଲାବୁଲା କରିବ । କାହିଁ ନିଜର ମର୍ଜି କୁଆଡ଼େ ଗଲା? ଝିଅଟା 'ପପୁ' ବୋଲି ଡାକି ମାଂସଚପ୍ ଆଡ଼କୁ ଆଂଗୁଠି ଦେଖେଇଲାରୁ ପପୁ ଧାଇଁଗଲା ତାର ପ୍ରିୟଖାଦ୍ୟ ଆଡ଼େ । ଚେମା ସେଇମିତି ଛିଡ଼ା ହେଇ ରହିଲା । ଭାବିଲା ସେଇଠି ବସିପଡ଼ିବ । କ୍ଳାନ୍ତି ମେଣ୍ଟେଇବ । କିନ୍ତୁ ପାରିଲାନି । ସେ ଅନୁଭବ କଲା ଯେମିତି ଏଠି ବସିବା, ଛିଡ଼ାହେବା, କଥାକହିବା ବି ନିଜର ମର୍ଜି ଅନୁଯାୟୀ ସଂଭବ ନୁହେଁ । ଅନ୍ୟର ଇଙ୍ଗିତ, ଅନ୍ୟର ଆଦେଶ ହିଁ ଏଠି ତାର ଜୀବନ ପାଲଟିଯିବ!

ଆଧୁନିକ ଧରଣର କାର୍‌ଟିଏ ଭିତରକୁ ପଶିଲା । ଜଣେ ଲମ୍ବାଚଉଡ଼ା ଆଚ୍ଛାଲୋକ କାର୍‌ରୁ ଓହ୍ଲାଇବା ସଙ୍ଗେସଙ୍ଗେ ଝିଅଟା 'ଡାଡ଼ି' 'ଡାଡ଼ି' ବୋଲି ଡାକି ଧାଇଁଗଲା ଏବଂ ଲୋକଟି ହାତରେ ଧରିଥିବା ଚୁରୁଟ୍‌କୁ ଟାଣିଆଣି ଗୋଟେ ଦମ୍ ନେଇଗଲା । ଚେମା

ଆକା ହୋଇ ଅନେଇ ରହିଲା । ସେ ଜାଣିପାରିଲାନି ଯେ ସେଇ ଭଦ୍ରଲୋକ ଜଣକ ତାର ମୁନିବ ଚୌଧୁରୀବାବୁ ବୋଲି । ଝିଅଟାର 'ଡାଡ଼ି' ଶବ୍ଦର ଅର୍ଥ ସେ ବୁଝିପାରି ନଥିଲା । ଚୌଧୁରୀବାବୁ ଅଳ୍ପଦୂରରେ ଛିଡ଼ା ହୋଇଥିବା ଗାଉଁଲୀ ଚେମାକୁ ଦେଖି କିଛି ବିସ୍ମୟ ପ୍ରକାଶ କରୁ କରୁ ଝିଅଟା କହିଲା, ତାକୁ ମୋର ନିଜର ଚାକର ରୂପେ ମନୋନୀତ କରିଛି । ଇଣ୍ଟରଭିଉ ବି ଶେଷ !

– ତୋର ଯାହା ପସନ୍ଦ ଲୀରା ! ଯା କହି କଣ୍ଟ୍ରାକ୍ଟର ଚୌଧୁରୀ ଇଙ୍ଗିତ କଲାରୁ ଚେମା ନିକଟକୁ ଆସିଲା । ଅତି ନିକଟକୁ ଯାଇପାରିଲାନି । କିଏ ଯେମିତି ବାଧା ଦେଲା । ଏଇ ଯେ ତାର ମୁନିବ ଚୌଧୁରୀବାବୁ, ଏମିତି ଏକ ଧାରଣା ତା ମନରେ ଆପେ ଆପେ ସୃଷ୍ଟି ହୋଇଗଲା ଏବଂ ସେ ନମ୍ରତମ ପାଦ ତଳେ ପଡ଼ିଗଲା ତା' ମାଆ କଥାକୁ ସ୍ମରଣ କରି । ମୁନିବଙ୍କ ମୁହଁରୁ ଉଠ୍ ବୋଲି ଶବ୍ଦ ନ ଶୁଣି ସେ ମନକୁ ଉଠିଲା ଏବଂ ଆମୂଳଚୂଳ ତାର ଗାଁରୁ ସହର ଆସିବା ବୃତ୍ତାନ୍ତ ବଖାଣିଗଲା । ଅଥଚ ସେ ଲକ୍ଷ୍ୟ କଲା ଚୌଧୁରୀଙ୍କ ମୁହଁରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରୁନଥିଲା । ଶେଷରେ ଚୌଧୁରୀ ଏକ ଗମ୍ଭୀର କଣ୍ଠରେ କହିଲେ– ମୋର କୌଣସି ଚାକର ବେଶି କଥାବାର୍ତ୍ତା କରିବା ମୁଁ ଚାହେଁନା । ଏତକ କହି ଚୌଧୁରୀ ଚୁରୁଟ୍ ଧଣି ଢଗା ଢଗା ପାଦରେ ଘର ଭିତରକୁ ଚାଲିଗଲେ । ଚେମାର ସେତେବେଳେ ମନେପଡୁଥିଲା ମାଆର କହିବା କଥା, ରଜା ହୋଇଥିବୁ, ନହେନେ ରଜାର ପାଖରେ ଥିବୁ । ଅଥଚ ଜ୍ଞାନ ସେଇ କଥାର ଅସଲ ଗୁମରକୁ ଚିହ୍ନିବାରେ ସେ ସକ୍ଷମ ହେଲା । ରଜାର ପାଖରେ ରହିବା କେତେ ଭୟଙ୍କର ।

× × × × × ×

ଲୀରା ଚେମାକୁ କହିଦେଲା, ତୋର ପୂର୍ବ ପରିଚୟ, ପୂର୍ବ ଇତିହାସ ଏଠି ସବୁ ମୂଲ୍ୟହୀନ । ତୁ ଆଜିଠୁଁ ଚେମା ନୁହେଁ, ସପୁ । ମୋର, କେବଳ ମୋର ଚାକର, ବୁଝିଲୁ ?

ଚେମା ଆଶ୍ଚର୍ଯ୍ୟ ହେଲାନି । କିନ୍ତୁ ଏକ ପରିଚିତ ଲୁପ୍ତ ମଣିଷର ଯନ୍ତ୍ରଣାରେ ସେ ଜଳିଲା । ତା'ର ମୁନିବ ଲୀରା କୁକୁରର ନାଁ ପପୁ ସହିତ ସମତାଳରେ ତାର ନାଁ ସପୁ ରଖିଥିବାରୁ ସେ ଭାବିଲା ମୁଁ ଗୋଟେ କୁକୁର ବ୍ୟତୀତ କ'ଣ ଆଉ କିଛି ନୁହେଁ ? ମୋର ପରିଚୟ କ'ଣ ପପୁ ଭଳି ଗୋଟେ କୁକୁରର ପରିଚୟ ? ତାର ରାଗ କ୍ରମଶଃ ବଢ଼ିଚାଲିଲା ପପୁ ଉପରେ । ପପୁ ଯେମିତି ଏଠି ତାର ଏକମାତ୍ର ପ୍ରତିଦ୍ୱନ୍ଦୀ !

× × × × × ×

ଏଣିକି ଚେମା ମନଇଚ୍ଛା କଥା କହିପାରୁନି କି ହସି ପାରୁନି । ଏଣିକି ଚେମା ନିଜର ମନଭାବକୁ ମୁହଁରେ ଫୁଟାଇ ପାରିବାର ସ୍ୱତଃସ୍ଫୂର୍ତ୍ତତା ହରାଇ ସାରିଲାଣି । ଏଣିକି ଚେମା ନିଜ ମୁନିବଠୁଁ ନିର୍ଦ୍ଦିଷ୍ଟ ଦୂରତାରେ ଛିଡ଼ା ହୋଇ ଅପେକ୍ଷା କରିବା

ଶିଖିଗଲାଣି । ଏଣିକି ଚେମାର ହାତ ଗୋଟେ ଏମିତି ଯନ୍ତ୍ର ପାଲଟି ଗଲାଣି ଯେ ସାଲ୍ୟୁଟ୍ ମାରି ସାରିବା ପରେ ସେ ଅନୁଭବ କରୁଛି ଯେ ସେ ଜଣଙ୍କୁ ସମ୍ମାନ ଦେଖାଉଚି । ଏଣିକି ଚେମା ଶବ୍ଦ ଓ ଭାଷାର ବ୍ୟବହାର ଭୁଲିଯାଉଚି । ଏକ ଭାବକୁ ଭାଷାରେ ଫୁଟାଇ ପାରିବାକୁ ସେ କ୍ରମଶଃ ଅକ୍ଷମ ହୋଇପଡ଼ଚି ଯେମିତି ! ସେ କଥା କହୁଚି କେଉଁଠି ଯେ ଭାଷା ତା' ପାଖରେ ବୋଲମାନି ରହିବ ? ତାକୁ ଯଦି କୁହାଯିବ ଗୋଟେ କୁକୁରର ଆତ୍ମକାହାଣୀ ବର୍ଣ୍ଣନା କରିବାକୁ, ତା' ଆଖି ଆଗରେ ସବୁ ଅନୁଭୂତି ଗୁଡ଼ିକ ଗୋଟି ଗୋଟି ହେଇ ନାଚିଯିବ ଅଥଚ ନିଜ ମୁହଁରେ ସେଗୁଡ଼ିକୁ ବର୍ଣ୍ଣନା କରିପାରିବ ନାହିଁ । ଦାସତ୍ୱର ଭାଷା ଦୁର୍ବଳ ! କ୍ରମଶଃ ନୀରବ ହେଇ ଆସୁଚି ମଣିଷର ଭାଷା ଯେମିତି ! କ୍ରମଶଃ ମଣିଷ ଯେମିତି ଗୋଟେ ଆଜ୍ଞାବହ କୁକୁରରେ ପରିଣତ ହେବାରେ ଲାଗିଚି । ପପୁକୁ ଦେଖିଲା ମାତ୍ରେ ସପୁ ବନାମ ଚେମା ଜଳି ଉଠେ । ରାଗିଯାଏ । ବିରକ୍ତ ହୁଏ । ଅଥଚ ନିଜର ମନର ଭାବକୁ ମୁହଁରେ ଫୁଟାଇ ପାରେନା । ମନର ଭାବକୁ ଭାଷାରେ ଫୁଟାଇ ପାରିଲେ ମଣିଷ କ୍ରମଶଃ ଜଡ଼ ହେବ କେମିତି ? ଅସତର୍କ ଭାବରେ 'ପପୁ' କିଛି କରି ବସିଲେ କି ଭୁକି ଦେଲେ ପଶୁ ହେଇଥିବାର ନ୍ୟାୟରେ ସେ ମାଫି ପାଇଯାଏ, ମାତ୍ର ସପୁର ଭାଗ୍ୟରେ ତାହା ନାହିଁ । ନିଜ ଅସତର୍କତା ପାଇଁ ମୁନିବଠାରୁ ସେ କେବେ ଦଣ୍ଡରୁ ଛାଡ଼ ପାଏ ନାହିଁ ।

ରାତି ହେଲେ ନିରୋଳାରେ ସପୁ ହେଇ ଉଠେ ଚେମା । ପରିବର୍ତ୍ତନର ଫର୍ଦ୍ଧ ଫର୍ଦ୍ଧ ଆଟୋପ୍ ତା ଦେହରୁ ଖସିଯାଏ । ସେତେବେଳେ ଚେମା ଅନୁଭବ କରେ ଚେମା ଓ ସପୁ ଭିତରେ ଥିବା ତଫାତ୍‌କୁ । ସେ ଆଶ୍ଚର୍ଯ୍ୟ ହେଇଯାଏ । ମନରେ ଉଙ୍କି ମାରୁଥିବା ସବୁ ଭାବନାର ଛାପ ମୁହଁରେ ବିଛେଇ ହେଇପଡ଼େ । ମୁହଁ ତାର ଆସ୍ୱାଭାବିକ ହେଇଉଠେ । ସେ ସେତେବେଳେ କୁଲୁରି ଉଠେ । ଦେହ ତାର ଶୀତେଇ ଉଠେ । ସେ ଚେମା ହେଇ ଯାଆନ୍ତା କି ସବୁବେଳ ପାଇଁ ! ଇଚ୍ଛା ହୁଏ ସେ ଏ ଚାକିରିକୁ ନାତ ମାରିଦବ । କିନ୍ତୁ ଯିବ କୁଆଡ଼େ ? ଗାଁରେ କରିବ କ'ଣ ? କ୍ରମଶଃ କୁକୁର ବନିଯାଉଥିବା ପରିଣାମରୁ ସେ ରିଆତି ପାଇବ ବା କେମିତି ? କିଛି କରିପାରେନା । ସକାଳ ହେଲାବେଳକୁ ସେ ଅନୁଭବ କରେ, ସେ ପୁଣି 'ସପୁ' ପାଲଟିଛି । ପପୁର ପ୍ରତିଦ୍ୱନ୍ଦୀ ! ଏକାଏକ୍ ପପୁର ସାମ୍ନାସାମ୍ନି ହେଲାବେଳେ ପାଖରେ ଆଉ କେହି ନଥିଲେ 'ସପୁ' ଚେମାର ରୂପ ଧାରଣ କରେ । ପପୁକୁ ଦେଖିଲାକ୍ଷଣି ତାର ମୁହଁ ଲାଲ ହେଇଯାଏ । ଏକ ଆସ୍ୱାଭାବିକ ବିରକ୍ତିରେ ସେ ପପୁକୁ ଘୂରି ଘୂରି ଚାହେଁ । ଚେମାର ଏଭଳି ମୁହଁ ଦେଖି ପପୁ ସହ୍ୟ କରିପାରେନା । ସେ ଭୁକି ଉଠେ । ଏବଂ ଚେମା ପୁଣି ସପୁର ଅବସ୍ଥାକୁ ଫେରି ଆସିଲେ ପପୁ ଲାଙ୍ଗୁଡ଼ ହଲାଇ, ମୁହଁ ତଳକୁ ପୋତି ଚାଲିଯାଏ ।

ଚେମା ସବୁବେଳେ ମନେ ମନେ ଭାବିଛି ଏ ପ୍ରତିଦ୍ୱନ୍ଦିତାରୁ ମୁକ୍ତ ହେବ ବୋଲି । କିନ୍ତୁ ପାରିନି । ତାକୁ ଜବରଦସ୍ତି ଗୋଟେ କୁକୁରର ପ୍ରତିଦ୍ୱନ୍ଦୀ କରିଦିଆଯାଇଚି । ଏବଂ ଏ ପ୍ରତିଦ୍ୱନ୍ଦିତାର ବିରାମ ନାହିଁ । ଶେଷ ନାହିଁ ।

× × × × × ×

ଦିନ ସରି ସରି ଆସୁଚି । ସଞ୍ଜ ହେଇ ହେଇ ଆସୁଚି । ସପୁ ଦେଖିଲା ତାର ମୁନିବ ଲୀରା ଅନୁପସ୍ଥିତ । ସବୁ କୋଠରୀ ଖୋଜି ଆସିଲା । କୋଉଠି ପାଇଲାନି । ପୂର୍ବ ପ୍ରସ୍ତୁତ କୌଣସି ରୁଟିନ୍ ବି ଏବେ ନାହିଁ । ସେ ଆଶ୍ୱସ୍ତ ହେଲା । ମନଟା ତାର ହାଲକା ହେଇଗଲା । କିଛିଟା ଆନନ୍ଦ ଓ ଆସକ୍ତିରେ ଚେମା ବଗିଚା ଭିତରକୁ ପ୍ରବେଶ କଲା । ଅନେକ ସମୟରେ ତାର ମନକୁ ବହଲେଇବା ପାଇଁ, କ୍ଷଣିକ ପାଇଁ ହଉ ବରଂ ଚେମା ବଗିଚାକୁ ଚାଲିଯାଏ । ଫୁଲମାନଙ୍କୁ ନିରେଖି ନିଜେ ହଜିଯାଏ । ବେଳେ ବେଳେ ଫୁଲମାନଙ୍କୁ କହେ, ଓ ଫୁଲମାନେ, ତମେମାନେ ବି କୁକୁର ପାଲଟି ଯାଉଚ ! ମୁନିବ ତୁମକୁ ଯେମିତି ବଢ଼େଇବ, ତମେ ସେମିତି ବଢ଼ିବ । ଯେମିତି ସଜେଇବ, ସେମିତି ସଜେଇହବ ! ତା ସତ୍ତ୍ୱେ ବି ଭାବେ ଫୁଲର ହସ, ତାର ଦୋଳିଖେଳକୁ ବି ତା ମୁନିବ ଅକ୍ତିଆର୍‌ରେ ରଖିପାରୁନି । ପବନ ସହ ମନଇଚ୍ଛା ସେମାନେ ଖେଳ ପାରୁଛନ୍ତି, ଅଥଚ ମୁଁ କ'ଣ ଫୁଲ ସହିତ ତୁଳନୀୟ ନୁହେଁ ! ତାଠୁଁ ବି ହୀନ । କେବଳ ଫୁଲଙ୍କର ନିଚୋଳ ଅକୃତ୍ରିମ ହସ ଓ ଖେଳକୁ ଦେଖି ନିଜେ ସ୍ୱାଧୀନ ହେବାର ସ୍ୱପ୍ନ ଦେଖିବା ଲାଗି ଚେମା ଚାଲିଯାଏ ବଗିଚାକୁ ।

କିନ୍ତୁ ଏବେ ସେ କ'ଣ ଦେଖୁଚି ଆଗରେ ? ସେ ହତଭମ୍ବ ହେଇ ପଡ଼ିଲା । ଲୀରା ଉଭା ନଙ୍ଗଳା । ତା' ପାଖରେ ଶୋଇଚି ଜଣେ ଅଜଣା ଯୁବକ । ସେ ବି ସେମିତି ପୂରା ନଙ୍ଗଳା । ପରସ୍ପର କୋଳାଗ୍ରତ । ଏ ଦୃଶ୍ୟ ଦେଖି ଚେମା ପଛକୁ ବୁଲି ପଡ଼ିଲା ସତ । କିନ୍ତୁ ତା ଦେହରେ ଗରମ ହାୱା ଲାଗିଗଲା ଯେମିତି ! ସେ ପୁନର୍ବାର ମୁହଁମୋଡ଼ି ସେ ଦୃଶ୍ୟ ଦେଖିବାକୁ ମନବଳେଇଲା । କିନ୍ତୁ ସେ ପାରିଲାନି । ସେ ଚେମାରୁ ସପୁ ପାଲଟିଗଲା ଏବଂ ନୀରବରେ ଫେରି ଆସୁଥିଲା । ପଛଆଡୁ ଲୀରାର ସପୁ ଡାକରେ ସେଇଠି ଛିଡ଼ା ହେଇପଡ଼ିଲା । ଲୀରା ଓ ଅଚିହ୍ନା ଯୁବକ ଦୁହେଁ ନିଜ ନିଜର ପୋଷାକ ପିନ୍ଧି ବାହାରି ଆସିଲେ । ଲୀରା କହିଲା, ବଗିଚାକୁ ବୁଲିବାକୁ ଆସିଥିଲୁ ? ସପୁ ନୀରବ ରହିଲା ମୁହଁ ତଳକୁ ପୋତି ।

ଅପରିଚିତ ଯୁବକ ଜଣକର ପ୍ରଶ୍ନ – ଏ କିଏ ?

ଲୀରା ଉତ୍ତର ଦେଲା, ସପୁ !

– ସପୁ ?

– ହଁ । ଗୋଟେ ପପୁ, ଏ ସପୁ । ବୁଝିଲ ଅଶୋକ, କିନ୍ତୁ ତଫାତ୍‌ଟା ଏତିକି- ପପୁ ତୁମକୁ ଦେଖି ଭୁକିଥାନ୍ତା, କିନ୍ତୁ ସପୁ ସେତକ କରି ପାରିବନି । ଦୁହେଁ ହସ୍‌ଗୁଲ୍ ହେଇ ଚାଲିଗଲେ । ସପୁ ଚିନ୍ତାରେ ଘାରିହେଲା । ପପୁ କୁକୁରଠାରୁ ସେ ବି ହୀନ? ପପୁର ଭୁକିବାର ସାମର୍ଥ୍ୟ, ସ୍ୱାଧୀନତା ଅଛି, ଅଥଚ ତା'ର ସେମିତି କିଛି ସ୍ୱାଧୀନତା ବି ନାହିଁ । ସେ ଲୀରା ଆଗରେ ଏତେ ଛୋଟ, ଏଡ଼େ ଗୁରୁତ୍ୱହୀନ ହେଇଚି ଯେ ଅନ୍ତତଃ ପରପୁରୁଷ ସହ ପ୍ରଣୟଲିପ୍ତ ଥିବାର ସେ ଦେଖିଥିଲେ ସୁଦ୍ଧା ଲୀରା କହିଲାନି– ସପୁ, ତୁ କିଛି ଜାଣିନୁ, କିଛି ଦେଖିନୁ, ହେଲା? ଏତକ ବି ତ କହିଲାନି । ସେ ଏତେ ଗୁରୁତ୍ୱହୀନ? ଆଁ ଡ଼ା ରକ୍ତର ପିତୁଳି ପଡୁଚି ତା ଶରୀର । କ'ଣ ଏକ ଅବାରିତ ଯୌନଯୁଗର ଅପେକ୍ଷ ମାଣ ଏ ଶତାବ୍‌ଦୀ?

ବଗିଚାକୁ ପ୍ରବେଶ କଲା ଚେମା । ଯେଉଁଠି ଲୀରା ଘାସ ଉପରେ ନିଜର ପୁରା ଖୋଲା ଅବୟବ ଗୁଡ଼ିକୁ ଲୋଟେଇ ଦେଇଥିଲା, ସେଇଠି ଛିଡ଼ାହେଲା । ସାମ୍ନାରେ ଲୀରାର ସମସ୍ତ ମୁକୁଳା ଅବୟବ ସପୁର ଆଖିକୁ ରଙ୍ଗିଡ଼ିଆ କରିବାରେ ଲାଗିଲା । ସପୁ ସେଇଠି ଚେମା ହେଇଗଲା । ଦେହର ପ୍ରତି ଅଙ୍ଗରେ ଶିହରଣ ଖେଳିଗଲା । ଫୁଲ ଗୁଡ଼ିକ ତା' ଆଗରେ ଖୁବ୍ ବିଶ୍ୱସ୍ତ ହେଇ ଉଠିଲେ । ଚେମା ଏକ ଅକୁଣ୍ଠ ଉଲ୍ଲାସରେ ପୂର୍ବରୁ ଲୀରା ଶୋଇଥିବା ଘାସର କଅଁଳ ଶେଯ ଉପରେ ଗଡ଼ିବାରେ ଲାଗିଲା !

× × × × × ×

ଏଣିକି ସପୁ ବାରମ୍ବାର ଚେମାରେ ପରିଣତ ହେଇଯାଉଚି । ତାର ମୁନିବ ଲୀରାକୁ ସାମ୍ନାସାମ୍ନି ଦେଖିଲେ ତାର ମୁହଁ ତଳକୁ ହେଇଯାଉଚି । ସେ ମୁହ ଟେକି ସ୍ପଷ୍ଟ ଚାହିଁ ପାରୁନି । ସାମ୍ନାସାମ୍ନି ନଥିଲେ ଚେମା ଲୀରାକୁ ଗହିରେଇ ଦେଖୁଚି । ଯେତେବେଳେ ଦେଖୁଚି, ସେତେବେଳେ ସେ ଦେଖୁଚି ଲୀରା ଯେମିତି ଏବେ ବି ପୁରା ନଙ୍ଗଳା । ସେଇଠି ତା ମୁହଁ ବିର୍କିଟେଇ ଉଠେ । ହଠାତ୍ ତାର ମନେ ପଡ଼ିଯାଏ, ସେ ପପୁ । ତା ମୁହଁରେ ତା ମୁନିବ ପ୍ରତି ଏତେ ଘୃଣାର ଭାବ ଫୁଟିବା ଅନୁଚିତ୍ । ସେ ପୁଣି ଇଚ୍ଛା କରି ଜବରଦସ୍ତ ମୁହଁକୁ ସରଳ କରିନିଏ ।

ସଞ୍ଜ । ଚେମା ବଜାରରୁ ଲୀରାର ଟଏଲେଟ୍‌ସ କିଣି ପହଞ୍ଚିଲା । ଲୀରାକୁ ସେ ସେସବୁ ଦେଇଦେବା ପାଇଁ ଗଲାବେଳେ ଦେଖିଲା ଲୀରା ପଲଙ୍କରେ ଶୋଇଚି ଆଖି ମୁଦିଚି । ସେ ଶୋଇ ପଡ଼ିଚି ବୋଲି ଭାବି ଚେମା ଟଏଲେଟ୍‌ସ ଗୁଡ଼ିକ ଟେବୁଲ ଉପରେ ଥୋଇଦେଲା ଏବଂ ବାହାରି ଆସିଲା ବେଳକୁ ଲୀରା କହିଲା– ସବୁ ଆଣିଛୁ ସପୁ?

ଚେମା ଚମକି ପଡ଼ିଲା । ଦେଖିଲା ଲୀରା ନିଦରେ ଶୋଇନାହିଁ । ହୁଏତ କ୍ଳାନ୍ତି ମେଣ୍ଟାଉଚି ବା ଦେହ ଖରାପ ଅଛି । ଉତ୍ତର ଦେଲା– ହଁ, ଆଣିଚି । ଆପଣଙ୍କର ଦେହ ଭଲ ନାହିଁ? ଡାକ୍ତରଙ୍କୁ ଡାକିବି?

– ନା, ଥାଉ । ଦେହ ହାତ ଭୀଷଣ କ୍ଳାନ୍ତ । ଗୋଡ଼ ଘଷିଦେବୁ ସପୁ?

ଚେମାକୁ ଖରାପ ଲାଗିଲା । ଶେଷରେ ଗୋଡ଼ ମୋଡ଼ିବା କାମ କରିବ, ଯାହା କୁକୁର ପପୁ ବି କରେନା । କିନ୍ତୁ ନାଚାର, ହଁ ଭରିଲା ଏବଂ ଲୀରାର ଗୋଡ଼ ଘଷିଦେବାକୁ ଲାଗିଲା । ଗୋଡ଼ ଘଷି ଦେଲାବେଳେ ଚେମା ଦେହରେ ଏକ ଅପୂର୍ବ ପୁଲକ ଅନୁଭବ କଲା । ଯେଉଁ ଲୀରାକୁ ଦେଖିଲେ ତା ମନରେ ଘୃଣା ଜାତ ହେଉଥିଲା, ଏବେ ସେଇ ଲୀରାର ଗୋଡ଼ ମୋଡ଼ିଦେବାବେଳେ ତାକୁ କେମିତି ଏକ ଆଶ୍ଳେଷ ଜାବୋଡ଼ି ଧରୁଚି । ଘୃଣା ଉଭେଇ ଯାଉଚି । ମଣିଷର କୁକୁରତ୍ୱ ବି ଏତେ ଆନ୍ତରିକ ଭାବରେ ଘନେଇ ଉଠେ । ଠିକ୍ ମିଠା ବିଷ ଖାଇଲା ବେଳେ ପାଟି ସ୍ୱାଦୁପୂର୍ଣ୍ଣ ହେଇଗଲା ଭଳି !

– ଲାଇଟ୍‌ରେ ମୁଣ୍ଡ ବେଶି ବିନ୍ଧୁଛି । ଯା କହି ଲୀରା ବେଡ୍‌ସୁଇଚ ଅଫ କରି ଦେଲା ଏବଂ ସପୁକୁ ଟାଣିଲା ନିଜ ଆଡ଼କୁ । ଅନ୍ଧାର ଗହୀରରୁ ଗହୀରତର ହେଲା । ସପୁ ଏକ ସଦ୍ୟକିଣା ହେଇ ଆସିଥିବା ଖେଳଣା ପରି ଜୋର୍‌ରେ ନାଚୁଥିଲା ଲୀରା ହାତରେ ।

କିଛି ସମୟ ପରେ ସେଇ ଅନ୍ଧାର ଘରୁ ସପୁ ପଦାକୁ ବାହାରି ଆସିଲା ବେଳକୁ ସେଠି ପହଞ୍ଚି ସାରିଥିଲା ପପୁ । ସପୁର ବିରକ୍ତିପୂର୍ଣ୍ଣ ମୁହଁକୁ ଦେଖି ସପୁ ଭୋ ଭୋ ଭୁକି ଉଠିଲା । ସେ ପପୁକୁ ଗହିରେଇକି ଚାହିଁଲା । ପପୁ ସେମିତି ଭୋ ଭୋ ଭୁକୁଥିଲା । ସପୁ ଭାବିଲା– ମୁଁ ତୋ ଭଳି ହେଲେ ଭୁକିପାରନ୍ତି କି? ନିଜର ଇଚ୍ଛାକୁ ଜାହିର କରି ପାରନ୍ତିକି? ମୁଁ କ'ଣ ପାରିବିନି? ମୁଁ ଏଡ଼େ ନିର୍ଜୀବ, ଅଥର୍ବ? ଯା ଭାବି ଏକ ଉଦ୍‌ବେଗରେ ସପୁ କୁକୁର ଭଳି ଭୁକି ଉଠିଲା । ଭୋ, ଭୋ, ଭୋ !

ତାରି ତାଳରେ ସପୁ ଭୋ' ଭୋ' ଭୁକୁଥିବା ଦେଖି ପପୁ ଆହୁରି ଜୋର୍‌ରେ ଭୁକିଲା । ଭୋ' ଭୋ ।

ସପୁ ଭୁକିଲା – ଭୋ' ଭୋ !

ପପୁ ଭୁକିଲା – ଭୋ, ଭୋ !

ସପୁ ଭୁକିଲା – ଭୋ, ଭୋ !

ପପୁ ଭୁକିଲା – ଭୋ, ଭୋ !

ପପୁ ଓ ସପୁର ପ୍ରତିଦ୍ୱନ୍ଦ୍ୱିତା ଘନେଇ ଆସିଲା । ଲୀରା ଘରୁ ଉଠିଆସି ଗୋଟେପଟେ କୁକୁର, ଅନ୍ୟପଟେ ମଣିଷରୂପୀ କୁକୁରର୍ ପ୍ରତିଦ୍ୱନ୍ଦ୍ୱିତାରେ ହସି ଉଠିଲା । ପରିଣତିରେ ପପୁ ସପୁ ଉପରକୁ ରାଗରେ ଲମ୍ଫ ପ୍ରଦାନ କରିବାକୁ ଉଦ୍ୟତ ହୁଅନ୍ତେ ଲୀରା ଡାକିଲା । ପପୁ, . ପପୁ !

ପପୁ ଆକ୍ରମଣରୁ କ୍ଷାନ୍ତ ହେଲା ଏବଂ ସପୁ ଲମ୍ବ ଲମ୍ବ ପାଦ ପକାଇ ବାହାରକୁ ପଳାଇ ଆସିଲା । ନିଅନ୍ ଆଲୁଅରେ ଲନ୍‌ଟା ତାକୁ ଫୁଲଘେରା ମଶାଣି ଭଳି ପ୍ରତୀୟମାନ ହେଲା । ଫୁଲ, ଗଛ, ବଗିଚା, ଲନ୍, ଆଲୁଅ, ସମସ୍ତେ ଯେମିତି ତା ଆଖିରେ ଗୋଟେ ଗୋଟେ କୁକୁର ! ସତକୁ ସତ ସେ ଆଜି କୁକୁର ପାଲଟି ଗଲା ? କୁକୁର ଭଳି ଭୁକିଲା ? ଯା କେମିତି ସମ୍ଭବ ହେଲା, ସେ ବୁଝିପାରିଲାନି । ଗାଁରେ ଥିଲାବେଳେ ସେ ବି କୁକୁର ଭଳି ଭୋ' ଭୋ' ଅନେକ ଥର ଭୁକିଚି । କିନ୍ତୁ ସେ ତ ଥିଲା ତା ଆନନ୍ଦ, ଉତ୍‌ସାହ ଓ ବେପରବାୟ ବ୍ୟବହାର ମାତ୍ର, କିନ୍ତୁ ଆଜି ଏମିତି କୁକୁର ଭଳି ଭୁକିବା ଆନନ୍ଦର ନୁହେଁ, ବରଂ ପ୍ରତିଦ୍ୱନ୍ଦୀ ଭାବରେ । ମୁକ୍ତ ସ୍ୱାଧୀନ ହେବାକୁ ସେ ଭୁକିଲା ? ଚେମା ଅନୁଭବ କଲା, କ୍ରମଶଃ ସେ ଯେମିତି ସବୁ କିଛି ହରାଇବାରେ ଲାଗିଚି ।

× × × × × ×

ଏଣିକି ନିତି ସଞ୍ଜବେଳେ ଲୀରାର ଗୋଡ଼ ବିନ୍ଧିବ । ସେ ବିଛଣାରେ ଗଡ଼ିବ । ସପୁକୁ ଡାକିବ । ଗୋଡ଼ ମୋଡ଼ିବାକୁ କହିବ । ସପୁ ଗୋଡ଼ ମୋଡ଼ିବ । ଲୀରା ଲାଇଟ୍ ଲିଭେଇଦବ ।

ଏବଂ ସପୁ ଝାଳନାଳ ହେଇ ବାହାରି ଆସିବ । ମୁହଁରେ ଘନେଇ ଆସୁଥିବା ବିରକ୍ତି ଓ ଘୃଣାକୁ ଢାଙ୍କିବାକୁ ଚେଷ୍ଟା କରିବ ଓ ପପୁ ସହିତ କୁକୁର ଭଳି ଭୁକି ଭୁକି ପ୍ରତିଦ୍ୱନ୍ଦିତା କରିବ ଏବଂ ନିତି ଭାବିବ ନିଜ କୁକୁର ପଣିଆରୁ ନିଜକୁ ମୁକ୍ତିଦବ । କିନ୍ତୁ ମୁକ୍ତି ଦେଇ ପାରିବନି । ସେ ପୁଣି ହଜିଯିବ ସେଇ ରୁଟିନ୍‌ରେ ।

ଦିନେ ସପୁ ଠିକ୍ ସଞ୍ଜ ନ ହଉଣୁ ବଜାର ସଉଦା ପାଇଁ ବାହାରିଗଲା, ଯଦିଓ ଲୀରା କହିଥିଲା ବଜାର ସାରି ସଙ୍ଗେ ସଙ୍ଗେ ଫେରି ଆସିବାକୁ ଅଧ ଘଣ୍ଟାଏ ଭିତରେ । ଅଥଚ ଜାଣି ଜାଣି ଡେରି କରି ଫେରିଲା । ଡେରି କରି ଫେରିଥିବାରୁ ତା ମନ ଶଙ୍କି ଯାଉଥିଲା । ପାଦ ଧିମେଇ ଧିମେଇ ପଡୁଥିଲା । ଅଥଚ ଘର ଭିତରେ ଲୀରାକୁ ନ ପାଇ ସେ ଆଶ୍ଚର୍ଯ୍ୟ ହେଲା । ବଗିଚାକୁ ଗଲା । ସେଠି ବି ଶୂନ୍‌ଶାନ୍ । ଧୀରେ ଧୀରେ ପାଦ ପକାଇ ଲୀରାର ଶୋଇବା ଘର ଆଡ଼କୁ ଆଗେଇଲା । ଆଶ୍ଚର୍ଯ୍ୟ, ଘରଟା ପୂରା ଅନ୍ଧାର । ଦ୍ୱାର ମୁହଁରେ କିଛି ସମୟ ଛିଡ଼ା ହେଲା । ହଠାତ୍ ଘରଟାରେ ଆଲୁଅ ବିଛୁରି ହେଇ ପଡ଼ିଲା । ସପୁ ତାଟକା ହେଇଗଲା । ନିଜ ଆଖିକୁ ସେ ବିଶ୍ୱାସ କରି ପାରିଲାନି । ଉଭା ନଙ୍ଗଳା ବିଛଣାରେ ଗଡୁଚି ଲୀରା । ଆଖି ମୁଦିଚି । ମୁହଁ ଝାଳ ସର ସର । ଏକ ସନ୍ତୋଷ, ଏକ କ୍ଲାନ୍ତିର ଛାପ ମୁହଁରେ ନଟ୍‌କି ରହିଚି । ଲୀରାର କୋଳ ଉପରେ ନିସ୍ତେଜ ହେଇ ପଡ଼ିଚି ପପୁ, କୁକୁର ପପୁ ।

ଲୀରା ଆଖି ଫେଡ଼ିଲା ବେଳକୁ ସାମ୍ନାରେ ସପୁକୁ ଦେଖି ସେ ଚମକି ଉଠିଲା । ସପୁ ତୁ? ଏବଂ ତରତରରେ ନିଜ ଦେହ ଉପରକୁ ଲୁଗାଟାଣି ନେଉ ନେଉ ପପୁକୁ ଗୋଟେ ନାତରେ ପଲଙ୍କ ତଳକୁ ଗଡ଼ାଇ ଦେଲା । ନିସକ୍ତ ପପୁ କେଁ କେଁ କରି ବାହାରକୁ ଚାଲିଗଲା । ଅଥଚ ଏଥର ସାମ୍ନାରେ ସପୁକୁ ଦେଖି ଭୁକି ନଥିଲା ।

ସପୁ ନୀରବରେ ତଳକୁ ଓହ୍ଲାଇ ଆସିଲା । ଦୁହେଁ ଆଶ୍ଚର୍ଯ୍ୟ ଆଉ ଘୃଣାର ଅସରା କୁଣ୍ଢେଇଧରି । ସତରେ ତା'ହେଲେ ପପୁ ଓ ସପୁ ଭିତରେ କିଛି ଫରକ୍ ନାହିଁ? ଲୀରା କ'ଣ ଆସ୍ତେ ଆସ୍ତେ କୁକୁର ପାଲଟି ଯାଉଚି? କୁକୁର ସହ ସହଯାପନ ମୂଳରେ ମଣିଷ ଏକ କୁକୁର ସହଯାତ୍ରୀ ହେବାର ମାନସିକ ଅବସ୍ଥା ନାହିଁ? ସପୁ ଆଗରେ ସଭ୍ୟତାର ଏକ କଳାପରଦା ବିଛେଇ ପଡୁଥିଲା, ଯାହା ଉପରେ ଯେତେ ପାଓ୍ୱାରର ଆଲୋକ ପକେଇଲେ ବି, ତାହା ଆହୁରି କଳା ଦେଖାଯାଉଚି ।

ସକାଳ ହେଲା ବେଳକୁ ଦୃଶ୍ୟବାନ୍ ହେଲା ପପୁ ବଗିଚାରେ ମରି ପଡ଼ିଚି । ବେକ ଫୁଟି ରକ୍ତ ନିଗିଡ଼ି ଆସିଚି । ଜିଭଟା ବାହାରକୁ ବାହାରି ଆସିଚି ଏବଂ ଫେରାର୍ ହେଇଯାଇଚି ଚେମା ।

କଣ୍ଟ୍ରାକ୍ଟର ଚୌଧୁରୀଙ୍କର ଗର୍ଜନ ଶୁଭୁଥିଲା– କୁକୁରକୁ ହତ୍ୟା କରିବା ଅର୍ଥ ମୁନିବକୁ ହତ୍ୟା କରିବା । ମୁନିବତାକୁ ଅସ୍ୱୀକାର, ଅବମାନନା କରିବା ! ଯେ କୁକୁର ନ ପୋଷିଛି, ସେ ମଣିଷ ପୋଷି ପାରିବା ଅସମ୍ଭବ !

ଏ କାହାଣୀର ଶେଷ ଦୃଶ୍ୟ । ସଞ୍ଜ ପାଖାପାଖି ଚେମା ମା' ଲୁହ ଓ କୋହ ବେଷ୍ଟିତ କଣ୍ଠରେ ସଅଁପୁଚି, ମୋ ଏକୋଇରବଳା ବିଶିକେଶନକୁ ମାରି ଦେଲରେ ଚଣ୍ଡାଳ, ତମେ ସବୁ ଅର୍ଦ୍ଧବୁର୍ଷୁଳିଆ ହେଇ ମରରେ... ମଲାପରେ ତମେ ସବୁ କୁକୁର ଜନ୍ମ ହୁଅରେ ! .



## ସଦାନନ୍ଦ ତ୍ରିପାଠୀ

# ତ୍ୟାଗୀରାଜ ଚୌରାଶିଆଙ୍କ କୁକୁର

ମାଘ ମାସ । ଆରମ୍ଭ ଆରମ୍ଭ । ଶୀତ କମୁଛି । ରାସ୍ତାରେ ଗହଳି ବଢ଼ିଛି ସନ୍ଧ୍ୟା ସମୟରେ । ଫୁର୍ତ୍ତି କରିବାର ଋତୁ । କୌଣସି କୀର୍ତ୍ତି ରଖିବା ଅପେକ୍ଷା ଫୂର୍ତ୍ତି କରିବା ଦିଗରେ ସହରର ଯଶବାନା ଚିର ଫରଫର । ଇସ୍ପାତ ନଗରୀ । ଅୟସ ଓ ଫୁର୍ତ୍ତିର ନଗରୀ ।

ରିଂରୋଡ଼ରେ ଅବଶ୍ୟ ଅସ୍ୱାଭାବିକ ଭିଡ଼ ହୁଏ । ସବୁ ଋତୁରେ । ତେବେ ନିର୍ଦ୍ଦିଷ୍ଟ ସମୟରେ କେବଳ । ନିର୍ଦ୍ଦିଷ୍ଟ ସିଫ୍‌ଟରେ ଯାଉଥିବା ଓ ସିଫ୍‌ଟ ଡିଉଟି ସାରି ଫେରୁଥିବା ଲୋକଙ୍କର ଦ୍ରୁତ ଗତିଶୀଳ ମନ୍ଦା । ପ୍ରବଳ ଭିଡ଼ । କାରଖାନା ଯାଏଁ । କାରଖାନାରୁ ଘର ଯାଏଁ । ଫୂର୍ତ୍ତି କରିବାର ସମୟ ନିଆରା । ଅନେକଟା ଋତୁ ବି ନିର୍ଦ୍ଦିଷ୍ଟ ।

ସନ୍ଧ୍ୟା ସମୟ । ରିଂ ରୋଡ଼ରେ ଭିଡ଼ କ୍ରମେ ବଢୁଛି । ସ୍କୁଟର, ମୋଟର ସାଇକଲ । କାର୍, ଧାଡ଼ି ଲାଗିଛି । ଦୁଇଚକିଆ ଯାନର ପଛ ଆସନରେ ସ୍ତ୍ରୀ । ଏକାନ୍ତ ଅନିବାର୍ଯ୍ୟ ! କେହି କେହି ମଧ୍ୟ ସନ୍ତାନସନ୍ତତିଙ୍କ ସହ । ଅନଭିଜ୍ଞ, କମ୍ ବୟସର ସନ୍ତାନ । କୋଳାହଳ ମୁଖରିତ । ସବୁକିଛିକୁ ନିଜର ମନେ କରୁଥିବା ପରି । ସବୁ ଦୃଶ୍ୟରୁ ଆନନ୍ଦ ପାଉଥିବା ପରି ।

ରିଂ ରୋଡ଼ରେ ଭିଡ଼ । ସିନେମା ଘର ଆଡ଼କୁ । ପାର୍କକୁ, କ୍ଲବକୁ, ବଜାରକୁ, ଗୁପ୍‌ଚୁପ୍ ଠେଲା ପାଖକୁ । ସିଭିକ୍ ସେଣ୍ଟରକୁ । ବନ୍ଧୁ ଘରକୁ । ବାର୍ କମ୍ ରେଷ୍ଟୁରାଣ୍ଟକୁ ।

ସେମାନେ ଫେରିବେ । କିଏ କେତେବେଳେ । କିଏ ଉଚ୍ଚ ସ୍ୱରରେ କଥା କହୁଥିବ । ଅତି ଉତ୍ତ୍ୟକ୍ତ । କେଉଁ ସ୍କୁଟର ଚାଳକର ପିଠିରେ ଲେସି ହେଇ ରହିଥିବ ତା' ନାରୀ । କାହାର ମୁଣ୍ଡ ବିନ୍ଧୁଥିବ । କାହାର ଆଖି ଲାଲ୍ ହୋଇଥିବ ନିଶାରେ । କିଏ ଫେରିଥିବ ସଉଦା କରି । ଶାଢ଼ି କିଣି । ସିନେମା ଦେଖି । ପାର୍କ ବୁଲି । କିଏ ଉଲ୍ଲାସରେ ଗୀତ ଗାଉଥିବ । ଅଥବା ଶୀତୁଆ ଚୋରା ବସନ୍ତରେ ଉଲୁସି ଉଠି । କିଏ ହାକୁଟି ମାରୁଥିବ ଶୁଣାଇବା ଭଳି । କିଏ ଗପୁଥିବ ସିନେମା କଥା । କାହାର ଅଭିନୟ ନିଖୁଣ । କିଏ ବୋର୍ କଲା । ହୀରୋଇନ୍‌ର ଛାତି, ଶରୀର ତୁଳନାରେ କେତେ ବେଶି ସ୍ଫୀତ ।

ଆହା, କେଉଁ ମଞ୍ଜିରୁ ଏହି ତରୁ? ତା'ଛଡ଼ା ସିନେମାଟିରେ କେତେ ଭୁଲ୍ ରହିଲା କେତେ ଠିକ୍? କେତେ ବ୍ଲଣ୍ଡର ଓ କେତେ ନ୍ୟାଚୁରାଲ୍। ଆଉ କିଏ କହୁଥିବ ଶାଢ଼ି କଥା। କେଉଁ କିସମର ଶାଢ଼ି ଆସନ୍ତା ଦରମାରେ କିଣାଯିବ। ଗାଡ଼ି ସବୁ ଚାଲି ଯାଉଥିବ ସାଏଁ ସାଏଁ।

ସେମାନେ ଫେରିବେ। ସମସ୍ତେ। ଗତି ଅପେକ୍ଷାକୃତ କ୍ଷିପ୍ର ଥିବ। କାହାର ଛୁଆକୁ ଆୟା ବୁଝାଇ ବୁଝାଇ ନାକରେ କାନ୍ଦିବଣି। କାହାର ଶାଶୂ ବା ବୁଢ଼ୀ ମା' ବେଦମ୍ ହେବଣି। କାହାର ବା ଶାଳୀ କି ଭଉଣୀ।

ଗହଳି ପତଳା ପଡ଼ିଲାଣି। ଯିବା ବେଳର ଗହଳି। ସେମାନେ ଫେରିବେ ଡେରିରେ। ଏବେ ରାସ୍ତା ଫାଙ୍କା ଲାଗୁଛି। ଏଇ ସୁବିଧା ବେଳ।

କୁକୁରଟି ଅପେକ୍ଷା କରିଥିଲା। ରିଂ ରୋଡ଼ କଡ଼ରେ। ସେକ୍ଟର-୪ ପଟେ। ରିଂରୋଡ଼ରୁ ସେକ୍ଟର-୪ ଆଡ଼କୁ ଯିବା ପାଇଁ ଯେଉଁ ରାସ୍ତା, ସେଇଠି। ରାସ୍ତାଠାରୁ କିଛି ଦୂର ଛାଡ଼ି। ତଳ ଆଡ଼କୁ। ବେଳେବେଳେ ଦେହର ବିଭିନ୍ନ ଅଂଶକୁ କାମୁଡୁଥିଲା। ତା' ଦେହରେ ଅବଶ୍ୟ ଘା' ହେଇନି ଯେ, ଉକୁଣି କେତେଟା ଅଛନ୍ତି। ସାଲୁବାଲୁ ହେଉଛନ୍ତି। ରାଗ ଲାଗୁଛି ତ, ସେ ଚାଟି ପକାଉଛି। କିନ୍ତୁ ତା' ଦେହରେ ଘା? ହେବାକୁ ଯୁ' କାହିଁ? ସବୁବେଳେ ତ ବାନ୍ଧିରଖିଲା ମାଲିକ। ସମଗ୍ର ଜୀବନ କାଳରେ ଏଇତ ଦ୍ୱିତୀୟଥର ଶକ୍ତ ଶିକୁଳିରୁ ମୁକ୍ତିପାଇଛି ସିଏ। କିଛି ମାସ ତଳେ ମାତ୍ର ସେ ଚାଖିଥିଲା ପ୍ରଥମ ମୁକ୍ତିର ସ୍ୱାଦ। ସେଇ ପ୍ରଥମ ଓ ବହୁ ପ୍ରତୀକ୍ଷିତ ସାମୟିକ ସ୍ୱାଧୀନତା। ସାମୟିକ ହେଲେ ବି କେତେ ସ୍ମରଣୀୟ। ଜନ୍ମ ଲଭିବାର, ସାରା ଜୀବନର ସାର୍ଥକତା ମଉକା ପାଇ ସେ ମାଲିକର ଘରଠାରୁ ଦୂରକୁ ଚାଲିଗଲା। ପଳାଇ ଯାଇଥିଲା ସେକ୍ଟର-୧୯ ପଟେ। ରିଂରୋଡ଼ ପାରହୋଇ। ସେପଟେ ଯାଇ କେତେ ଯୁଦ୍ଧ କରିବାକୁ ପଡ଼ିଥିଲା। ଜାତିର ପ୍ରଥା। ନବ ଆଗନ୍ତୁକଙ୍କୁ ଆକ୍ରମଣ ହିଁ ଅନିବାର୍ଯ୍ୟ। ସେ ମଧ୍ୟ ଖୁବ୍ ପରାକ୍ରମ ଦେଖାଇଲା। କେତେ ଜାତିଭାଇଙ୍କୁ ଖଣ୍ଡିଆ ଖାବରା କଲା। ନିଜେ ଆହତ୍ ହେଲା। ବାଘପରି ଗର୍ଜନ କଲା। ମୋଟା ଦେହ ଥରାଇ ନିର୍ଭୟରେ ଦର୍ପ ଦେଖାଇଲା। ଏବେ ସବୁ ସ୍ୱପ୍ନ ପରି ଲାଗେ। କି ବିକଳ ହେଲେ ଜାତିଭାଇ। ଛିନ୍ନଛତ୍ର ହେଲେ। କେତେ ମିନିଟ୍ ଯାଏଁ ଗୋଟିଏ ଜାଗାରେ ସେ ଠିଆ ହେଇ ରହିଲା। ଦର୍ପ ଦେଖାଇଲା। ସେକ୍‌ଟର ଥରାଇ ଭୁକିଲା। ଜାଣ, ମୁଁ କାହାର ଅନୁଜୀବୀ? ଚିହ୍ନିଛ ମୋ ମାଲିକକୁ? ନ ଚିହ୍ନିଥିଲେ, ମୁଁ କହୁଛି ଶୁଣ। ବପୁବାନ, କ୍ଷମତାଶାଳୀ, ଲକ୍ଷ୍ମୀଙ୍କର ବରପୁତ୍ର ତ୍ୟାଗୀରାଜ ଚୌରାଶିଆ ମୋର ମାଲିକ। ତାଙ୍କ ବଡ଼ଭାଇ ତାଙ୍କ ରାଜ୍ୟର ଜଣେ ବରିଷ୍ଠ ମନ୍ତ୍ରୀ। ଯେ' ଜଣେ ଯନ୍ତ୍ରୀ। କମ୍ ଲୋକ ନୁହନ୍ତି। ମୁଁ ବି ତେଣୁ କିଛି କମ୍

ନୁହେଁ । ଦେଶୀ ହେଲି ବୋଲି ସହଜ ପାଇଲ କି ? ଆମ ଦେଶରେ, ମୋ ପରି ଚେହେରା, କାହାଠାରେ ଦେଖିଛ ? ତା' ନ ହେଲେ ବିଦେଶୀର ଯାହା ଆଦର; ମତେ ବା ସେ ରଖିଥାନ୍ତେ କିଆଁ ? ପୁଣି ଏତେ ଆଦର ଯତ୍ନରେ ? ମୁଁ କ'ଣ ସବୁ ଖାଏ ତମେ ଜାଣ ? ହତଭାଗା ବୁଲାଗୋଷ୍ଠୀ ! ଚାଲ ଦେଖିବ ଆମ ସେକ୍‌ଟରରେ । ମୁଁ ବାରନ୍ଦାରେ ବନ୍ଧା ହେଇଥାଏ । ତଥାପି ବୁଲା କ'ଣ, ପୋଷା କ'ଣ, କେହି ସେ ପାଖ ଦେଇ ଯାଆନ୍ତି ? ସାହସ କରିବେ ? ଭାଉ... ଭାଉ !!

କେହି ଆଉ ପାଖ ମାଡ଼ି ନ ଥିଲେ । ପରୀ ସମାନ ଧଳା ରଙ୍ଗର କୁତ୍ତୀଟିଏ ଖଣ୍ଡେ ଦୂରରେ, କ'ଣ ଖୋଜୁଥିବାପରି ବୁଲୁଥିଲା । କୁକୁରଟି ଦୃଷ୍ଟି ଫେରାଇ ନେଇ ତା' ପାଖକୁ ଗଲା । କାଉଁ କାଉଁ ହେଲା, ବୁଝିଲ ହୃଦୟେଶ୍ୱରୀ ! ରିଂରୋଡ଼ରେ ତ ବୁଲିବୁଲି ହାଓ୍ୱା ଖାଇଥାନ୍ତେ । କେଡ଼େ ଆରାମ । ଆମ ପଟେ ତହୁଁ ବଳି ଉତ୍ତମ । ଏ ତ ମୋ ପାଇଁ ଭିନ୍ନ ଇଲାକା । ସ୍ୱଜାତି ବେଭାର । ଏତେ ଝାମେଲା । ଜଣା ନ ଥିଲା । ଛାଡ଼ । ବହେ ସଂଘର୍ଷ ନ ହେଲେ ବି ମଜା ନାହିଁ ।

କୁତ୍ତୀଟି କୁଉଁ କୁଉଁ ହେଲା । ଲାଙ୍ଗୁଡ଼ ଜାକିଲା । ଚିତ୍ ହୋଇ ଶୋଇ ଗୋଡ଼ ହଲାଇଲା । ପୁଣି ଉଠିପଡ଼ି ନହକି ନହକି ଧାଇଁଲା । ତାଳ ଛଣ୍ଡିଲା ଭଳି ଗୋଟିଏ ଜାଗାରେ ଅଟକିଯାଇ ଘୂରିଲା ପଛକୁ ଓ ଆସି ଦେହରେ ଗୋଳେଇ ହେଲା । କୁକୁରଟି ଆମୋଦିତ, ପୁଲକିତ, ଉଲ୍ଲସିତ ହେଲା । ତା' ରକ୍ତରେ ଖେଳିଗଲା ସୁମଧୁର ନିଆଁ ।

କେତେଟି ଦିନ ସେମିତି କଟିଗଲା କୁତ୍ତୀଟି ସହ । ମହା ମଉଜରେ । ଘୂରି ଘୂରି । ଅନେକଙ୍କ ସହ ଦେଖା ସାକ୍ଷାତ । ଝଗଡ଼ା । ପରିଚୟ । କ୍ଷେତ୍ର ପ୍ରଶସ୍ତ ହେଲା । ଦିନେ ପୁଣି ସେ କୁତ୍ତୀଟିକୁ ଛାଡ଼ି ଆସି ରିଂରୋଡ଼ ପାରହେଲା । ମାଲିକର ଘର ପାଖକୁ ଆସିଲା । ଘରଲୋକେ ତାକୁ ଦେଖିପାରିବା ଭଳି ଓଳନାଳ ହେଲା । ରାସ୍ତା ଉପରେ, ଘର ସାମନାରେ । ଏପଟ ସେପଟ । ଗେଟ୍ ଭିତରକୁ ଗଲାନାହିଁ । ମାଲିକର ଝିଅ ଦେଖିଲା । ଚୁ ଚୁ କରି ଗେହ୍ଲାରେ ଡାକିଲା । ସେ ଗଲା । ଇଛା ନ ଥିବା ପରି । ଲାଙ୍ଗୁଡ଼ ଜାକିଲା ! ଦୃଷ୍ଟି ଅବନତ କଲା । ମୁହଁ ଗୋଜିଆ କରି ଧୀରେ ଧୀରେ ଗଲା । ଗେହ୍ଲା ମାଡ଼ ଖାଇଲା । ଦେହର କ୍ଷତରେ ଔଷଧ ଲଗାଇ ଦେଲେ । ବାନ୍ଧି ରଖିଲେ । ଆଉ ଛାଡ଼ିଲେ ନାହିଁ ।

ଏହା ଦ୍ୱିତୀୟ ଥର । ବହୁତ ଦିନ ପରେ । ପୁଣି ଥରେ । ସେ ଖସି ଆସିଛି । ଖୁବ୍ ଆନନ୍ଦର କଥା । ଫୂର୍ତ୍ତି କରିବାକୁ ହିଁ ପଡ଼ିବ । ପୁରୁଣା ବନ୍ଧୁମାନଙ୍କ ସହ ମିଶାଯିବ । ଭାବ ଆଦାନପ୍ରଦାନର ମଉକା । କିଛି ନ ହେଲେ ସେଇ ପରୀ ଭଳି ସଙ୍ଗୀଟିକୁ ତ ଭେଟିବ । ପଚାରିବ, କେମିତି ଅଛ ?

ମୋ ବିନା ଖାଁ ଖାଁ ଲାଗୁଥିଲା କି ଚତୁର୍ଦ୍ଦିଗ? ଅସାର ମନେ ହେଉଥିଲା କି ଜୀବନ? ସଙ୍ଗୀଟି ଯଦି ଛୁଆ ଜନ୍ମ କରିଥିବ, ତେବେ ସେ ଆଖି ପୂରାଇ ଦେଖିବ। କେତୋଟି ହେଇଥିବେ? କେମିତି ହେଇଥିବେ? କା' ଭଳି ହେଇଥିବେ? ମା' ପରି ନା ବାପା ଭଳି? ଅଥବା ଦୁହିଁଙ୍କ ମିଶାମିଶି? ସୁନ୍ଦର, ବଳିଷ୍ଠ! ଆଖି ଫିଟିବଣି ପରା! ଭୁକୁଥିବେ?

ରିଂରୋଡ଼ରେ ଆଉ ଗହଳି ନାହିଁ। କେତେଟା ସାଇକଲ୍। ବେଳେ ବେଳେ ସ୍କୁଟର, ମୋଟରସାଇକଲ୍, କାର। କାଁ ଭାଁ। ଅନ୍ଧାର କ୍ରମଶଃ ବହଳ ହେଉଛି। ଏଇ ମଉକାରେ ରିଂରୋଡ଼ ପାର ହେଇଗଲେ ଯାଏ। ଫେରିବାକୁ ପଡ଼ିବ! ନଚେତ୍ ରାତିଟା ବାହାରେ କଟାଇବାକୁ ପଡ଼ିବ। ଓପାସରେ ପେଟଜଳିବ। ଭୋକ ବିକଳରେ ପୂର୍ବଥର ଭଳି ଏଣୁତେଣୁ ଖାଇ ବାନ୍ତି କରିବାକୁ ପଡ଼ିବ। ପୁଣି ଏ ରୋଗ ଋତୁ। ବେଶି ସମୟ ବାହାରେ ବୁଲିବା ଠିକ୍ ନୁହେଁ।

କୁକୁରଟି ଧୀରେ ଧୀରେ ଉପରକୁ ଉଠିଲା ଝାଡ଼ିଝୁଡ଼ି ହେଲା। ଠିଆ ହେଲା। ଚାରିଆଡ଼କୁ ଅନାଇଲା। ନା! ବିପଦର ସୂଚନା ନାଇଁ! ରାସ୍ତାକୁ ଓହ୍ଲାଇଲା। ପ୍ରଥମ ରାସ୍ତା ପରେ ମଝିରେ ଲନ୍। ତା'ପରେ ଦ୍ୱିତୀୟ ରାସ୍ତା। ରାସ୍ତା ପାରିହେଲେ ପଡ଼ିଆ। ପଡ଼ିଆ ଶେଷ ହେଲେ ସେକ୍ଟର-୧୯ର କମ୍ପାନୀ ଘର ସବୁ। ଧାଡ଼ି ଧାଡ଼ି। ସେଇ ପାଖରେ ମନ୍ଦିର। ମନ୍ଦିରରେ ଗୋସେଇଁ ରହନ୍ତି।

ଗୋସେଇଁ ଭାରି ଉତ୍ତମ ଲୋକ। ମୁହଁରେ ଦାଢ଼ି ଭର୍ତ୍ତି। ପୂର୍ବଥର ତା' ସଙ୍ଗୀଟି ସହ ସେ ପଶି ଯାଇଥିଲା ମନ୍ଦିର ବେଢ଼ା ଭିତରେ। ଗୋସେଇଁ ହାତ ଉଞ୍ଚାଇ ଘଉଡ଼ାଇ ଦେଲେ। ଠେଙ୍ଗାଧରି ଗୋଡ଼ାଇଲେ ନାହିଁ। ପଥର ବି ଫୋପାଡ଼ିଲେ ନାହିଁ ଅନ୍ୟ ମଣିଷଙ୍କ ଭଳି। ସେ ଦୁହେଁ ବେଢ଼ା ବାହାରକୁ ଚାଲିଗଲେ। ଗୋସେଇଁ ଫାଟକ ବନ୍ଦ କଲେ। କିଛି ସମୟ ଲକ୍ଷ୍ୟ କଲେ। ତା'ପରେ ଫେରି ଯାଇଥିଲେ ମନ୍ଦିରକୁ ଲାଗି ରହିଥିବା ତାଙ୍କର କୁଡ଼ିଆ ଭିତରକୁ।

କୁକୁରଟି ମନ୍ଦିର ପାଖରେ ପହଞ୍ଚିଲା। ମନ୍ଦିର ବେଢ଼ାର କଡ଼େ କଡ଼େ ଚାଲିଚାଲି ସେ ଫାଟକ ଆଡ଼କୁ ମୁହାଁଇଲା। ଅଚାନକ ଦେହରେ କ'ଣ ପଡ଼ିବା ଅନୁଭବ କରି ଦୌଡ଼ୁ ଦୌଡ଼ୁ ତା ଦେହଟା ଜଳିଗଲା। ଛାଲ ଉଠିଗଲା ପରି ଲାଗିଲା। ସେ ବିକଳରେ ଦୌଡ଼ିଲା। ଦ୍ରୁତ ଗତିରେ। କ୍ୟାଉଁ କ୍ୟାଉଁ ହୋଇ।

ଗୋସେଇଁ ହସି ହସି ପାଟି କଲେ, ମଲା... ମଲା... ମଲା...।

"କ'ଣ ହେଲା?" ପୁରାଣପଢ଼ା ବନ୍ଦ କରି ଘର ଭିତରୁ ପ୍ରଶ୍ନକଲା ସାନ ଭାଇଟି।

କ'ଣ ଆଉ ହେବ? ବାଡ଼ ଆରପଟେ ଗରମ ପେଜ ଫୋପାଡ଼ିବା ବେଳକୁ କୁକୁରଟା ଥିଲା। ଶାଳା କୁକୁରଗୁଡ଼ାକ ବି ଯାହା ହଉଛନ୍ତି। ତା'ର ଯୋଗ ଖରାପ। ମୋର ବା ଦୋଷ କ'ଣ?

ସାନଭାଇଟି ପ୍ରାଣଖୋଲି ହସିଲା। ପୁରାଣପଢ଼ା ବନ୍ଦ ହେଲା।

କୁକୁରଟି ଧାଇଁ ଯାଉ ଯାଉ ଛୋଟ ନାଳିଆଟି ଉପରେ ଥିବା ଛୋଟ ପୋଲଟି ପାଖରେ ଅଟକିଗଲା। ପଛକୁ ଚାହିଁଲା। ରାସ୍ତା କଡ଼କୁ ଗଲା। ବତି ନ ଥିବା ବିଜୁଳି ଖୁଣ୍ଟ ତଳେ ଠିଆହେଲା। ନିଜର ସର୍ବାଙ୍ଗ ଚାଟିବାକୁ ଚେଷ୍ଟାକଲା। ଓଃ... ହୋଃ... ହୋଃ... ଜଳି ଯାଉଛି... ଜଳି ଯାଉଛି। ଛାଲ ଛାଡ଼ିଯିବ ପରା।

ମନରେ ଆଉ ସରାଗ ନ ଥିଲା। ଫେରିଯିବାକୁ ଇଚ୍ଛା ହେଲା। ଅନ୍ଧାର ଗାଢ଼ ହେଇଛି। କିଛି ଦୂରରୁ ରହି ରହି ଭାଉ ଭାଉ ଶବ୍ଦ ଶୁଭୁଛି। ସେଦିନର ସେ ସଙ୍ଗୀଟି ହେଲେ ମିଳିଯାଆନ୍ତା! ଦୁଃଖ ବଖାଣନ୍ତା। କେଉଁଠି ଖୋଜିବ ଏବେ? କେତେ ସମୟ ବା ଖୋଜି ହେବ? ଏ ହାଲ୍‌ରେ! ଦେହ ସାରା ଅଠା ଅଠା ଲାଗୁଛି। ଶୀତ ଛାଡ଼ି ଯାଇଛି। ଜଳୁଛି।

ମନଟା ଛି' ହେଇଗଲା। ନା, ଆଉ ନୁହେଁ। କୁଆଡ଼େ ଆଉ ଯାଇହେବ ନାହିଁ। କାହାକୁ ବି ଖୋଜି ହେବନି। ଅନ୍ୟଦିନେ ଆସିବ ପଛେ। ଭଲ ହେବା ପରେ। ମଉକା ଦେଖି ବୁଲିଯିବ।

– ଭାଉ... ଭାଉ...। କିଏରେ ଏଇଠି ଛପି ବସିଛି?

ଶିକୁଳିରେ ବନ୍ଧା କୁକୁରଟିଏ। ମାଲିକ ଧରିଛି ଶିକୁଳି। କୁକୁରଟିର ଉଚ୍ଚତା କମ୍। ଦେହସାରା ଗହଳ କେଶ। ଦୁଗ୍ଧ ବର୍ଣ୍ଣ। କି ସୁନ୍ଦର ଦିଶୁଛି। ଆହା...!

– ଉଁ, ଘୁଡ୍... ଘୁଡ୍। ମୁଁ ମନ୍ଦ ଉଦ୍ଦେଶ୍ୟରେ ବସିନାହିଁ।

ତଥାପି ଶିକୁଳିରେ ବନ୍ଧା ହୋଇ, ମାଲିକର ଅକ୍ତିଆରରେ ଥିବା ସେଇ କୁକୁରଟି ଟାଣିହେଲା। ମାଲିକ ପାଟିକଲା, ହେଇ ଭାଲୁ! ଚୁପ୍!

ୟା'ର ମୁଣ୍ଡକୁ ପିତ୍ତ ଚଢ଼ିଲା। ଯେ' ଖୁଣ୍ଟ ମୂଳରୁ ଉଠିଲା। ଗର୍ଜନ ଛାଡ଼ିଲା। ଭାଉ... ଭୋଓ... ଭାଉ! କିଏରେ ତୁ ଦୁରାଚାର! ପାମର! ବିଦେଶୀ ଦେଖେଇ ହେଉଛୁ? ଦୁର୍ଯୋଗବଶତଃ ଏଇଠି ବସିଚି ବୋଲି ମତେ ଅଳିଖା ଦେଖିଲୁ କି? ଦେବି ଯେ ଏଇନେ ଚୋଟେ, ଅବସ୍ଥା ଗାଆଣି ଗାଇବନି। ଆରେ... ଆରେ... ଭାରି ତାଉ! ଭାଉ।

କୁକୁରଟି ଆଉ ବିଳମ୍ବ କଲାନାହିଁ। ସେଇଠୁ ଲେଉଟିଲା। ଆଜି ବେଳା ଭଲ ପଡ଼ିଲାନି। କପାଳ ମନ୍ଦ। ବିଳମ୍ବ କଲେ ଆହୁରି କ'ଣ ଖରାପ ପଡ଼ିପାରେ। ଦୁର୍ଯୋଗ

ସତେ କେତେ ତଳିତଳାନ୍ତ କରିପାରେ! ଫେରିଯିବା ହିଁ ଭଲ। ଯେତେ ଶୀଘ୍ର ସମ୍ଭବ। ସେ ଲେଉଟାଣି ବାଟ ଧରିଲା। ଅପେକ୍ଷାକୃତ ଦ୍ରୁତ ପଦକ୍ଷେପରେ। ମନ୍ଦିରପଟ ଦେଇ ଆସିଲା। ଫାଟକ ପାଖରେ ସେ କିଏ? ସେଦିନର ସେ ଗୋସେଇଁ? ଦୂରବର୍ତ୍ତୀ ବିଜୁଳି ଖୁଣ୍ଟ ବତିର ଡେର୍ଛା ଆଲୁଅରେ ଦେଖିପାରିଲା, ମୁହଁରେ ସେଦିନର ସାଲୁବାଲୁ କେଶ ନାହିଁ। ଅନ୍ୟ କିଏ ହେବ! କୁକୁରଟି ଆସୁ ଆସୁ ଅଟକିଗଲା। ଲୋକଟାର ଉଦ୍ଦେଶ୍ୟ ମନ୍ଦ ନୁହେଁ ତ! ଠିଆ ହେଇଚି ଖମ୍ବ ପରି। ଚକ୍ଷୁ ନାହିଁ ଜମ୍ପା!

ପୂଜକ ମହାଶୟ ଖାଇସାରି ଶହେ କଦମ୍ ଚାଲନ୍ତି। ସେଇ ମାତ୍ର ସେ ବାହାରୁଥିଲେ। କିନ୍ତୁ ସନ୍ଦିଗ୍ଧ କୁକୁରଟିକୁ ଦେଖି ସେ ଭିତରକୁ ଚାଲିଗଲେ। କୁକୁରଟି ଆସ୍ତେ ଆସ୍ତେ ଆସିଲା। ଫାଟକ ସାମ୍ନା ରାସ୍ତାରେ କିଛିକ୍ଷଣ ଠିଆହେଲା ଓ ବିଦ୍ରୋହ କଲାପରି ଭୁକିଲା। ତା'ପରେ ଚାଲିଗଲା। ପଡ଼ିଆ ଭିତରେ ଚାଲିଲା। ଶୁଙ୍ଘି, ଶୁଙ୍ଘି, ବୁଦାମୂଳ ଦେଖି ପଛ ବାଁ ଗୋଡ଼ ଟେକିଲା। ପଡ଼ିଆ ପାର ହେଲା। ରାସ୍ତା ଉପରକୁ ଉଠିଲା। ଶୀଘ୍ର ଯିବାକୁ ହେବ। ମାଲିକ ମାଲିକାଣୀଙ୍କର ଫେରିବା ବେଳ ହେଲାଣି। ଗାଡ଼ିନେଇ ସେମାନେ ବାହାରି ଯାଇଥିଲେ, ଆଲୁଅ ଥିଲା। ସେମାନେ ଫେରିବା ପୂର୍ବରୁ ଘରେ ପହଞ୍ଚିଯିବା ଦରକାର। ପୁଣି ଦେହର ଏ ଅବସ୍ଥା!

କ୍ଷଣେ ଠିଆହେଲା। ରିଂରୋଡ଼ର ସେପଟ ରାସ୍ତାରେ ଗହଳି ବଢ଼ିଛି। ଲେଉଟାଣି ବେଳ। ଫୂର୍ତ୍ତିକରି ଫେରୁଛନ୍ତି। ଇସ୍ପାତନଗରୀର ନିଶ୍ଚିନ୍ତ ମଣିଷ। ଅନ୍ୟ କେଉଁଠି କ'ଣ ସବୁ ଘଟେ, ତା'ର ଖବର କିଏ ରଖେ? ନିଜ ଛଡ଼ା ଅନ୍ୟ କାହାର ଜୀବନ ଉପରେ କ'ଣ ବିତେ, ସେ କଥା କିଏ ବା ଜାଣେ? ଗହଳି ଅବ୍ୟାହତ। ବ୍ୟସ୍ତତା ଅବ୍ୟାହତ ଉଲ୍ଲାସ ଅବ୍ୟାହତ। କୁକୁରଟି ଗଛ ଆଢୁଆଳରେ ରହିଥିଲା। ମଣିଷମାନଙ୍କୁ କଳୁଥିଲା, ଏମାନେ ସୁଖୀ। ତ୍ୟାଗୀରାଜ ଚୌରାଶିଆଙ୍କ ପରି। ସୁନ୍ଦରୀ ପତ୍ନୀ, କ୍ୱାଟର୍ସ, ଅର୍ଥ, ସମୃଦ୍ଧି, ପ୍ରତିପତ୍ତି, ଅହଂ, ଚାରିକାନ୍ଥ ସହିତ ବେଶ୍ ସନ୍ତୁଷ୍ଟ ମଣିଷ। ନିଜ ସୁଖରେ ସୁଖୀ। ନିଜ ଦୁଃଖରେ ଦୁଃଖୀ। ଇଲାକାକୁ ନେଇ ଏମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଥାଏ? ଦୁର୍ବଳ ସବଳ, ବୁଲା ପୋଷା ଭେଦଭାବ?

କୁକୁରଟି ଲୋଭିଲା ଆଖିରେ ଚାହିଁଲା ମଣିଷମାନଙ୍କୁ। କେତେ ସୁଖରେ ଅଛନ୍ତି ମଣିଷମାନେ। ମୁକ୍ତ। ଜାତିଭାଇଙ୍କ ସହ ରହନ୍ତି। ସାଙ୍ଗହୋଇ। ପାଖାପାଖି। ସ୍ନେହ ଶ୍ରଦ୍ଧାରେ। ମିଳିମିଶି କାମ କରନ୍ତି। ଭୋଜନ କରନ୍ତି। ମଉଜ ମଜଲିସ କରନ୍ତି। ପୂଜା ଆରାଧନା ପ୍ରାର୍ଥନା କରନ୍ତି। ନିଜର ନେତା ନିର୍ବାଚନ କରନ୍ତି। କାହାକୁ ମାରିପକାଇବାକୁ ଚେଷ୍ଟା କରନ୍ତି ନାହିଁ। ହସନ୍ତି। ଖେଳନ୍ତି। ବୁଲନ୍ତି। ସଙ୍ଗୀକୁ ଗାଡ଼ିରେ ବସାଇ ନିଅନ୍ତି। ପିଲାଛୁଆଙ୍କୁ ବି। କିଏ କାହାର ଛୁଆ ଜଣାପଡ଼େ। କିଏ କାହାର ବାପା, କିଏ କାହାର

ମା' ଜଣାଯାଏ । କେହି ବି ଅନାଥ, ଅବୈଧ ନୁହନ୍ତି । କେହି ବି ଭୋକରେ ରହନ୍ତି ନାହିଁ । କାହାର କିଛି ଗ୍ଲାନି ନଥାଏ । କିଛି ବି ଅସନ୍ତୋଷ ନଥାଏ । ସମସ୍ତେ ହସ ହସ । ସମସ୍ତଙ୍କର ରହିଛି ଘର । ଯିଏ ଯେଉଁଆଡ଼େ ବୁଲିଲେ ବି ରାତି ହେଲେ ଘରେ ହାଜର । ସେମାନେ ପୋଷିଥାନ୍ତି ଶୁଆଶାରୀ ଗୀତ ଶୁଣିବା ପାଇଁ । ମୂଷା ଧରିବ ବୋଲି ପୋଷିଥାନ୍ତି ବିଲେଇ । ଘର ଜଗେ, ଚୋର ଧରେ ବୋଲି କୁକୁର । ସେମାନେ ବେଶ୍ ଯୋଜନାବଦ୍ଧ ଭାବେ ବଞ୍ଚି ରହନ୍ତି । ସବୁକିଛି ତାଙ୍କର ହିସାବକରା, ମାପଚୁପ୍ । ସେମାନଙ୍କର ଦ୍ୱନ୍ଦ୍ୱ ନ ଥାଏ । ଉତ୍କଣ୍ଠା ନ ଥାଏ । ଆଶଙ୍କା ନଥାଏ । କେହି କାହାକୁ ଦେଖି ଆତଙ୍କିତ ହୋଇ ପଡ଼ନ୍ତି ନାହିଁ । ପରସ୍ପର ମଧ୍ୟରେ ଅଖଣ୍ଡ ପ୍ରେମଭାବ ଥାଏ । ସମସ୍ତେ ଏକ । ଯିଏ ଯୁଆଡ଼େ ଯା' ଆସ କରି ପାରନ୍ତି । ଯେଉଁଠି ଯାହା ଇଚ୍ଛା ଖା' ପିଅ କରିପାରନ୍ତି । ଉଚ୍ଚ ନୀଚ ଛୋଟ ବଡ଼, ଦେଶୀ ବିଦେଶୀ; ଦୁର୍ବଳ ସବଳ ଭେଦଭାବ ନାହିଁ । କେଡ଼େ ଆନନ୍ଦରେ ହଲୁଛନ୍ତି, ଝୁଲୁଛନ୍ତି, ଆସୁଛନ୍ତି, ଯାଉଛନ୍ତି ! କି ଭାଗ୍ୟ !

ନା, ଭିଡ଼ ଦେଖିଲେ ହେବ ନାହିଁ । ମଉକା ଦେଖି ଆରପଟକୁ ଚାଲିଯିବା ଦରକାର । ତା'ଛଡ଼ା ଫାଙ୍କା ଜାଗାରେ, ଗଛ ତଳଟାରେ ଠିଆ ହୋଇ ରହିବା ବିଲ୍‌କୁଲ୍ ନିରାପଦ ନୁହେଁ । ଦି' ଗୋଡ଼ିଆଙ୍କୁ କି ବିଶ୍ୱାସ ! ଅକଳିଆରେ ଥିବା କୁକୁରଟିଏ ଦେଖିଲେ ସ୍କୁଟର ସୁଦ୍ଧା ଠିଆ କରାଇ ପରିସ୍ରା କରିବା ବାହାନାରେ ଆସି ସାଏଁକିନା ପଥରଟେ ଛାଡ଼ି ଦେବେ । ଶୀଘ୍ର ଚାଲିଗଲେ ଯାଏ !

କୁକୁରଟି ରିଂରୋଡ଼ କଡ଼ରେ । ସେକ୍ଟର-୧୯ ପଟେ । ସେକ୍ଟର-୪ ଛକ ସିଧାରେ । ତା'ପଛରେ ପଡ଼ିଆ, ମନ୍ଦିର । ସାମନାରେ ରାସ୍ତା । ଟିକିଏ ଫାଙ୍କା ଦେଖି ରୋଡ଼ ଉପରେ ଗୋଡ଼ ରଖେ । ପୁଣି ପଛକୁ ଫେରାଇ ନିଏ । ଏପଟ ରାସ୍ତା ଫାଙ୍କା ଥିଲେ ବି ସେପଟଟା ସେତେ ଫାଙ୍କା ନାହିଁ । ଏପଟ ରାସ୍ତା ପାର ହୋଇଯାଇ ମଝି ଲନ୍‌ରେ ଠିଆ ହେବାକୁ ସାହସ କୁଳାଉନି । କିଏ ଦଉଡ଼ାଇବ ଯଦି ! କୁଆଡ଼େ ଦୌଡ଼ିବ ! ଦୁଇପଟେ ରାସ୍ତା । ବରଂ ଏପଟେ ଥିଲେ ସୁବିଧା । ଭୟ ନାହିଁ ।

ଏମିତି ଫାଙ୍କା ଖୋଜୁ ଖୋଜୁ ଏକ ସମୟରେ କୁକୁରଟି ରାସ୍ତା ଉପରକୁ ଓହ୍ଲାଇ ଏକମୁହାଁ ଦୌଡ଼ିଲା । ସେପଟ ରାସ୍ତା ଫାଙ୍କା ଥିଲା । କିଛି କ୍ଷଣ ପାଇଁ । ଦୂରରୁ ଆସୁଥିଲା ଗାଡ଼ି । ମଝିକୁ ଯାଇ ଅଳ୍ପ ଦୂରରୁ ଆସୁଥିବା ଗାଡ଼ିଟିକୁ ଦେଖିଲା । ସାହସ ହେଲାନାହିଁ । ଲନ୍ ଉପରକୁ ଉଠିବା ପୂର୍ବରୁ ପୁଣି ପଛକୁ ଘୂରି ଦୌଡ଼ିଲା । ଏପଟ ରାସ୍ତା ଫାଙ୍କା ଥିବାରୁ ଖୁବ୍ ଦ୍ରୁତ ଗତିରେ ଆସୁଥିଲା ଗୋଟିଏ କମ୍ପାନୀ ବସ୍ । ବସ୍‌ର ଡାହାଣ ପଟେ ବାଜିଲା କୁକୁରଟିର ମୁଣ୍ଡ' । ଧଡ଼ାସ୍ । ବସ୍ ଚାଲିଗଲା ସେହି ଗତିରେ । କୁକୁରଟି ଛିଟ୍‌କି ପଡ଼ିଥିଲା ଲନ୍ ଉପରକୁ । ଚାରିଗୋଡ଼ ଛଟଛଟ କଲା । ମୁଣ୍ଡ ହଲୁ ନଥିଲା । ଲାଙ୍ଗୁଡ

ଘଷି ହେଉଥିଲା ତଳେ । ନଖରେ ବିଦାରି ଦେଲା ଖଣ୍ଡେ ଜାଗା । ତା'ଆଖିରେ ତାରାମାନେ ଦୌଡ଼ିଲେ । ନିଃଶ୍ୱାସ ଅଣାୟତ୍ତ । କ'ଣ ହେଇଗଲା ମୁହୂର୍ତ୍ତକରେ !

ତ୍ୟାଗୀରାଜ ଚୌରାଶିଆ ଘୋର ଅସ୍ଥିରତାରେ ସମୟ କାଟୁଥିଲେ । ସେ ଶୁଣିଥିଲେ, କୁକୁରମାନେ ଦ୍ୱିତୀୟ ଥର ଫିଟିଗଲେ ଆଉ ଫେରନ୍ତି ନାହିଁ । ଯେମିତି କୁଳବଧୂ ଥରେ ପରପୁରୁଷ ସହ ଘରୁ ଗୋଡ଼ କାଢ଼ି ବାହାରି ଗଲେ ଆଉ ଫେରେନା । ତା'ଛଡ଼ା ତ୍ରେତୟା ଯୁଗରୁ ଗଡ଼ି ଆସିଥିବା ପରମ୍ପରା ଏ ଯୁଗରେ ଆହୁରି ବେଶ୍ କିଛି ପାଦ ଆଗେଇ ଯାଇଛି । ସେ ଯୁଗରେ ହୁଏତ ଜଣେ ରତ୍ନାକର ଥିଲା ବା ଜଣେ ମାତ୍ର ରାବଣ । ଏବେ ତ ସମୟ ଏମିତି ହେଇଛି, ଏକାକିନୀ ନାରୀ ବା ବଳିଷ୍ଠ ସୁନ୍ଦର କୁକୁରଟିଏ ରାସ୍ତାରେ ବୁଲୁଥିବା ଦେଖିଲେ ଲୋକେ 'ଆଲ୍ଲା ଛପର୍ ଫାଡ଼୍‌କର ଦିଆ' ବୋଲି କହି ହରଣ କରି ନେଉଛନ୍ତି । ଖବରକାଗଜରେ ବିଜ୍ଞାପନ ଦେଲେ ବି କି ଲାଭ ? କୁକୁରଟି ପରଦିନ ସକାଳ ସୁଦ୍ଧା ନ ଫେରିବାରୁ ଚୌରାଶିଆଜୀ ଉଦ୍‌ବିଗ୍ନ ଓ ବ୍ୟତିବ୍ୟସ୍ତ ହେଲେ । ପାଖ ବ୍ଲକରେ ରହୁଥିବା କମ୍ପାନୀ ସ୍କୁଲର ସଂସ୍କୃତ ପଣ୍ଡିତଙ୍କ ପାଖକୁ ଯାଇ ତାଙ୍କୁ ଖଡ଼ି ପକାଇବାକୁ କହିଲେ । ପଣ୍ଡିତ ମହାଶୟ ଖଡ଼ି ପକାଇ ସ୍ପଷ୍ଟଭାବେ ଜଣାଇ ଦେଲେ, ଆସନ୍ତା କାଲି ସକାଳ ସୁଦ୍ଧା ନ ଫେରିଲେ ସେଣିକି ଆଉ ଆଶା ଦେଖାଯାଉନି । ତେବେ ଅଧୈର୍ଯ୍ୟ ହୁଅନ୍ତୁ ନାହିଁ । ଆଜି ଦିନକ ଆଶା ରଖନ୍ତୁ ।

ତ୍ୟାଗୀରାଜ ଚୌରାଶିଆ ଜଣେ ଇଞ୍ଜିନିୟର ହେଲେ ବି ଥିଲେ ଭାରି ଅନ୍ଧବିଶ୍ୱାସୀ । କୁକୁରଟି ଯେ ଆଉ ଫେରିବ ନାହିଁ, ସେ କଥା ସେ ବିଶ୍ୱାସ କରୁଥିଲେ ଓ ଏଣେ ପଣ୍ଡିତଙ୍କ କଥା ଉପରେ ମଧ୍ୟ ଭରସା ରଖୁଥିଲେ । ସେ ଦିନ ସେ ଛୁଟି ନେଇ ଘରେ ରହିଲେ । ତାଙ୍କର ବିମର୍ଷ ଭାବ ଦେଖି ଆଶ୍ୱାସନା ଦେବା ବଦଳରେ ତାଙ୍କ ସ୍ତ୍ରୀ ଓଲଟା ଆକ୍ଷେପ କଲେ । ମେଟିଂ ସିଜନ୍‌ମାନଙ୍କରେ କୁକୁରର ଶକ୍ତିକ୍ଷୟ ହୋଇଯିବ ବୋଲି ଆଳ ଦେଖାଇ ତାକୁ ବାନ୍ଧିରଖିଲ । କେବେ ବି ଟିକିଏ ଛାଡ଼ିଲ ନାହିଁ । କହିଲ, ସେମିତିରେ କୁକୁର ବୀରାଣିଆ ହେବ । ଅସନ୍ତୋଷରେ ସେ ବୀରାଣିଆ ତ ହେଲା, ଡହଳ ବିକଳ ବି ହେଲା । କୁକୁର ମଧ୍ୟ ଏକ ପ୍ରକାର ଝିଅପରି, ଘିଅପରି । ବେଶି ସାଇତି ରଖିବା କ୍ଷତିକାରକ, ବିପଜ୍ଜନକ । ତମେ କି ବୁଝ କୁକୁରର ମନର ବେଦନା ? କୁକୁର ହେଲା ବୋଲି କ'ଣ ତା'ର କ୍ଷୁଧା ନାହିଁ ? ନିଜକୁ ଦେଖି ତ ଅନ୍ତତଃ ତମେ ସେକଥା ବୁଝିପାରିଥାନ୍ତ !

ଚୌରାଶିଆଜୀ ନିଃଶ୍ୱାସ ନେବାକୁ କଷ୍ଟ ଅନୁଭବ କରୁଥିବା ଭଳି ଦେଖାଗଲେ । ତାଙ୍କ ମୁହଁ ଦେଖାଗଲା ଭୀଷଣ । ସେ କ୍ରୁଦ୍ଧ ଗଳାରେ କହିଲେ– ତମେ କ'ଣ ଜାଣିନାହଁ, ମୁଁ ସେ ନେଇ କେତେ ବ୍ୟସ୍ତ ହେଇଚି, କେତେ ଚିନ୍ତା ଓ ଉଦ୍ୟମ କରିଛି ।

କିନ୍ତୁ ଲାଭ କ'ଣ ହେଲା ? ଯେତେ ବଳିଷ୍ଠ ହେଲେ ବି ଦେଶୀ କୁକୁରଟା ବୋଲି ମୋର ପରିଚିତ ସମସ୍କନ୍ଦମାନେ ସେମାନଙ୍କର ତଥାକଥିତ ବିଦେଶୀ କୁତ୍ତୀମାନଙ୍କ ସହ ଏହାର କ୍ରସିଙ୍ଗ୍ କରାଇବାକୁ ବିଲ୍‌କୁଲ୍ ରାଜି ହେଲେ ନାହିଁ । ଏଣେ ଖବର ନେଲାବେଳକୁ ଇଡ଼ିଅଟ୍‌ଗୁଡ଼ାକ ଡଜନ ଡଜନ ସଂଖ୍ୟାରେ ଯାଇ ନିଜ ନିଜ କୁତ୍ତୀମାନଙ୍କୁ ସେମାନଙ୍କ ଉପରିସ୍ଥ ହାକିମମାନଙ୍କ କୁକୁର ଦ୍ୱାରା କ୍ରସିଙ୍ଗ୍ କରାଇଲେ । ଯେଉଁଦିନ ସେସବୁ କାର୍ଯ୍ୟକ୍ରମ ଥିବ, ସେଦିନ କି ଆନନ୍ଦ ଉଲ୍ଲାସ ! କି ଉତ୍ସବ ମୁଖର ହେଇ ଉଠନ୍ତି ସେମାନେ ! ବରକନ୍ୟାଙ୍କ ଚଉଠିରେ ଯେମିତିକି ନଣନ୍ଦ ଭାଉଜ ! ନନ୍‌ସେନ୍‌ସ ! କୁକୁରଟିଏ ପୋଷି ସୁଦ୍ଧା ଲୋକଙ୍କର ନଜର ଥାଏ କେମିତି ତା' ଜରିଆରେ ଫାଇଦା ପାଇବେ, କାହାର ଶୁଭଦୃଷ୍ଟିରେ ରହିବେ । ଭେଗା ଗୁଡ଼ାକ । କୁକୁର ପୋଷିଛି ବୋଲି ତା'ର ବେଦନା ବୁଝି ମୁଁ ଆଉ କ'ଣ ବୁଲା କୁତ୍ତୀମାନଙ୍କ ସହ ମିଶିବାକୁ ତାକୁ ଛାଡ଼ି ଦେଇଥାନ୍ତି ନା କ'ଣ ? ଏଡ଼ସ୍ ଫେଡ଼ସ୍ ଯେମିତି ବ୍ୟାପି ଚାଲିଛି, ତମେ ତ ସେ କଥା ଜାଣ ।

ତା'ପରଦିନ ସକାଳେ ତ୍ୟାଗୀରାଜ ଚୌରାଶିଆ ଖବର ପାଇଲେ, କୁକୁରଟିଏ ଦୁର୍ଘଟଣାର ସମ୍ମୁଖୀନ ହୋଇ ରିଂରୋଡ଼ ପାଖରେ ପଡ଼ିଛି । ଲନ୍ ଉପରେ । ଖୁବ୍ ସୁସ୍ଥ ସବଳ । ଭୟଙ୍କର ରୂପ । ଦେଶୀ ହେଲେ ବି ବିଦେଶୀ ପରି ଜଣାଯାଏ ।

ଖବରଟି ଶୁଣିବାମାତ୍ରେ ଚୌରାଶିଆଜୀ ଘଟଣାସ୍ଥଳକୁ ଗଲେ । କୁକୁରଟି ଲନ୍ ଉପରେ ଅନାଥ ପରି ମରି ପଡ଼ିଥିଲା । ପଚି ଯାଇଥିଲା । ଦୁର୍ଗନ୍ଧ । ନାକ ଫାଟିପଡୁଛି । ଜନତା ଅସନ୍ତୁଷ୍ଟ । ନାକରେ ରୁମାଲ ଦେଇ, ନିଃଶ୍ୱାସ ବାନ୍ଧି ରଖି ଛେପ ପକାଇ ପକାଇ ଲୋକମାନେ ଚାଲିଯାଉଥିଲେ । ଚୌରାଶିଆଜୀ ଖୁବ୍ ଆବେଗରେ ଥିଲେ । ଛାତିରେ କୋହ । ଆଖିରେ ଉଦ୍‌ଗତ ଅଶ୍ରୁ । ସେ ଏପରି ଭାବରେ କୁକୁରଟି ଆଡ଼କୁ ଆଗେଇ ଚାଲିଥିଲେ, ଯେମିତିକି ତାକୁ କୁଣ୍ଢାଇ ଧରିବେ । କୁକୁରଟି ପାଖରେ ଯାଇ ସେ ଠିଆହେଲେ । ପେଟ ଭିତରଟା ଆଉଣ୍ଡେଇ ଲାଗିଲା । ବାନ୍ତି ବାନ୍ତି ଲାଗୁଛି । ଦୁର୍ଗନ୍ଧ ଆଗରେ ପରାଜିତ ହେଇଯାଉଛି ବାତ୍ସଲ୍ୟ । କୁକୁରଟିକୁ ଛୁଇଁବାକୁ ସେ ନଇଁ ପଡୁଥିଲେ । ପୁଣି ଉଠିଗଲେ । ତାଙ୍କର ହାବଭାବ ଦେଖି କିଛି ଲୋକ ଜମା ହେଇ ସାରିଥିଲେ କିଛି ଦୂରରେ ।

ତ୍ୟାଗୀରାଜ ଚୌରାଶିଆ ଧୀର ପଦପାତରେ ଫେରୁଥିଲେ । ମସ୍ତକ ଅବନତ ।

– ଆପଣଙ୍କର ଏ କୁକୁର ?

– ହଁ, ମୋର ଥିଲା ।

– ବୋଧହୁଏ ଆପଣ ଏ ରାସ୍ତାରେ କେବେ ଯାଆନ୍ତି ନାହିଁ । କୁକୁର ପୋଷିବେ । ମରିଯିବା ପରେ ଫୋପାଡ଼ି ଦେଇଯିବେ ରାସ୍ତା ଉପରେ । ବାଃ...

– ମୁଁ ତ ଏଇଠି ଫୋପାଡ଼ି ଦେଇ ଯାଇନାହିଁ । କୁକୁରଟି ଏଇଠି ଦୁର୍ଘଟଣାର ସମ୍ମୁଖୀନ ହୋଇଛି ।

– ତା' ହେଲେ ତାକୁ ଉଠାଇବାର ବ୍ୟବସ୍ଥା କରୁ ନାହାନ୍ତି କାହିଁକି ?

ଏଥର ତ୍ୟାଗୀରାଜ ଚୌରାଶିଆ ବିରକ୍ତ ହେଲେ । କହିଲେ– କ୍ଷତିଗ୍ରସ୍ତ ଲୋକକୁ ଏମିତି ବ୍ୟଙ୍ଗ କରିବା କି ପ୍ରକାର ଶାଳୀନତା ? ଏ ସହରରେ ତ ଏହିଭଳି ମଣିଷମାନେ ସୁଦ୍ଧା ମରି ପଡୁଛନ୍ତି ରାସ୍ତା କଡ଼ରେ । ଆପଣମାନେ କ'ଣ ନାକରେ ରୁମାଲ ଦେଇ, ଗଦାଗଦା ଛେପ ଫୋପାଡ଼ି ଚାଲି ଯାଉ ନାହାନ୍ତି ନ ଦେଖିଲା ପରି ? ନିଜ ଛଡ଼ା ଅନ୍ୟ କାହା ଉପରେ ସହାନୁଭୂତି ଦେଖାଏ କିଏ ଏ ସହରରେ ? ହଲିଲା ପାଣିକୁ ଗୋଡ଼ ବଢ଼ାଇବାକୁ ପ୍ରାଣେ ଭୟ କରୁଥିବା ଆତ୍ମକୈନ୍ଦ୍ରିକ ମଣିଷଙ୍କର ଏଇ ସହରରେ ଅନେକ ବୁଲା କୁକୁର କ'ଣ ମରି ପଡୁ ନାହାନ୍ତି ରାସ୍ତା କଡ଼ରେ ? ସେଗୁଡ଼ିକୁ କ'ଣ ମୁଁ ବାହାର କରୁଛି ରାସ୍ତା ଉପରୁ ? ତାହା କ'ଣ ମୋ କାମ ?

ପ୍ରାୟ ଦୁଇଘଣ୍ଟା ପରେ ମ୍ଳେଚ୍ଛ ପରି ଦିଶୁଥିବା ଲୋକଟି ସେହି ସ୍ଥାନକୁ ଆସିଲା । ସେ ତା ନାକ ଓ ପାଟିରେ ଗାମୁଛା ଭିଡ଼ିଥାଏ । କୁକୁରଟି ପାଖରେ ବସି ସେ ଗୋଟିଏ ମୋଟା ଦଉଡ଼ିରେ କୁକୁରଟିର ଚାରୋଟି ଗୋଡ଼କୁ ଏକାଠି ବାନ୍ଧିଲା । ତା'ପରେ ସେ ଦଉଡ଼ିଟିକୁ ଟାଣିଟାଣି ରିଂରୋଡ଼ର କଡ଼େ କଡ଼େ ଚାଲିଲା । ସହରର ମୁଖ୍ୟ ନର୍ଦ୍ଦମା ଆଡ଼କୁ ।

ଲୋକଟି ଚାଲିଛି । ହାତରେ ଶକ୍ତ ଦଉଡ଼ି । ଟାଣୁଛି । ଆବଶ୍ୟକ ଶକ୍ତି ପ୍ରୟୋଗ କରି । ଅଧିକ ନୁହେଁ । ଊଣା ବି ନୁହେଁ । ଠିକ୍ ସମାନୁପାତିକ ଭାବେ । ତ୍ୟାଗୀରାଜ ଚୌରାଶିଆଙ୍କ ବପୁବାନ କୁକୁରଟିର ଜଡ଼ ଶରୀର ଘୋରି ହେଇ ହେଇ ଯାଉଛି । ସହରର ରାସ୍ତା ଉପରେ । ପରସ୍ତ ପରସ୍ତ ମାଂସ ଛିଣ୍ଡି ଯାଉଛି । ଆବୁଡ଼ା ଖାବୁଡ଼ା ରିଂରୋଡ଼ରେ ଘଷି ହେଇ ହେଇ । ଲେସି ହେଇ ଯାଉଛି ରାସ୍ତାରେ । ଲୋକଟି ଆବଶ୍ୟକ ଶକ୍ତି ପ୍ରୟୋଗ କରି ଟାଣୁଛି । ଅଧିକ ନୁହେଁ । ଊଣା ବି ନୁହେଁ । ସିଧା ଚାଲିଛି ଆଗକୁ । ପଛକୁ ଚାହିଁବା ଜରୁରୀ ମନେ କରୁନାହିଁ । ମଲା କୁକୁର ଟାଣିବାରେ ଛନ୍ଦ ନିୟମ ମାନିବ କାହିଁକି ? ପଛକୁ ଚାହିଁବାକୁ ମୁହଁ ବୁଲାଇଲେ ଓଲଟା ଅଧିକ ଦୁର୍ଗନ୍ଧ ହେବ । ଗାମୁଛା ଭେଦି ନାକ ପାଟିରେ ଖୁନ୍ଦି ହେଉଛି ଦୁର୍ଗନ୍ଧ । ପେଟ ଭିତରଟା ଘାଣ୍ଟି ହେଉଛି । ଲୋକଟି ତାର ଗତି କ୍ଷିପ୍ର କରୁଛି । କ୍ଷିପ୍ରରୁ କ୍ଷିପ୍ରତର । ନର୍ଦ୍ଦମା ପାଖରେ ପହଞ୍ଚିଗଲେ ଯାଏ । ଟାଣି ଟାଣି ସେ ହାଲିଆ ହେଲାଣି । ଆଉ ଅଳ୍ପବାଟ ।

ଖଣ୍ଡଖଣ୍ଡ ହୋଇ କୁକୁରଟିର ଚର୍ମ, ଚର୍ବି, ମାଂସ ଲାଗିରହୁଛି ରାସ୍ତାରେ । ଦୁର୍ଗନ୍ଧରେ ଫାଟି ପଡୁଛି ସହର । ଇସ୍ପାତ ନଗରୀର ବାୟୁମଣ୍ଡଳ ଦୂଷିତ । ଇସ୍ପାତୀ ମଣିଷମାନେ ବିଚଳିତ । ଅସନ୍ତୁଷ୍ଟ । ଦୁର୍ଗନ୍ଧ ଭୟରେ ସେ ରାସ୍ତାରେ ସୁଦ୍ଧା ଆଉ ଯାଉନାହାନ୍ତି କେହି ।

ବିଭିନ୍ନ ସ୍ଥାନରେ ଲୋକମାନେ ଆଲୋଚନାରତ। କିଏ ଅସନ୍ତୋଷ ବ୍ୟକ୍ତ କରୁଛି। କିଏ କାହାକୁ ଦୋ ଅକ୍ଷରୀରେ ଶୋଧୁଛି ଓ ମୂଳଟା କେଉଁଠି ଜାଣି ନାହିଁ। କିଏ କହୁଛି– ସଂସାରରେ, ଦୁର୍ଗନ୍ଧରେ, ନର୍କରେ ଆଉ ଚଳିହେବ ନାହିଁ। ବିଭିନ୍ନ ସ୍ଥାନରେ ମେଳିବାନ୍ଧି ଲୋକମାନେ ଆଲୋଚନାରତ।

– ଇଏ କ'ଣ ମ୍ୟୁନିସିପାଲିଟିର ମେହେନ୍ତର ନୁହେଁ କି? ଠେଲା ଗାଡ଼ିରେ କୁକୁରଟିକୁ ନ ନେଇ ଟାଣି ଟାଣି ନେବାକୁ ଯାକୁ କିଏ ବୁଦ୍ଧି ଦେଲା?

– ଏତେ ବଡ଼ ସହର। ଏଠାରେ ଦୁଇ ଦୁଇଟା ପୌରପାଳିକା। ଅଥଚ ଠେଲାଗାଡ଼ି ନ ଥିବ?

– ନା, ମ୍ୟୁନିସିପାଲିଟିର ମେହେନ୍ତର ନୁହେଁ। ନିଶ୍ଚୟ ଲୋକଟା କାହାଠାରୁ ମଜୁରୀ ନେଇ ଏ କାମ କରୁଛି।

– ମଜୁରୀ ନେଇ କୁକୁର ଉଠାଉଛି, ନା ଚାରିଆଡ଼େ ଦୁର୍ଗନ୍ଧ ଖେଳାଉଛି?

– ତାହା ମଧ୍ୟ ହେଇପାରେ। କିଛି ବିଚିତ୍ର ନୁହେଁ। କିଛି ଅସମ୍ଭବ ନୁହେଁ। ତା' ନ ହେଲେ ଅଖାରେ ପୂରାଇ ମଧ୍ୟ ତ ନେଇ ପାରିଥାନ୍ତା; ଟାଣି ଟାଣି ନେଉପଛେ ମୁଣ୍ଡାଇ ନେବା ବଦଳରେ।

– ଲୋକଟି ତା ମନକୁ ଏ କାମ କରୁଥାଇ ପାରେ, ସହରକୁ ପରିଷ୍କାର ରଖିବା ପାଇଁ। ଉଦ୍ଦେଶ୍ୟ ମହତ୍। କିନ୍ତୁ ଲୋକଟା ହୁଏତ ଟିକିଏ ବୋକା। ତେଣୁ ଠିକ୍‌ଭାବେ କାମଟି କରି ପାରି ନାହିଁ। ଏ ସହର, ତମର ବି ସହର। ସମସ୍ତଙ୍କ ସହର। ଏହାକୁ ପରିଷ୍କାର ପରିଚ୍ଛନ୍ନ ରଖିବା ତମର ମଧ୍ୟ ଦାୟିତ୍ୱ। ତୁମକୁ ଯଦି ଏତେ ଗନ୍ଧ ହେଉଛି, ତମେ ନିଜେ ସେ କାମଟି କଲନାହିଁ?

– ସେ କଥା ଛାଡ଼। ପରସ୍ପର ମଧ୍ୟରେ କନ୍ଦଳ କରି ଲାଭ କ'ଣ? ଦେଖୁଛ ତ ଚତୁର୍ଦ୍ଦିଗ ଗନ୍ଧିଗଲା। ଏଠି ଆଜି ତିନି ଚାରିଜଣ ମନ୍ତ୍ରୀଙ୍କୁ ନେଇ ସଭା ହେବା କଥା ଥିଲା, ଗନ୍ଧିଗଲା। ସଭାରେ, ଆଖ ପାଖର କେଉଁଠି ଆଉ ଗୋଟେ ଇସ୍ପାତ କାରଖାନା ରାତାରାତି ଠିଆ କରାଇବା ବିଷୟ ଚୂଡ଼ାନ୍ତ ହେବାର ଥିଲା; ଗନ୍ଧଗଲା। ଏଠାରେ ଆସନ୍ତା କାଲି ଗୋଟିଏ ପ୍ରଦର୍ଶନୀ କ୍ରିକେଟ୍ ମ୍ୟାଚ କରାଯାଇ ସଂଗୃହୀତ ଅର୍ଥରେ ଯୁବକଙ୍କ ପାଇଁ ସ୍ୱପ୍ନ, ନେତୃବୃନ୍ଦଙ୍କ ପାଇଁ ଆଦର୍ଶ, ନାରୀଙ୍କ ପାଇଁ କୋମଳତା, ଦେଶପାଇଁ ସଂସ୍କୃତି, ଜନସାଧାରଣଙ୍କ ପାଇଁ ମୂଲ୍ୟବୋଧ ଓ ଆହୁରି ଅନେକ କିଛି କ୍ରୟ କରାଯିବାର ଯୋଜନା ଥିଲା; ଗନ୍ଧିଗଲା।

ଲୋକଟିର୍ ପାଖକୁ କେହି ଯାଉ ନଥିଲେ। ସେ ଦଉଡ଼ି ଟାଣି ଟାଣି ଏକ ଲୟରେ ଚାଲିଛି। ଆଗକୁ ଆଗକୁ। ପଛକୁ ଚାହିଁବାକୁ ଇଛା କରୁନି। ଟାଣୁଛି ଦଉଡ଼ି। ଆବଶ୍ୟକ ଶକ୍ତି ପ୍ରୟୋଗ କରି। ଅଧିକ ନୁହେଁ। ଊଣା ବି ନୁହେଁ। କୁକୁରଟିକ୍

ନର୍ଦ୍ଦମାରେ ପକାଇବା ତା'ର ଲକ୍ଷ୍ୟ । ତା'ଛଡ଼ା ଆଉ ଅଧିକ ସେ କିଛି ବୁଝେନା । ଜାଣେନା । ପ୍ରୟୋଜନୀୟତା ଅନୁଭବ କରେନା । ସହରରୁ ଦୁର୍ଗନ୍ଧ ଦୂର ହେଲେ କେତେ, ନ ହେଲେ କେତେ ? ସହର ଗନ୍ଧିଗଲେ କି ଚହଟିଗଲେ, ତା'ର ଭଲା କି ବା ଯାଏ ଆସେ ?

ଅବଶେଷରେ ସେ ନର୍ଦ୍ଦମା ନିକଟରେ ପହଞ୍ଚିଲା । ସହରର ମୁଖ୍ୟ ନର୍ଦ୍ଦମା । ସହରର ମୁହଁ । ଦଉଡ଼ି ଟାଣିବା ବନ୍ଦ କଲା । ଠିଆ ହେଲା ।

ଚାହିଁଲା–

ଚାହିଁଲା ପଛକୁ ।

ନର୍ଦ୍ଦମାକୁ ।

ପୁଣି ପଛକୁ ।

ତା'ପରେ ଚତୁର୍ଦ୍ଦିଗକୁ ।

ଏ କ'ଣ ? ଚାରୋଟି ଗୋଡ଼ର ହାଡ଼ କେବଳ ରହିଛି ବନ୍ଧା ହେଇଥିବା ଦଉଡ଼ି ସହିତ ! ହାଡ଼ ଉପରେ ସ୍ଥାନେ ସ୍ଥାନେ ହଳଦିଆ, ଲାଲ, ଗୋଲାପୀ ରଙ୍ଗ ଛଡ଼ା ଆଉ କିଛି ହିଁ ଅବଶିଷ୍ଟ ନାହିଁ । କିନ୍ତୁ... କିନ୍ତୁ...? କିନ୍ତୁ ଟାଣିଲାବେଳେ ତ ଏତେ ହାଲୁକା ଲାଗୁ ନଥିଲା !

ହାୟରେ... ।



## ପଙ୍କଜ ପାଳ

# ଜଳଯକ୍ଷ

ସ୍ୱାତୀ ଦେଖିଲେ,

ସାମ୍ନାରେ ତାଙ୍କର ଇଷତ୍ ସବୁଜ ରଂଗର ବେଂଗଟିଏ ଡେଇଁ ଡେଇଁ ଘର ଭିତରକୁ ପଶି ଆସିଲା । ତଳେ ବିଛା ହୋଇଥିବା କାର୍ପେଟ ଉପରେ ବସିପଡ଼ିଲା । ନିର୍ଦ୍ୱନ୍ଦ୍ୱରେ ।

ବସିଲା ଏମିତି ଢଂଗରେ ଯେମିତି ନିମନ୍ତ୍ରିତ ଅତିଥିଟିଏ, ବଡ଼ ସଂଭ୍ରମରେ ।

ସ୍ୱାତୀ ତାକୁ ଚାହିଁ ରହିଲେ ଗଭୀର ଭାବରେ । ମନେହେଲା ସେ ତାକୁ ଠିକ୍ ଠଉରେଇ ପାରୁ ନାହାଁନ୍ତି ।

"ଉପରାନ୍ତ ସେ ! ଉପରାନ୍ତ ।" ମୁଁ ତାଙ୍କୁ ସ୍ମରଣ କରେଇ ଦେଲି ।

ଅନେକ ଦିନ ତଳେ ସେମିତି ଏକ ନାଁ, ମୁଁ ତାର ଦେଇଥିଲି । ସେ ଦିନ ବର୍ଷା ଝିପିଝିପି ସକାଳଠୁଁ ଆରଂଭ ହୋଇ ଯାଇଥିଲା, ବର୍ଷୁଥିଲା ଯେ ବର୍ଷୁଥିଲା । ସେ ଦିନ ଟିକିଏ ବେଳାବେଳି ସ୍ୱାତୀ ସଂଧ୍ୟାଧୂପ ଘରେ ଦେଇ ଦେଇଥାଆନ୍ତି । ସେଇ ମଧୁର ବାସ୍ନା ଭିତରେ ଆମେ ଘର ଭିତରେ ବସି ସ୍ୱାତୀ ତିଆରି କରି ଆଣୁଥିବା ଗରମ ପକୋଡ଼ି ଖାଉଥିଲୁ । ଟିଭିରେ କ'ଣ ସିନେମା ଚାଲିଥିଲା । ଏତିକିବେଳକୁ ଘର ଭିତରକୁ ଖପ୍‌ଖପ୍ ହୋଇ ଡେଇଁ ଡେଇଁ ଏଇ ଜନ୍ତୁଟି ପଶି ଆସିଲା ।

ସ୍ୱାତୀ ସୋଫାରୁ ଉଠି ପଡ଼ି ଚିଲେଇ ଉଠିଲେ । ତାଙ୍କ ମଥାରେ ଝାଳ ଜମି ଆସିଲା । ଗୋଟାଏ କଂପନ ତାଙ୍କ ଦେହରେ ସୃଷ୍ଟି ହେଲା । ସେ ହାଉହାଉ ହୋଇଉଠି କହିଲେ, "ହଟାଅ ତାକୁ ମୋ ଆଗରୁ । ଫୋପାଡ଼ି ଦିଅ । ମାରିଦିଅ ତାକୁ ।"

କହୁ କହୁ ହଠାତ୍ ଶବ୍ଦଗୁଡ଼ାକ ଯେମିତି ମିଳେଇ ଗଲା ପାଟି ଭିତରେ । ସେ ପ୍ରପଞ୍ଚ ଦିଶୁଥାନ୍ତି । ତାଙ୍କୁ କେନ୍ଦ୍ର କରି ଗୋଟାଏ ଅଜବ ନୀରବତା ଛାଇଗଲା ଘର ଭିତରେ । ଆଖି ଭିଜି ଆସିଲା । ଭୟାତୁର ସ୍ୱରରେ ସେ କହିଲେ, "ତୁମେ ତ ଜାଣ ! ମୋତେ ଏ ସାପ, ବେଂଗ, ବିଲେଇ, ମୂଷା, ଚୁଚୁଂଦ୍ରା, ଝିଟିପିଟି କୀଟ ପତଂଗ,

ପୋକ ଜୋକ ଜମା ଭଲ ଲାଗେ ନାହିଁ । ମୁଁ ଜମା ତାଙ୍କୁ ସହି ପାରେନି । ଏହାକୁ ଶୀଘ୍ର ବାହାର କର ଘର ଭିତରୁ । ମତେ ଡର ଆସୁଛି । ଘୃଣା ଲାଗୁଛି ।”

ମୁଁ ନୀରବରେ ସ୍ୱାତୀଂକୁ ଚାହିଁ ରହିଲି । ସାମାନ୍ୟ ବେଂଗଟାଏ ଦେଖି, ତାଂକର ଏ ଭଳି ପ୍ରତିକ୍ରିୟା ମୋତେ ଚକିତ କରି ଦେଇଥିଲା । ମୁଁ ଆଦୌ ବୁଝି ପାରୁନଥିଲି ତାଂକୁ । କ'ଣ ଉତ୍ତର ଦେବି ଭାବି ପାରୁନଥିଲି । ଇଚ୍ଛା ହେଉଥିଲା ପଚାରିବି–

“ଏ ପୃଥିବୀଟା କ'ଣ ଏକା ତୁମର ସୁଂଦରୀ? ତୁମ ଇଚ୍ଛାରେ କ'ଣ ଏ ଜୀବଜଗତ ପରିଚାଳିତ ହେବେ । କି ଆବସତ୍ କଥା!” ମୁଁ ତାଂକୁ କିଛି କହିପାରିଲି ନାହିଁ । କହି ତାଂକୁ ଲାଭ ବା କ'ଣ! ସେ କ'ଣ ଶୁଣିବେ କିଛି! ମାତ୍ର ସ୍ୱାତୀଙ୍କର ପ୍ରତିକ୍ରିୟା ମତେ ବଡ଼ ଅସ୍ୱାଭାବିକ ଲାଗୁଥିଲା । ମୁଁ ବି ବୁଝି ପାରୁ ନଥିଲି ଏହାର କାରଣ କ'ଣ ହୋଇପାରେ?

ଅତ୍ୟଧିକ ଭୟ! ନା, ଅତ୍ୟଧିକ ଘୃଣା?

ମନକୁ ଆସିଲା ନିପଟ ମଫସଲ ଗାଁର ଝିଅଟିଏ ସ୍ୱାତୀ । ଚାଷୀ ପରିବାର । ପାଣି କାଦୁଅ ହଳ ଲଂଗଳର, ପୋକ ଜୋକ, ଗେଂଡା ସାମୁକା, ସାପ ବେଂଗର ଜୀବନ । ତାରି ଭିତରେ ବଢ଼ିଛନ୍ତି ସେ ।

ଅଥଚ ଆଜି, ତାଂକ ପାଇଁ ମୁହିଁ ହୀନ ପାଲଟି ଯାଇଛି, ସେ ସବୁ ଅନୁଭବ ।

ମନସ୍ତତ୍ତ୍ୱବିତ ମାନେ କୁହନ୍ତି– ବାଲ୍ୟକାଳ କେବେ ମରେନି ମଣିଷ ଭିତରୁ ।

ମୁଁ ଆଉ ବିଳଂବ କଲି ନାହିଁ । ବେଂଗଟିକୁ ଖଣ୍ଡେ କନା ପକେଇ ସତର୍କତା ସହ ଧରିନେଲି । ଗୋଟିଏ ଜାର ଭିତରେ ଭରି ଦେଇ ସ୍ୱାତୀଙ୍କ ଠାରୁ କିଛି ଦୂରରେ ରଖି ଦେଲି ।

ସ୍ୱାତୀଂକ ସାମ୍ନାରେ ବସିଯାଇ ତାଂକ ଆଖିକୁ ଚାହିଁଲି । ଆଖି ଭିତରେ ଭରି ରହିଥିଲା ଗୋଟାଏ ଅହେତୁକ ଭୟ । ତାଂକ ହାତର ପାପୁଲି ଦୁଇଟିକୁ ମୋ ପାପୁଲି ଭିତରେ ଚାପି ଧରି କହିଲି, “ମୋ ଆଖିକୁ ଚାହଁ ସ୍ୱାତୀ, ଚାହଁ । ମୋତେ କୁହ, ତୁମେ ତ ଏତେ ଡରକୁଳୀ ନୁହଁ । ନିରୀହ ବେଂଗଟିକୁ ଏତେ ଭୟ କଲ କ'ଣ?

ଦେଖ ତ, ଜାର୍ ଭିତରେ ବେଂଗଟି କେମିତି ନେପେଟେଇ ପଡ଼ିଛି, ଯେମିତି ତା'ର ସ୍ଥିତି ନାହିଁ । ଯେମିତି ଅଦୃଶ୍ୟ ହୋଇଯିବାକୁ ଚାହୁଁଛି ସେ । ଦେଖ, ତୁମର ପ୍ରତିକ୍ରିୟା ଦେଖି କେତେ ଆତଂକିତ ହୋଇ ଯାଇଛି ସେ । ଏମିତି ଭୟାତୁର ଜୀବଟିକୁ ତୁମେ ଭୟ କରୁଛ! ହାଏ, ହାଏ ।

ମୋର ତ ଇଚ୍ଛା ହେଉଛି, ତୁମ ଭୟର ଗୋଟାଏ ସାମ୍ପଲ କରି ରଖି ବେଂଗଟିକୁ ପାଳିବାକୁ । ଲୋକମାନଂକୁ ଦେଖେଇବାକୁ, ‘ଦେଖଂତୁ ସ୍ୱାତୀଂକ ଭୟକୁ' ।

ସ୍ୱାତୀ ମୋ ପାପୁଲି ଭିତରେ ମୁହଁ ଗୁଂଜି ଦେଇ କହିଲେ, "କ'ଣ ହେଲା ମୋର କେଜାଣି! ଏମିତି କାହିଁ ଲାଗିଲା। ଭୁଲିଯାଅ ସେ ସବୁ କଥା। ବେଂଗଟିକୁ ନେଇ ବାହାରେ ଛାଡ଼ି ଦେଇ ଆସ।"

"ବେଗଂଟିକୁ ରଖିବାକୁ ମୋର ତ ଇଚ୍ଛା।"

"ଇ ମା'! ମତେ କ'ଣ ଲୋକହସା କରିବ!"

"ବେଂଗଟିର ନାଁଟିଏ ଦେବାକୁ ଇଚ୍ଛା ହେଉଛି।"

"ମୋର ତ ମନେ ହେଉଛି, ତୁମେ ତା ପ୍ରେମରେ ପଡ଼ିଗଲଣି।" ସ୍ୱାତୀ ପରିହାସ କଲେ, "ହଉ ଭଲ ନାମଟିଏ ବାଛ।"

ସ୍ୱାତୀ ନାଁଟି ଶୁଣି ଖୁସି ହୋଇଗଲେ। ମୁଁ ତାଙ୍କୁ ସଂଗେ ସଂଗେ ଅନୁରୋଧ କଲି, "ଟିକିଏ ସିଂଦୁର ଆଣ ସ୍ୱାତୀ। ଉପରାନ୍ତକୁ ମଥାରେ ପିଂଧାଇ ଦେବା। ତାକୁ ବି ଜଣେଇ ଦେବା ଆମ ଘର ସବୁବେଳେ ତା ପାଇଁ ଉନ୍ମୁକ୍ତ। ସେ ଯେତେବେଳେ ଇଚ୍ଛା କରିବ ଆସି ପାରିବ। କ'ଣ କହୁଛ ସ୍ୱାତୀ?"

"ତୁମର ଏ ପିଲାଳିଆମୀ ବଡ଼ ହାସ୍ୟାସ୍ପଦ। ମୁଁ କିନ୍ତୁ ତାକୁ କେବେ ଗ୍ରହଣ କରି ପାରିବି ନାହିଁ। ତାକୁ ଯାଇ ବରଂ ଶୀଘ୍ର ବାହାରେ ଛାଡ଼ିଦେଇ ଆସ। ସେ ସବୁ ଧଂଦାରେ ମାତନା। ମୋତେ ଆଦୌ ଏ ସବୁ କଥା ଭଲ ଲାଗୁ ନାହିଁ। ତୁମେ ବୁଝନା କାହିଁକି, ଏ ବେଂଗଟାକୁ ଅନୁଶରଣ କରି ଦିନେ ସାପଟାଏ ପଶି ଆସିବ। ବୁଝୁଛ ତ ତାର ଅର୍ଥ!" ସ୍ୱାତୀ ଗଭୀର ଆଶଂକା ପ୍ରକଟ କରି ମୋତେ ଚାହିଁ ରହିଲେ।

ସ୍ୱାତୀଙ୍କ ସାପ ପ୍ରସଂଗରେ ମୋର ମନେ ପଡ଼ିଗଲା, କବିଚଂଦ୍ର ହାଂସଦାଂକ ସାପ ଉପରେ ଥିବା କବିତା କେଇ ଧାଡ଼ି। ମୁଁ ସ୍ୱାତୀଙ୍କୁ ଶୁଣାଇବା ଇଚ୍ଛାରେ ଥରେ ସ୍ପଷ୍ଟ ସ୍ୱରରେ ଆବୃତ୍ତି କଲି–

"ହଳଦୀ ଗୁରୁଗୁରୁ ଛୋଟ ସାପଟିଏ-
ବଡ଼ କିୟୁଟ୍
ଦଂଶନ ଦେବାକୁ ଫଣା ଟେକିଛି, ମୁଁ
ମଥା ପାତି ଦେଲି ସୁଂଦରୀ
ଦେ' ଦଂଶନ, ଦେ'
ମୋର ପୁନର୍ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ
ନୀଳବର୍ଣ୍ଣୀ କରି ଦେ ମୋତେ!"

କବିତାଟି ଶୁଣୁ ଶୁଣୁ ସ୍ୱାତୀଂକ ମୁହଁ ଲାଲ ପଡ଼ିଗଲା। ସେ ନିଜକୁ ଧାରଣ କରି ପାରିଲେ ନାହିଁ। ନେସଡ଼ି ପଡ଼ିଲେ ସୋଫା ଉପରେ। ମଥାରେ ହାତ ଦେଇ ବିପର୍ଯ୍ୟସ୍ତ ଭାବେ କାଂଦି ଉଠିଲେ–

"ମୁଁ ସାପ !
ମୁଁ ତୁମକୁ ଦଂଶନ କରୁଛି ?
ମୃତ୍ୟୁ ପର୍ଯ୍ୟନ୍ତ !"

ପରିବର୍ତ୍ତିତ ଏଭଳି ଏକ ଅକଳ୍ପିତ ପରିସ୍ଥିତି ଦେଖି ମୁଁ ହତ୍‌ବେତ୍‌ଇ ଗଲି । କ'ଣ କରିବି, ଠିକ୍ ବୁଝି ନପାରି ସ୍ୱାତୀଙ୍କ ସାମ୍ନାରୁ ସେ ଉପରାନ୍ତ ବେଂଗ ଥିବା ଜାରଟିକୁ ଧରି ଘରୁ ନିଷ୍କ୍ରାନ୍ତ ହୋଇଗଲି ।

ଘରର ପାଣିପାଗ ୩/୪ ଦିନ ଧରି ଅପରିବର୍ତ୍ତିତ ରହିଲା । ତୁହାକୁ ତୁହା ବର୍ଷା, ବିଜୁଳି, ଘଡ଼ଘଡ଼ି ସହ ୭୦/୮୦ କି.ମି ବେଗରେ ପବନ ଓ ସମୁଦ୍ରର ୧୫-୨୦ ମିଟର ଉଚ୍ଚା ଯୁଆର ପରିସ୍ଥିତିକୁ ବିପନ୍ନ କରିରଖିଲା । ଆମେ ଭୁଲିଗଲୁ ପରିବାରର ନିତ୍ୟ ନୈମିତ୍ତିକ ଜୀବନଧାରା । ସ୍ୱାତୀ ସବୁବେଳେ ବିଛଣା ଉପରେ ଶୁଖି ଯାଇଥିବା ନଦୀଟିଏ ଭଳି ପଡ଼ି ରହିଥାନ୍ତି । ମୁଁ ଚୁଚୁଂଦ୍ରାଟିଏ ଭଳି କଡ଼ ଛପେଇ ଚିଂ ଚିଂ ହୋଇ ରହୁଥାଏ ।

ପାଂଚ ଦିନ ପାଗ ଟିକିଏ ପରିବର୍ତ୍ତନମୁଖୀ ଲାଗିଲା । ମୁଁ ଖଟ ତଳେ ଠିଆ ହୋଇ କହିଲି, "ସ୍ୱାତୀ ! ଯାହା ଘଟିଗଲା ସେଥିପାଇଁ ମୁଁ ନିଜକୁ ସଂପୂର୍ଣ୍ଣ ଭାବେ ଦାୟୀ ବୋଲି ସ୍ୱୀକାର କରୁଛି ଏବଂ ନିସର୍ତ୍ତ କ୍ଷମା ଭିକ୍ଷା କରୁଛି । ଉଠ ଏଥର । ଆଖି ବଂଦ କରି ବିଛଣାରେ ପଡ଼ିଥିବା ସ୍ୱାତୀଂକୁ ମୁଁ ନଇଁପଡ଼ି ଚୁମାଟିଏ ଦେଲି । ସେ ଉଚ୍ଛନ୍ନ ହୋଇ ଉଠିପଡ଼ି ବେଡ଼ିଗଲେ ମୋ ଦେହରେ ।

କିଛି ସମୟ ପରେ ମୋ ସାମ୍ନାରେ ସ୍ୱାତୀ ବସି ରହି ହସୁଥାନ୍ତି କାଂଦୁଥାନ୍ତି । ମୁହଁ ତାଂକ ଦିଶୁଥାଏ କାର୍ତ୍ତିକ ମାସର ସୂର୍ଯ୍ୟାସ୍ତ ଭଳି । ଉଜ୍ଜ୍ୱଳ, ସ୍ୱର୍ଣ୍ଣାଭ ଶୁଖିଲା ଓ ଲୋଭନୀୟ ଭାବେ ସୁଂଦର ।

ସେଇ ଦିନଠାରୁ ଉପରାନ୍ତର ପ୍ରସଙ୍ଗ ଆମପାଇଁ ପାଲଟିଗଲା ଗୋଟାଏ ମଲା ପ୍ରସଂଗ ।

ଅନେକ ଦିନ ପରେ, ଆଜି ବେଂଗଟିଏ ଚାଲି ଆସିଛି ।

କିଛି ସମୟ ନୀରବରେ ସେ ବସି ରହିଲା ସ୍ୱାତୀଙ୍କ ଅଲକ୍ଷ୍ୟରେ ଚଟାଣ ଉପରେ । ତା'ପରେ ହଠାତ୍ ଦେଲା ଗୋଟାଏ ମହାଲଂଫ । ଏତେ ଲଂବା ଓ ଉଚ୍ଚା ଲଂଫରେ ବି ନିଜକୁ ସ୍ଥିର ରଖି ସାମ୍ନାରେ ପଡ଼ିଥିବା ସୋଫାଟି ଉପରେ ବସି ପଡ଼ିଲା, ମହାଦର୍ପରେ । ଅଭିନୟରେ ମହାରାଜାଟିଏ ଭଳି ।

ସେତେବେଳେ ସାରା ସଂସାର ତା'ର ଯେପରି କରାୟତ୍ତ ଦିଶୁଥିଲା ।

ସାମ୍ନା ସୋଫା ଉପରେ ବସିଥିବା ସ୍ୱାତୀ ହଠାତ୍ ଦେଖିଲେ ବେଂଗଟିକୁ । ସେ ଛାନିଆ ହୋଇଗଲେ । ସେତେବେଳକୁ ମୁଁ କମ୍ପ୍ୟୁଟର ପାଖରେ ଥାଏ ।

କବି ଚଂଦ୍ର ହାଂସଦାଂକ ନୂଆ କବିତା ବହି 'ଉଡ଼ିବାର ବେଳ' ପାଣ୍ଡୁଲିପିଟିକୁ ଡି.ଟି.ପି. କରିବା ପାଇଁ ପବ୍ଲିଶର୍ସଙ୍କ ପାଖରୁ ଆଣିଛି । ବହିଟିକୁ ପନ୍ଦର ଦିନ ଭିତରେ ବାହାର କରିବାକୁ ହେବ । ଆଗରେ ପୁସ୍ତକ ମେଳା । ବହିଟି ସେଇ ମେଳାରେ ହିଁ ଉନ୍ମୋଚିତ ହେବ । ମୁଁ ସେଇ କାମରେ ବ୍ୟସ୍ତ ।

ମୋତେ ଶୁଭିଲା ସ୍ୱାତୀଙ୍କ ଉଛନ୍ନ ସ୍ୱର ।

ଚଂଦ୍ର ହାଂସଦାଂକ କବିତାରେ ଜୁ' ଅଛି । ନିଆଁ ଧୂଆଁର ହେି. ଚୈ ଅଛି । ନୂଆ ସାର୍ଟଟିଏ ଭଳି ଗଳେଇ ପକେଇବାର ଆକର୍ଷଣ ଅଛି । ସେ କବିତାରେ ଗଭୀରତାରେ ମୁଁ ମୁଗ୍ଧ ହୋଇ ଯାଉଥିଲି । ପଦେ ପଦେ କବିତା ମତେ କାର୍ଯ୍ୟହୁଡ଼ା କରି ଦେଉଥିଲା । ମାତ୍ର ସେଥିପାଇଁ ମୋର ପରୱା ନଥିଲା । ଭାବୁଥିଲି, ଢେର ସମୟ ଅଛି । ଗୋଟାଏ ରାତିକୁ କାମ ନାହିଁ !

ଚାପରେ ରାତିଟା, ଖୁବ ଲଂବା ନା !

ମନରୁ କୋଳାହଳ ସବୁ ଆଡ଼େଇ ହୋଇ ଯାଉଥିଲା । ଚଂଦ୍ର ହାଂସଦାଂକ କବିତା ଧାଡ଼ି କେଇଟି ବାରମ୍ବାର ରୂପାନ୍ତରିତ ହେଉଥିଲା ମୋ ଭିତରେ ।

ମୁଁ ସ୍ୱାତୀଂକର ଅସହାୟ ସ୍ୱର ଶୁଣି ଆସି ଦେଖିଲି–

ସେ ଭୟ ଓ ଉତ୍ତେଜନାରେ ଠିଆ ହୋଇଥାନ୍ତି ସୋଫା ଠାରୁ ଦୂରରେ । ବୋଧେ ସେ ମନେ କରୁଥିଲେ, ନିରୀହ ଦେଖା ଯାଉଥିଲେ ବି ବେଂଗଟି ବଡ଼ ସଂତ୍ରାସୀ । ଆତ୍ମଘାତୀ ବେଂଗଟିଏ ସେ ! ଆଦିବାସୀଟିଏ, ନିର୍ମୂଳି ଦେଖାଯାଉଛି ସିନା ପ୍ରକୃତରେ ସେ ଗୋଟାଏ ମାଓବାଦୀ । ଧରି ଗଳା କାଟି ଦେବେ କି, କି ତାଙ୍କ ସାନ ସାନ ଡାଳକଟା ଟଂଗିଆରେ ବୀଭତ୍ସଭାବେ ହାତ ଗୋଡ଼ ହାଣି ପକେଇବ । ଅଥବା ଯା'ବି ହୋଇପାରେ, ବଂଧୁକରେ ସାମ୍ନାରୁ ହିଁ ପଏଣ୍ଟ ବ୍ଲାଂକରୁ ଗୁଳି କରିଦେବ । ବଡ଼ ଭୟଂକର ଦଗାବାଜ୍ ଜୀବ ସେଇଟା ମନେ ହେଉଛି ।

ବେଂଗଟି ଚୁପ୍‌ଚାପ୍ ସେଇ ଗୋଟିଏ ଜାଗାରେ ବସି ରହିଥିଲା, ତଥାପି ।

ସ୍ୱାତୀଂକ ମୋର ଏ ନିର୍ବିକାର ଭାବ ଦେଖି ଉଛୁଳି ପଡ଼ିଲେ । ସେ ଖୁବ ବିରକ୍ତିରେ ମତେ ଚାହିଁ ରହିଥିଲେ । ସେ ବୋଧେ ମନେ କରୁଥିଲେ, ଏ ସବୁଥି ପାଇଁ ଯେପରି ମୁଁ ଦାୟୀ । ମୋରି ଅଭିସଂଧୀମୂଳକ ପ୍ରରୋଚନାରେ ଯେପରି ଏ କାଣ୍ଡ ସବୁ ଘଟୁଛି, ଏ ସବୁ ଷଡ଼ଯନ୍ତ୍ର । ନହେଲେ ବେଂଗଟା ଏ ଯାବତ ନିର୍ଭୟରେ ବସିଥାନ୍ତା ସୋଫା ଉପରେ ଏବଂ ସ୍ୱାତୀ ଠିଆ ହୋଇଥାଂତେ ତଳେ । ସ୍ୱାତୀଂକର ଅହଂକାର, ଦାମ୍ଭିକା ସ୍ୱଭାବ, ଗଉଁପଣ ସବୁ ଦେଖିଛି ମୁଁ ! ଆଜି ଏଇ ବିକଳିଆ ଅନୁନୟଭରା ସ୍ୱର ମତେ ଭଲ ଲାଗିଲା ନାହିଁ ।

"ବହୁତ ସହିଲିଣି ତୁମ ଉପରାନ୍ତର ଉପଦ୍ରବ । ଏ ଘରେ କେଉଁଠି ସେ ଛପି ରହୁଛି । କେହି ନଥିଲା ବେଳେ ବାହାରୁଛି । ବେଳେବେଳେ ବଡ଼ କର୍କଷ ଭୟାନକ ରଡ଼ି ଛାଡୁଛି ଯେ, ସାତ ତାଳ ପାଣି ପଙ୍କ ତଳ ବି ରଖେଇ ଦେବନି । ସେ ରଡ଼ି ଶୁଣି ମୁଁ ବିଚଳିତ ହୋଇ ପଡୁଛି ଯେ ସଂଭାଳି ପାରୁନାହିଁ । ତାକୁ ଖୋଜି ବାହାର କଲାବେଳକୁ ଆଖି ଆଗରେ କେଉଁଠି ପୁଣି ଛପି ଯାଉଛି । ପୁଣି କେତେବେଳେ ଉପରକୁ ଡେଉଁଛି ଯେ ମୋ ଲୁଗା ଭିତରେ କେଉଁଠି କେଉଁଠି ପଶି ଯାଉଛି ଯେ, ମୋତେ ଉଲଗ୍ନ ହେବାକୁ ବି ପଡୁଛି ।" କହୁକହୁ ହଠାତ୍ ନିରବ ହୋଇଗଲେ ସ୍ୱାତୀ । ଦେଖାଗଲେ ବଡ଼ ଗୁମ୍‌ସୁମ୍, "ଦେଖିବ, ମୁଁ ତୁମ ଉପରାନ୍ତକୁ ଦିନେ ମାରି ଦେଇଥିବି ।" ସ୍ୱାତୀଙ୍କ ସ୍ୱର, ନିଷତିର ସ୍ୱର ଭଳି ଶୁଭିଲା ସ୍ଥିର ଓ ଭୟାବହ ।

ମୁଁ ଚଂଚଳ ହୋଇ ଉଠିଲି । ବିଳମ୍ବ ନ କରି ଚିରା ମଶାରି କନା ଖଣ୍ଡେ ନେଇ ଆଣି ଚାହିଁଲି ବେଂଗଟିକୁ । ବଡ଼ ନିରୀହ ଦିଶୁଥିଲା ସେ ସୋଫା ଉପରେ ବସିରହି । ଖେଦା ପକେଇଲା ଭଳି ତା'ଉପରେ ସତର୍କରେ ପକେଇ ଦେଲି କନା ଖଣ୍ଡକ । ମୁହୂର୍ତ୍ତକେ କନା ଖଣ୍ଡିକ ଭିତରେ ବେଂଗଟି ଛନ୍ଦି ହୋଇଗଲା । ବଂଦୀ ଉପରାନ୍ତ । ଫାଶବଦ୍ଧ ହୋଇଗଲା ଜୀବନ । କୁଆଡ଼କୁ, ଖସି ଯିବାର ଉପାୟ ନଥିଲା । ପୃଥିବୀଟା ତା ପାଇଁ ସଂକୁଚିତ ହୋଇ ଯାଇଥିଲା । ଅନନ୍ୟୋପାୟ ହୋଇ ଗୋଟାଏ ବିକଳ ରଡ଼ି ଛାଡ଼ିଲା ଉପରାନ୍ତ । ଜୀବନ ସେତେବେଳେ ତା'ର କରାୟତ ହୋଇ ଯାଇଥିଲା । ମୁଁ ତାକୁ ଗୁଡ଼େଇ ଧରି ହିଂସ୍ର ହୋଇ ଉଠିଥାଏ । ଛଟପଟ ହେଉଥାଏ ଉପରାନ୍ତ ।

– "ମାରନା ତାକୁ । ବାହାରେ ଫୋପାଡ଼ି ଦେଇ ଆସ, ପ୍ଲିଜ୍ ।" ମୋର ହିଂସ୍ର ଚେହେରା ଦେଖି ସ୍ୱାତୀ ବିବ୍ରତ ସ୍ୱରରେ ମୋତେ ଯେପରି ଅନୁନୟ କଲେ ।

"କିନ୍ତୁ କାହିଁକି ?" ମୁଁ କାବା ହୋଇ ଚାହିଁ ରହିଲି ସ୍ୱାତୀଙ୍କୁ । ପଚାରିଲି, "କ'ଣ ଘୃଣା ନା ଭୟ ?"

– "ଘୃଣାରେ ଭୟ ଭାବ ନାହିଁ କି ! ନାହିଁ କି ଭୟରେ ଘୃଣା ।" ଚଟ୍‌କରି ଉତ୍ତର ଦେଉ ଦେଉ ସ୍ୱାତୀଙ୍କର ସ୍ୱର ବଦଳି ଗଲା । ସେ ଖୁବ ଉଲ୍ଲସିତ ଦେଖାଗଲେ ଏବଂ କହିଲେ, "ଭଲ ପାଇବା ଲାଗି, ମୁଁ ତା ଜୀବନ ଭିକ୍ଷା କରୁଛି ।"

'ଭଲ ପାଇବା, ଜୀବନଭିକ୍ଷା' ଏଇ ଦୁଇଟି ଶବ୍ଦ ପାଖରେ ମୁଁ ଯେମିତି ଝୁଲି ପଡ଼ିଲି । ସ୍ୱାତୀଙ୍କୁ ଚାହିଁଲି ସେ ଯେପରି କରୁଣା ଭିକ୍ଷା କରୁଥିଲେ । ସେଇ ଭଳି ନିବେଦିତ ଚକ୍ଷୁ ।

ଘର ଭିତରୁ ଉପରାନ୍ତକୁ ଧରି ନିରବରେ ବାହାରକୁ ଚାଲି ଆସିଲି ।

ସେଇ ବୁଢ଼ା ଦେବଦାରୁ ମୂଳରେ ଉପରାନ୍ତକୁ ମୁକ୍ତ କରି ଦେଇ କହିଲି–

'ଯା ! ଯା ଚାଲି ଯା, ଯୁଆଡ଼େ ଇଚ୍ଛା ! ଯା'... ହେଲେ ଆଉ ଏ ଘରକୁ ଆସିବୁ ନାହିଁ ।'

ଲେଉଟି ଆସି ଘର ଭିତରେ ପସୁ ପସୁ ଦେଖିଲି ସ୍ୱାତୀଙ୍କ ଆଖିରେ ଲୁହ ରହିଛି । ତାଙ୍କୁ କିଛି କହିଲି ନାହିଁ । ଯେଉଁ ସୋଫାଟି ଉପରେ ଉପରାନ୍ତ ବସିଥିଲା ମୁଁ ଯାଇ ଠିକ୍ ସେଇଠି ବସି ପଡ଼ିଲି । ମୋର ମନେ ପଡ଼ିଗଲା ଚଂନ୍ଦ୍ର ହାଂସଦାଂକ କବିତା କେଇ ଧାଡ଼ି । ମୁଁ ଆଖି ବୁଜି ଦେଇ ବିଷାଦିତ ସ୍ୱରରେ ଗୁଣୁଗୁଣେଇଲି–

"ଦେ' ଦଂଶନ ଦେ'
ମୋର ପୁନଃର୍ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ
ନୀଳବର୍ଣ୍ଣୀ କରିଦେ ମୋତେ !"

ସାମ୍ନାରେ ଠିଆ ହୋଇଥିଲେ ସ୍ୱାତୀ । ନିଜକୁ ସମ୍ଭାଳି ପାରିଲେ ନାହିଁ । ଭାରିଭାରି ସ୍ୱରରେ ସ୍ୱାତୀ କହିଲେ–

୧୯୭୨ ମସିହା । ନିଷ୍ଫଳା ବର୍ଷାଋତୁ । ଆଷାଢ଼ ଶ୍ରାବଣରେ ଆକାଶରେ ମେଘ ନାହିଁ ଉଡ଼ନ୍ତା ପକ୍ଷୀଟାଏର ଦୃଶ୍ୟ ନାହିଁ । ନଈ ନାଳ ପୋଖରୀରେ ପାଣି ନାହିଁ । କ୍ଷେତରେ ଜଳି ଯାଉଛି ଫସଲ । ବଡ଼ବଡ଼ ଗଛରୁ ପତ୍ର ଝଡ଼ି ପଡ଼ିଲାଣି । ସ୍ଥାନୀୟ ପଶୁମାନେ ରୋଗଗ୍ରସ୍ତ ହୋଇ ଢଳି ପଡୁଛନ୍ତି ତାତିଲା ଭୂଇଁ ଉପରେ ।

ଦିନସାରା ବହୁଚି ଲୁ । ରାତି ସଂତପିତ । ଆକାଶ ଛାତିରେ ପହଁରୁଛି ଆଖି । ହାତଟେକି ହୋଇ ଯାଉଛି ଉପରକୁ ।

'ଦେ ଇନ୍ଦ୍ର ! ମେଘ ଦେ' ଶୁଭୁଛି ଆତୁର ସ୍ୱର, ହେ ପବନ ! ବର୍ଷା ଦେ... ।

ତଥାପି ବର୍ଷା ନାହିଁ !!

ଦିନେ, ସାତ ଜଣ ଅହ୍ୟ ସ୍ତ୍ରୀଲୋକ, କପାଳରେ ଏଡ଼େଟାମାନ ସିଂଦୂର ଠୋପା ଲଗେଇ କଜ୍ୱଳ ଲାଞ୍ଜି ଟାଣି, ଓଦା ସରସର କେଶରୁ ବୁନ୍ଦା ବୁନ୍ଦା ପାଣି ଝରୁଛି, ପାହାଁନ୍ତା ପହରୁ ମତେ ବିଛଣାରୁ ଉଠେଇ ଆଣିଲେ । ସେତେବେଳକୁ ତିନି ବର୍ଷର ଡଉଲ ଡାଉଲ ଏଡ଼େ ଟିକିଏ ଅଜ୍ଞାନ ଶିଶୁ ମୁଁ । ଗୋଟାଏ ଶୁଖିଲା ଘାସର ବିରାଟ ପଡ଼ିଆ ମଝିକୁ ନେଇ ଆସିଲେ । ମୋତେ ଲଂଗଳା କରି, ମୋ ଦେହରେ ତେଲ ହଳଦୀ ଲଗେଇ ମୋତେ ଗାଧୋଇ ପକେଇଲେ । ଗୋଟାଏ ବେଂଗ ସାଥିରେ । ମୋ ହାତରେ ମୋ ଅନିଚ୍ଛା ସତ୍ତ୍ୱେ ଧରେଇ ଦେଲେ ବେଂଗଟିକୁ । ମୋ ମୁହଁରେ ସିନ୍ଦୂର ବୋଳି ଦେଲେ । ବେଂଗଟିକୁ ବି ହଳଦୀ ବରକୋଳିପତ୍ର ପକାଇ ପାଣିରେ ସ୍ନାନ କରାଇଦେଲେ । ଦେହରେ ତାର ସିନ୍ଦୂର ବୋଳିଦେଇ ଆମକୁ ଧୂପ ଦୀପ ଫୁଲ ପତ୍ର ଝୁଣା ଦେଇ ବନ୍ଦାପନା କଲେ । ହୁଳହୁଳି ହରିବୋଲ ପକେଇ, ଅଦ୍‌ଭୁତ ଗ୍ରାମଣୀ ସ୍ୱରରେ ଗୀତଟିଏ ବୋଲି ନାଚିବାକୁ ଲାଗିଲେ । ଆମକୁ ସାତଥର ପରିକ୍ରମା କଲେ ।

ଆମ ଉପରେ ଜଣ ଜଣ କରି ସାତ ଜଣ ଯାକ ଅହ୍ୟନାରୀ ସାତ କଳସ ପାଣି ଢାଳିଲେ । ଶେଷରେ ନୂଆ ଲୁଗାଟିଏ ଆମ ଉପରେ ଢାଙ୍କିଦେଇ ଘିରିଘିରି ହୋଇ ଆମ ଚାରିପଟେ ବୁଲି ଚାପା ସ୍ୱରରେ କହିଲେ–

"ହେ ରାଜା ! ଇନ୍ଦ୍ର ରାଜା !

ହେ ରାଜା । ବେଂଗରାଜା !

ଆମ ଉପହାର ଗଳାହାର କରି ନେ

ଏ ନହୁଲି କୁଆଁରୀ କନିଆ ନେ... ବରଷା ଅଜାଡ଼ି ଦେ ।

ଘଡ଼ଘଡ଼ି ବିଜୁଳି ସହ, ଘାଟ ଅଘାଟ ପାଣିରେ ବୁଡ଼େଇ ଦେ ।"

ଏଇ ଉନ୍ମତ୍ତ ନୃତ୍ୟରେ ଦେହରୁ ଖସିଗଲା ସେମାନଙ୍କର ଏକାଂଗୀ ବସ୍ତ୍ର, ହାତଟେକି ଦେଇ ସେ ମୁହଁ ଅଂଧାର ଭିତରେ ବର୍ଷା ପାଇଁ ନାଚିଲେ ଉଦ୍ଦଣ୍ଡ, ବେଂଗଟି ବି ବୋବେଇଲା ଅତି କର୍କଶ ସ୍ୱରରେ ଘନ ଘନ...

ମୁଁ କାଂଦି ଉଠିଲି ବିକଳ ହୋଇ... ଭୟରେ ଉଠି ଠିଆ ହୋଇ କୁଆଡ଼କୁ ଯିବାକୁ ବାଟ ନପାଇ ଦୌଡ଼ିଲି ପଡ଼ିଆ ସାରା ।

ସେଦିନ ସକାଳୁ ବର୍ଷା ହେଲା ଯେ ପ୍ରବଳ ବର୍ଷା ।

ନଈ ନାଳ, ବିଲବାଡ଼ି, ଖମା ପୋଖରୀ ପାଲଟିଗଲା ଜଳାର୍ଣ୍ଣବ ।

ମତେ ଲାଗିଲା, ଚାରିଆଡୁ ବେଂଗମାନେ ଯେପରି ଘୋର ରଡ଼ିକରି, ମୋତେ ଡାକ ପକାଉଚନ୍ତି ।

ହଟ ନ କରି ମଠ ନକରି ଶୀଘ୍ର ଶୀଘ୍ର ଆ...

ନାଚିବା ଗାଇବା ମସ୍ତି କରିବା ହେଳା ନ କରି ଆ... !

ଭୟରେ ମୁଁ କାନରେ ହାତ ଦେଇଦିଏ ।

କହୁକହୁ ଦୀର୍ଘଶ୍ୱାସ ପକେଇ ବଡ଼ ଗଂଭୀର ଦେଖାଗଲେ ସେ । କିଛି ସମୟ ନୀରବତା ପରେ କହିଲେ,

– 'ମଝିରେ ମଝିରେ ସ୍ୱପ୍ନରେ ଆସେ - ଗୋଟାଏ ବେଂଗ !

ଦେଖିବାକୁ ଠିକ୍ - ଉପରାନ୍ତ ଭଳି !

ସେତେବେଳେ, ମତେ ଖୁବ୍ କଷ୍ଟ ହୁଏ । ଆଉ କିଛି କହି ପାରିଲେ ନାହିଁ ସ୍ୱାତୀ । ଜୀବନ ନଥିଲା ଭଳି ନୀରବରେ ସେ ତଳକୁ ଚାହିଁ ରହିଥିଲେ ।

ମୁଁ ବର୍ଷାହୀନ ପୃଥିବୀ ଭଳି ସବୁ ଶୁଣି ନୀରବ ହୋଇଗଲି, ନୀରବ...



ପ୍ରଦୋଷ ମିଶ୍ର

# ମୁକ୍ତିପଥ

ରକି ଖପ୍‌କରି ତାଙ୍କ ଉପରକୁ ଡେଇଁପଡ଼େ । ବର୍ମା ସାହେବ ଜାଣନ୍ତି ଏମିତି ଏକ ଘଟଣା ଘଟିବ । ତେଣୁ, ସେ ଆଗରୁ ସାବଧାନ ଥାଆନ୍ତି । ଦୁଇହାତକୁ ଉପରକୁ ଉଠାଇ କୁହନ୍ତି, "ରହ ରକି । ମୋର କୋର୍ଟ ଚିରିଯିବ । ବହୁତ ବଦ୍‌ମାସ୍ ହୋଇଗଲୁଣି । ଚାଲ୍, ଭିତରକୁ । ଚାଲ" ।

ରକି ତାଙ୍କ କଥା ବୁଝେ ନା ନାହିଁ କେଜାଣି, କିନ୍ତୁ ଘରକୁ ଫେରି ଯାଏନି । ଆଗଗୋଡ଼ ଦୁଇଟା ଉପରକୁ ଉଠାଇ, ଉପରେ ଲଦିଦିଏ । ତା'ର ଲମ୍ୱା, ଲାଲ୍‌ରଙ୍ଗର ଜିଭକୁ ହଲାଇ ହଲାଇ ସଁ ସଁ ନିଃଶ୍ୱାସ ନିଏ । ଆଗକୁ ପଛକୁ ଦଉଡ଼ି ବାଟ ଉଗାଳେ । ବର୍ମା ସାହେବ ପାଦ ଉପରେ ଟେକିହୋଇ ବସିପଡ଼ନ୍ତି । ତା'ର ମସୃଣ ଗାଲରେ ନରମ ପାପୁଲି ବୁଲାଇଆଣି କୁହନ୍ତି, 'ଆଉ ବ୍ୟସ୍ତ କରନା, ଚାଲ ଘରକୁ' ।

ବଗିଚାର ମାଳି ପହଲା ଏସବୁ ଦେଖୁଥାଏ ଖଣ୍ଡେ ଦୂରରେ । ମୁହଁରେ ଅଳ୍ପହସ ଲାଗି ରହିଥାଏ । ସେ ରକିକୁ ତାଗିଦ୍ କରେନି । ସେ ଜାଣେ ସାହେବ ବିରକ୍ତ ନ ହୋଇ ଖୁବ୍ ଭଲ ପାଳିତ ପଶୁଟିଏ ପାଇଥିବାରୁ ଆତ୍ମସନ୍ତୋଷ ଲାଭ କରୁଥାନ୍ତି । ତେଣୁ, ତାକୁ ଠିକା ନ ପଡ଼ିଲା ପର୍ଯ୍ୟନ୍ତ ସେ ଖୁଣ୍ଟଟାପରି ଠିଆହୋଇଥାଏ ।

ବର୍ମା ସାହେବ ରକି ସଙ୍ଗେ ଅଳ୍ପକଥା କହୁଥାନ୍ତି । ସେ ବୁଝୁ କି ନ ବୁଝୁ ତା ଖାଇବା କଥା ପଚାରନ୍ତି । କୁଁ କୁଁ ହୋଇ ସେ ତାଙ୍କ ମୁହଁକୁ ଚାହିଁରହେ । ପହଲାକୁ ଡାକି କହନ୍ତି, ତାକୁ ନେଇଯା । କାର୍ ଭିତରେ କ୍ରିମ୍ ବିସ୍କୁଟ ଅଛି, ଆଣି ଦେଇଦେବୁ ।

ପହଲା, ଏଥର କର୍କଶସ୍ୱରରେ ଡାକଛାଡ଼େ । ରକି ଜାଣେ ଏବେ ତାକୁ କଥା ମାନିନେବାକୁ ହେବ । ତେଣୁ, ସେ ଅବାଧ୍ୟ ହୁଏନି । ଚୁପ୍‌ଚାପ୍ ତା' ପାଖକୁ ଚାଲିଯାଏ । କ୍ରିମ୍ ବିସ୍କୁଟ୍ ଗୋଟାଏ ପରେ ଗୋଟାଏ ଖାଇ ମଜା ନିଏ ।

ବର୍ମା ସାହେବ କିଛି ସମୟ ପରେ ଫ୍ରେସ୍‌ହୋଇ ବାହାରିଆସନ୍ତି । ଦେହରେ ସଫେଦ୍ ରଂଗର ଚୁଡ଼ିଦାର ପଞ୍ଜାବି । ପାଦରେ ମୃଗ ଚମଡ଼ାର ଅଧାମୁହାଁ ଯୋତା, ଆଉ ମୁଣ୍ଡରେ ନୀଳଟୋପି ।

ପହଲା, ତାଙ୍କର ଅଭ୍ୟାସ କଥା ଜାଣେ । ଆଗରୁ ବେତଚଉକି, ସେଣ୍ଟରଟେବୁଲ୍ ପକାଇଦେଇଥାଏ । ଛୋଟ ବଲ୍ ଏବଂ ବାଡ଼ିଖଣ୍ଡେ ପାଖରେ ରଖିଦିଏ । ବର୍ମା ସାହେବ କଡ଼୍‌ଲେସ୍ ଟେଲିଫୋନ୍‌ରେ ନମ୍ବର ଲଗାଉ ଲଗାଉ ପଦାକୁ ବାହାରିଆସନ୍ତି । ଚଉକିରେ ଆଉଜିପଡ଼ି ମ୍ୟାଡ଼ାମ୍‌ଙ୍କ ସାଙ୍ଗେ କଥା ହୁଅନ୍ତି ।

ରୋଷେୟା ରାମୁ ଟା ସଜାଡ଼େ । ଅଧାଚାମଚ ଚିନି ଦୁଧ । ତା'ପରେ ଲାଲରଂଗର ପାଣି ।

ଢୋକଟେ ଟା ପିଇଦେଇ ସେ କୁହନ୍ତି, ହାଲୋ ବେବି ଡାର୍ଲିଂ (ଝିଅ) । ହାଓ ଆର୍ ୟୁ । ଏଇତ ଅଫିସ୍‌ରୁ ଫେରିଲି ।

ଆରେ ବାବା, ଏ ସନ୍‌ଡ଼େ ଯାଇ ହେବନି । ଇମରଜେନ୍ସି ମିଟିଂ ।

ଆରଥରକୁ ସିଓର ପହଞ୍ଚିବି ।

ବର୍ମା ସାହେବ ବେବି ସଂଗେ କଥା ହେଲାବେଳେ ତାଙ୍କର ସ୍ୱର ବଦଳିଯାଏ । ସାହେବ ଢ଼ଙ୍ଗର ଆଦେଶ ଦେଲାପରି ଗମ୍ଭୀରତା କେଉଁଠି ଲୁଚିଯାଏ । ସ୍ନେହମମତା ବାହାରିପଡ଼େ ତାଙ୍କର ଅଭିବ୍ୟକ୍ତି ଭିତରେ । ଭଲ, ମନ୍ଦ, ଦୁଃଖ, ସବୁକିଛି ବ୍ୟକ୍ତ ହୋଇଯାଏ ।

କିଛିସମୟ ପରେ ସାହେବ ମୁହଁ ଉଠାଇ ଚାହାନ୍ତି । ପହଲା ବୁଝିଯାଏ ଏବେ ରକିକୁ ଡକରା ପଡ଼ିବ । ବେବି ସଂଗେ ସେ କଥା ହେବ ।

ରକି ଧାଇଁଆସେ । ସାହେବ ତା'ର ଲମ୍ବା ମୁହଁପାଖେ ଫୋନ୍ ରଖିଦିଅନ୍ତି । ଭୋ ଭୋ ଶବ୍ଦକରି ସେ କଥାହୁଏ । କେତେବେଳେ ଧୀରେ ତ କେତେବେଳେ ଜୋର୍‌ରେ ।

ବର୍ମା ସାହେବ ରକି ସହିତ ବଲ୍ ଖେଳନ୍ତି । ଏତେବଡ଼ ଲନ୍ ଭିତରେ ଧାଁ ଦଉଡ଼ କରି ସେମାନେ ଉଲ୍ଲସିତ ହୋଇଯାଆନ୍ତି । କିଛି ଘାସଗଛ ଦଳିଚକଟି ହୋଇଯାଏ ତାଙ୍କର ପାଦ ସ୍ପର୍ଶରେ ।

ସଞ୍ଜହେଲେ ରକି ଚୁପ୍ ଚାପ୍ ଡ୍ରଇଂରୁମ୍‌ରେ ଗୋଟେ କୋଣରେ ବସେ । ବର୍ମା ସାହେବ ଅଫିସ୍ କାମରେ ବ୍ୟସ୍ତରୁହନ୍ତି । ରକି ତାଙ୍କୁ ବିରକ୍ତ କରେନି ବରଂ କିଛି ଦରକାର ପଡ଼ିଲେ ପାଟିରେ କାମୁଡ଼ି ନେଇଆସେ ।

ଯେଉଁଦିନ ମ୍ୟାଡ଼ାମ୍ ଏବଂ ବେବି ଆସନ୍ତି, ସାରାଘରର ବାୟୁମଣ୍ଡଳ ଚହଲିଯାଏ, କିଛି କୋଳାହଳ କିଛି ଗପସପରେ ମୁଖରିତ ହୋଇଯାଏ । ରକି ମଧ୍ୟ ଆନନ୍ଦରେ ଅଧୀର ହୋଇପଡ଼େ । ନିତିଦିନିଆ ରୁଟିନ୍‌ରେ ତା'ର କିଛି ପରିବର୍ତ୍ତନ ହୋଇଯାଏ । ବେବିସହ ସେ ଟେନିସ୍‌ବଲ୍ ଖେଳେ । ତା'ର ଯୋତା ଆଣିଦିଏ । ଦୁଇ ଗୋଡ଼ରେ ଠିଆହୋଇ ଡ୍ୟାନ୍ସ କରେ ।

ମ୍ୟାଡ଼ାମ୍‌ଙ୍କ ସହ ସାହେବ ଗପ କରନ୍ତି, ବିଳମ୍ବ ରାତିଯାଏ ରାମୁ ଫ୍ରିଜ୍‌ରୁ ହ୍ୱିସ୍କି ଏବଂ ସୋଡ଼ା ଆଣିଦେଇ ଯାଏ। ସେଇଠି ତାଙ୍କର ଖାଇବା ସଜାଡ଼େ। ଆଖି ଲାଲ ଲାଲ କରି ଢଳି ଢଳି ସେମାନେ ଘରକୁ ଯାଆନ୍ତି।

ରକି ଅଭ୍ୟସ୍ତଥାଏ ସେମାନଙ୍କ ଆଦବକାଇଦା ସହ। ସେ ବି ଗେଟ୍‌ଡେଇଁ ପଦାକୁ ଯିବନି, ଅନ୍ୟ କାହାର ସମ୍ପର୍କରେ ଆସିବନି।

ରକିର ବଂଶ ଇତିହାସ ସମସ୍ତଙ୍କୁ ଜଣା। ଖୁବ୍ ଛୋଟବେଳେ ସେ ଯେତେବେଳେ ଆସିଥିଲା, ତା'ସହିତ ପୂର୍ବଜମାନଙ୍କର ନାମ ଲେଖାଥିବା ଏକ ପ୍ରମାଣପତ୍ର ମଧ୍ୟ ସାଙ୍ଗରେ ଥିଲା। ତା'ର ଜେଜେ ନେପାଳ ରାଜପରିବାରର ଲାବ୍ରାଡ଼ର। ଆଉ ଜେଜେମା ଭାରତର ବୈଦେଶିକ ମନ୍ତ୍ରୀଙ୍କର ଆଲସିସିଆନ୍। ତା'ପରେ ଆସାମସ୍ଥିତ ମିଲିଟାରୀ ଅଫିସର୍‌ଙ୍କର କଳାରଙ୍ଗର ଗ୍ରେହାଉଣ୍ଡ ଗର୍ଭରୁ ତା'ର ଜନ୍ମ।

ଅଳ୍ପ କଳା, ମାଟିଆମିଶା ତା'ର ଦେହ। ମୁହଁଟା ଚେପ୍‌ଟା। ସାଧାରଣ କୁକୁରଠାରୁ ଭିନ୍ନ। କାନ ଲମ୍ବା, ଓହଳା, ଛୋଟଲାଞ୍ଜ। ଲମ୍ବାଦେହ। ଯୁବତୀଟିଏ ପରି ଅଣ୍ଟା ଦୋହଲିଆ ଚାଲି। ଆଖିରେ ଆଖି ମିଶିଲେ, କଲିଜା ଥରିଯାଏ। ସତେ ଯେପରି ନିଆଁ ଜଳୁଛି ସେଥିରେ।

ମାସକୁ ଥରେ ପହଲା, ତା' ବେକରେ ଚେନ୍‌ବାନ୍ଧି କାର୍‌ରେ ବସି ଯାଏ ଡଗ୍ କ୍ଲବକୁ। ତାର ହେଲ୍‌ଥ ଚେକ୍‌ଅପ୍ କରେ। କିଛି ଔଷଧ, ଉପଦେଶ ସହ ଫେରିଆସେ। ସାଙ୍ଗରେ ଖାଦ୍ୟର ଏକ ଲମ୍ବା ତାଲିକା।

ପହଲାକୁ ଲୋଭ ଲାଗେ। ସତରେ ଭାରି ଭାଗ୍ୟବାନ୍ ଏ ରକିଟା। କୁକୁର ଜନ୍ମ ପାଇ କ'ଣ ବା କ୍ଷତି ହୋଇଗଲା ତା'ର। କେତେ କେତେ ମଣିଷ ତ ତା' ସେବାରେ ଲାଗିଛନ୍ତି। ସେମାନଙ୍କୁ ଦାସ କରିରଖିଛି। କିଛି ମୁଲାୟମ ଶେଯରେ ଶୋଉଛି। ଦାମୀ ଖାଦ୍ୟ ଖାଉଛି।

ପହଲାକୁ ଦୁଃଖ ଲାଗେ। ତା' ଖାଦ୍ୟର କିଛି ଅଂଶ ଯଦି ତା'ର ପରିବାର ପାଆନ୍ତେ, କେତେ ଖୁସିହୁଅନ୍ତେ ସେମାନେ। ହେଲେ, ସେଗୁଡ଼ାକ ସେ ଫିଙ୍ଗିଦିଏ ବାଡ଼ି ପଛପଟକୁ। ସେପଟେ ଦାମିଆ ରିକ୍‌ସାବାଲାର ଦେଶୀ କୁକୁରଟା କେତେବେଳୁ ଚାହିଁ ରହିଥାଏ। ଖପ୍ କରି ମାଡ଼ି ବସେ। ଗାଉଁ ଗାଉଁ କରି ଗିଳିପକାଏ। ସେ ବି ଖାଇ କରି ମୋଟେଇ ଗଲାଣି। ପହଲାକୁ ଦେଖିଲାମାତ୍ରେ ସେ ବାଡ଼ିପଟକୁ ଧାଇଁଆସେ। ଏତେବଡ଼ ଆଖି କରି ଚାହିଁରହେ। ଖାଇବାଜିନିଷ ଫିଙ୍ଗିଦେଲାବେଳେ ସେ ବେଶ୍ ଦୁଇପଦ ଶୁଣାଇଦିଏ ନିଜ ଭାଷାରେ। କାହାକୁ ସେ ଆକ୍ଷେପ କରୁଥାଏ ନିଜେ ବୁଝି ପାରେନି। କହେ, "ଖା ବେ ଶଳା ଅଇଁଠାପତ୍ରଚଟା ଗରିବକୁତ୍ତା। ତୋ ମାଲିକ ଏମିତି ଜିନିଷ ପାଞ୍ଚଜନ୍ମରେ ଦେଖି ପାରିବନି। ପାଖ ପଡ଼ିଶାରେ ଅଛୁ ଯେତେବେଳେ, ଲାଭ

ତ ତୁ ପାଇବୁ ଖା ।" ବିଚରା ଗରିବଘରର କୁତ୍ତା । ବେଳେବେଳେ ପହଲା ସାଙ୍ଗରେ ରକି ବି ଆସିଥାଏ । ପଛପଟ ତାରବାଡ଼ ଉପରେ ଗୋଡ଼ରଖି ଭୋ, ଭୋ ହୁଏ । ହେଲେ, ଦେଶୀ କୁକୁରଟା ତା'ଆଡ଼କୁ ନଜର ଦିଏନି । ଗବ ଗବ କରି ଖାଇ ଚାଲୁଥାଏ । କିଛି ପେଟ ପୂରିଗଲେ ମୁହଁଉଠାଇ, କଣେଇ କଣେଇ ଚାହେଁ । ଅଳ୍ପ ଶବ୍ଦକରି ରକି ଚୁପ୍ ହୋଇଯାଏ । ନୀରବରେ ଚାହିଁରହେ । ପହଲା ଜୋରଜବରଦସ୍ତ ତାକୁ ନେଇଆସେ । ବାବୁ ଆସିଲାବେଳକୁ ତାକୁ ସଫାସୁତୁରା ରଖିବାକୁ ପଡ଼ିବ । ନ ହେଲେ ସବୁ ରାଗ ତା' ଉପରେ । ଏପିରି କି ଚାକିରି ଚାଲିଯିବା ଅସମ୍ଭବ ନୁହେଁ । ସେ ଦୃଷ୍ଟିରୁ ତାକୁ ସଚେତନ ରହିବାକୁ ହୁଏ । ରକି ତା'ର ତ୍ରାଣକର୍ତ୍ତା ଅନ୍ନଦାତା ।

କାମରେ ସେ ଯେ କେବେ ନ ଠକେ ତା ନୁହେଁ । ଆଦେଶ ଅବମାନନା କରି ତାକୁ ଚେନ୍‌ରେ ବାନ୍ଧିଦେଇ ଟିକେ ଆରାମ୍‌ରେ ଶୋଇପଡ଼େ । ସେଥିପାଇଁ ରୋଷେୟାଟୋକା ରାମୁକୁ ହାତକରିବାକୁ ହୁଏ । ଯଦି ସାହେବଙ୍କ ଆଗରେ ଫୋଡ଼ିଦିଏ ତେବେ କଥା ଶେଷ ।

ରକି କ'ଣ ବା କରିପାରିବ ? ଭଗବାନ୍ ତ କଥା କହିବାର ଶକ୍ତି ଦେଇ ନାହାନ୍ତି । ହେଲେ, ତା ଆଖିଟିକେ ଦେଖିଲେ ଜଣାଯାଏ ଯେପରି ସେ ସବୁ ବୁଝିପାରେ । ତା' ନଜର ବି ଠିକ୍ ସାହେବଙ୍କପରି । ସେ ଜାଣେ ଏ ଘରେ କିଏ ମାଲିକ, କିଏ ଚାକର । ସେଥିପାଇଁ ତା' ବ୍ୟବହାରରେ ଫରକ୍ ଥାଏ । ବେଳେ ବେଳେ ଭାଉ ଭାଉ କରି ବକିଯାଏ କ'ଣ ଟିକେ ଏପଟ ସେପଟ ହୋଇଗଲେ ।

ବାବୁ କହନ୍ତି ଏ କୁକୁର ଭାରି ଆଭିଜାତ୍ୟବାଲା । କିଏ ରାଗିଲେ ଜମା ସହିବନି । ସେ କଥା ତା' ଜାତକରେ ଲେଖାଅଛି । ଏତେ ପିଲାବେଳୁ ପହଲା ତା'ର ଦେଖାରଖା କରିଛି । ତେବେ ବି ଥରେ ଜୋର୍‌କରି କହିନି । ସେ ଖାଲି ସାହେବ ଆଉ ବେବିକଥା ମାନେ । ଆଉ କାହାକୁ ତା'ର ଖାତିର ନାହିଁ । ବେବି ଯୋଗୁଁ ତ ସେ ଏ ଘରକୁ ଆସିଛି ।

ଅନେକ ଦିନ ତଳର କଥା । ସାହେବ ଟୁର୍‌ରେ ଆସାମ ଯାଇଥିଲେ । ସାଙ୍ଗରେ ମେମ୍ ସାହେବ ଆଉ ବେବି । ତାଙ୍କର ଜଣେ ବଂଧୁ ମିଲିଟାରି ଅଫିସର୍ ଥାଆନ୍ତି । ସେଇଠି ରକି ଜନ୍ମ ହୋଇଥାଏ ।

ବେବି କୁକୁରଛୁଆକୁ ଦେଖି ଲୋଭେଇ ଯାଇଥିଲା । ତାକୁ ସାଙ୍ଗରେ ଆଣିବାକୁ ଜିଦ୍‌କଲା, ସାହେବ ଅପ୍ରସ୍ତୁତ ହେଲେ । ବଂଧୁଙ୍କୁ ତ ଟଙ୍କାଦେଇ କିଣି ପାରିବେନି । ଏତେ ଦାମୀକୁକୁରଟା ସେ ଦେବେ କିପରି ? ବଂଧୁ ବଡ଼ ଅଡୁଆରେ ପଡ଼ିଲେ । ଇଚ୍ଛା ଥାଉ କି ନ ଥାଉ କାର୍ଡ଼ ସହିତ କୁକୁରଛୁଆକୁ ଦେଇଦେଲେ । ତା'ର ବଂଶର ଇତିହାସ ଏବଂ ପରମ୍ପରାକଥା ବୁଝାଇଦେଲେ । କହିଲେ, "ତୋ ପାଖରେ ରହୁଛି ତ ଠିକ୍ ତା କାର୍ଡ଼ରେ କାଳି ଲଗାଇବୁନି । ଏଇଟା ବେବି ପାଇଁ ମୋର ଗିଫ୍‌ଟ୍" ।

ହେଲେ, ବେବି ପାଖରେ ସେ ତ ରହି ପାରିଲାନି । ମ୍ୟାଡ଼ାମ୍ ସହିତ ସେ ଅଲଗା ଜାଗାରେ ରହେ । ଏଠି ଚାକରବାକର ସୁବିଧା । ସେଥିପାଇଁ ରକି ଏଠି ରହେ ।

ପହଲା ରକି ମନକଥା ଜାଣେ । ଗୋଟାଏ ରୁଟିନ୍ ଭିତରେ ରହିବାକୁ ସେ ଚାହେଁନି । ପଛପଟ ଜାଲିବାଟେ ସେ ଖୋଲା ପୃଥିବୀକୁ ଚାହେଁ । ପନ୍‌ଝା ପନ୍‌ଝା କୁକୁରମାନଙ୍କର ଦଉଡ଼, ଲଗାମହୀନ ଖେଳ, ମେଳିମେଳି କୌତୂହଳ ଦୃଶ୍ୟ ଆକୃଷ୍ଟକର ।

ବେଳେ ବେଳେ ଦାମିଆ ରିକ୍ସାବାଲାର କୁକୁରକୁ ଚାହିଁରହେ । ଆଖିସଙ୍ଗେ ଆଖି ମିଶାଇ କୁଁ କୁଁ ହୁଏ ।

ସେ ଡାକଛାଡ଼େ । ଏ ଛୋଟ ଲୋକଙ୍କ ସଙ୍ଗେ ଭାବ କ'ଣ । ସମ୍ମାନ ଚାଲିଯିବ । ଯେତେବେଳେ ସେମାନେ ଭିକାରିଗୁଡ଼ା ତା'ର ଉଚ୍ଛିଷ୍ଟ ଖାଉଛନ୍ତି । ତା' ଦୟାରେ ବଂଚିଛନ୍ତି । ତାଙ୍କ କୁକୁରସଙ୍ଗେ ଆଳାପକରିବା ଠିକ୍ ନୁହେଁ ।

ସେପାଖରେ ରକିକୁ ବସାଏ । ବଗିଚା କାମ କରେ, ନ ହେଲେ କହେ, ଯା ବିଶ୍ରାମ ନେବୁ । ବାବୁ ଆସିଲେ ଦଉଡ଼ା ଦଉଡ଼ି କରିବାକୁ ଶକ୍ତି ଥିବ ।

ଏପରି ଏକ ଧାରାବାହିକତା ଭିତରେ ଦିନେ ଅବ୍ୟବସ୍ଥା ହୋଇଗଲା । କିଛି ଅଘଟଣ ଘଟିଗଲା । ପହଲାର ଛାତି ଦୁଲ୍‌କିଗଲା । ରକି କେତେବେଳେ ଖସିଯାଇଥିଲା । ସେ ଖିଆଲ ରଖି ପାରିଲାନି । ସକାଳୁ ବଗିଚା କାମକରି ଥକିପଡ଼ିଥିଲା । ଗଛ ପାଙ୍କଦେଇ ବହିଆସୁଥିବା ସୁଲୁସୁଲିଆ ପବନ ତା ଆଖିଦୁଇଟା ବନ୍ଦ କରିଦେଇଥିଲା ।

ହଠାତ୍ ନିଦ ଭାଙ୍ଗିଗଲା ବେଳକୁ ରକିର ସୋର ଶବ୍ଦ ନାହିଁ । ଡ୍ରଇଁରୁମ୍‌ର ଘଣ୍ଟା ଦେଖିଲା । ଚାରିଟା ବାଜିବାକୁ ବସିଲାଣି । ରାମୁ ତା ବଖରାରେ ଶୋଇଛି । ହେଲେ, ରକି ଗଲା କୁଆଡ଼େ ? ଏବେ ତାକୁ ଧୋଇଧାଇ ସଫାକରିବାକୁ ପଡ଼ିବ ।

ସେ ଡାକ ଛାଡ଼ିଲା, "ରକି... ରକି..." ମାତ୍ର କେଉଁଠୁ କୁକୁରଟା ଧାଇଁ ଆସିଲାନି କିମ୍ବା ଶବ୍ଦକରି ତା' ସ୍ଥିତି ସୂଚାଇ ଦେଲାନି ।

ପହଲାର ମନରେ ଛନକା ପଶିଲା । ସେ ଘରର ଅନ୍ଦିକନ୍ଦି, ଫୁଲଗଛ ମୂଳ, କଙ୍କି, ପ୍ରଜାପତି ଉଡୁଥିବା ସ୍ଥାନ ଆଦି ଖୋଜିଲା । କୁଆଡ଼େ ଗଲା ? ଗେଟ୍‌ଟା ତ ବନ୍ଦ ଅଛି । ଏତେବଡ଼ ପାଚେରୀ ଡେଇଁଯିବା ସମ୍ଭବ ନୁହେଁ । ସେ ତା'ର ସମସ୍ତ ଅଭ୍ୟସ୍ତ ଜାଗା ଖୋଜିଲା । ଓଃ କ'ଣ ହେବ ଏବେ, ରାମୁକୁ ଡାକଛାଡ଼ିଲା । ବୋଧହୁଏ ମଜା କରିବା ପାଇ ଲୁଚାଇରଖିଛି, ନ ହେଲେ ଯିବ କୁଆଡ଼େ ? ଏ ସମୟରେ ତାକୁ ଗମାତ୍ ଭଲ ଲାଗେନା, ଏଣେ ପଛେ ତା'ର ହାଲତ୍ ଖରାପ ହେଲାଣି ।

ରାମୁ କିନ୍ତୁ ମନାକଲା, ଆଖି ଛୁଇଁଲା, ଭଗବାନ୍‌ଙ୍କ ରାଣ ନିୟମ ପକାଇଲା । ପହଲାର ରକ୍ତ ଥଣ୍ଡାପଡ଼ିଗଲା ।

ରାମୁ କହିଲା, "ପଛକଡ଼ ଡ୍ରେନ୍‌ଆଡ଼େ ଗଲା କି ଆଉ"?

ଉଁ ହୁଁ। ଛିଃ ସିଆଡ଼େ ସେ ଯିବନି। "ରକିରେ, କୁଆଡ଼େ ଗଲୁ ତୁ"? ପହଲା ରୀତିମତ କାନ୍ଦିବା ଆରମ୍ଭ କଲା।

ଚାଲନା ଦେଖିବା। ଏତେ ବ୍ୟସ୍ତ ହେଉଛୁ କାହିଁକି? କୁଆଡ଼େ ଉଭେଇ ଯିବନି ତ, ଚାଲ ଥରେ ପଛକଡ଼ ଆଡ଼େ ଦେଖିଆସିବା।

ସନ୍ତର୍ପଣରେ ସେମାନେ ସିଆଡ଼କୁ ଗଲେ। ଅନାବନା ଗଛମୂଳକୁ ଚାହିଁଲେ। କେଉଁଠି କିଛି ହିଂସ୍ରଜନ୍ତୁ କାମୁଡ଼ି ଦେଇନି ତ। ହେ, ଭଗବାନ୍!

ହଠାତ୍ ରାମୁ ପାଟିକଲା, "ଦେଖ୍ ତ ପହଲା, ଟଗର ଗଛମୂଳେ ଦୁଇଟା ଆଖି ଚାହିଁ ରହିଛି। ଅଳ୍ପ ଅନ୍ଧାରରେ ଚକ୍ ଚକ୍ କରୁଛି। ଡ଼ୋଳାଦୁଇଟା ଏପଟ ସେପଟ ହେଉଛି।"

ପହଲା କହିଲା, "ଅଲପେଇସା। ଏଇଠି ଅଛୁ ତତେ ଏତେ ଡ଼ାକି ଡ଼ାକି ଥକିଗଲିଣି। ଶୁଣାଯାଉଛି। ଆ... ବାହାରି ଆ..."।

ହେଲେ ନୀରବ। ଏପଟ ସେପଟ ହେଲାନି।

ଆରେ ମୋର ଭାଗ୍ୟବିଧାତା। ମୋର ଅନ୍ନଦାତା ସାହେବ ଆସିବାବେଳ ହେଲାଣି। ମୋ ସୁନାଟାପରା ତୋ ଗୋଡ଼ତଳେ ପଡୁଛି। ପଦାକୁ ଆ। ଦେଖୁନୁ ମୋ ଅବସ୍ଥା। ଏଇଠି ଲୁଚିଛୁ। ତେଣେ, ମୁଁ ଝାଳନାଳ ହେଲିଣି। ମୋର ସାହେବାଣୀ, ମୋ ମାଲିକାଣୀ, ଆଉ କଷ୍ଟ ଦେ'ନା। ମୋ ଚାକିରିଟା ତ ତୋ ହାତରେ। ଗରିବଟାକୁ କାହିଁକି ଛଟପଟ କରୁଛୁ।

ତେବେ ବି ରକି ନିର୍ବିକାର।

ପହଲା, ମୁଣ୍ଡନୁଆଁଇ ଭିତରକୁ ଯାଉ ଯାଉ ଫେରିଆସିଲା। ଇସ୍! ରାମୁ ମୁଣ୍ଡରେ ହାତଦେଲା।

ଦାମିଆ ରିକ୍ସାବାଲାର ମାଟିଆ କୁକୁରଟା ପଛକୁ ପଛ ଲଗାଇ ଠିଆହୋଇଛି। ବେଳେ ବେଳେ ଦୁଇଗୋଡ଼ ଆଗକୁ କରି ଟାଣିହେଉଛି। ରକିର ଆଖିରୁ ଦୁଇବୁନ୍ଦା ଅଶ୍ରୁ ଝରିଆସୁଛି।

ପହଲାର ଛାତି ଧକ୍‌ଧକ୍‌ହୋଇ ପଡ଼ିଲା କି ଉଠିଲା। ମନେହେଲା, ଏବେ ଯେମିତି ତା'ର ହୃଦୟଟା କାମ କରିବନି।

"କ'ଣ କଲୁଲୋ ଛତରଖାଇ, ମୋ ଚାକିରି ତ ଖାଇଲୁ। ଶେଷରେ, ନିଜର ଇଜ୍ଜତ ହରାଇଲୁ।"

ତା'ର ଆଖିରୁ ଲୁହ ଝରିପଡ଼ିଲା। ସେ ମୁଣ୍ଡରେ ହାତଦେଇ ବସିପଡ଼ିଲା।

ରାମୁ କହିଲା, ଆଉ ସେସବୁ ଚିନ୍ତା କରି ଲାଭ ନାହିଁ। ଯାହା ତ ହେବାର ହେଲାଣି। ସାହେବ ଆସିବାର ବେଳହେଲାଣି। ଚାଲ, କିଛି ବ୍ୟବସ୍ଥା କରିବା।

ସେ ବାଲଟିଏ ପାଣିଆଣି ଫିଙ୍ଗିଦେଲା କୁକୁର ଉପରକୁ। କିଛି ସମୟ ଭାଉ ଭାଉ ହୋଇ ସେ ଜୋର୍‌ରେ ଟାଣିହୋଇଗଲା। ବଂଧନ ଖସିଗଲା। ଆଉ ଥରେ ପଛକୁ ନ ଚାହିଁ ଜାଲି ଭିତର ଦେଇ ଏକାଡିଆଁକେ ସେ ପାର।

ପହଲା କହିଲା, "ଭଲ କାମ କଲୁ ଲୋ ତୁ। ତୋ ପାଇଁ ବର ଖୋଜାଚାଲିଛି। ଜାତି ଗୋତ୍ର ଦେଖା ଚାଲିଛି। ଶେଷରେ, ତୋ ମନମୁତାବକ... ଛି, ଛି..."

ଭଲକରି ପାଣି ଆଣି ପହଲା ରକିକୁ ଧୋଇଧାଇ ସଫାକଲା। ସେ ମନଖୁସିରେ ଡେଇଁଲା ବଗିଚା ସାରା। ତା'ର ଏତେ ଆନନ୍ଦ କେବେ ବି ସେ ଦେଖି ନ ଥିଲା।

ବିଚରା ପହଲା ବଂଚିଗଲା। ରକିର ଗୁମରକଥା ଲୁଚିଗଲା। ତା' ପରଦିନ ଲୁଚାଛପା ଭାବରେ ତାରଜାଲିକୁ ଭଲଭାବରେ ବନ୍ଦ କରିଦେଲା। ସୁବିଧା ଦେଖି ଦାମିଆ ରିକ୍ସାବାଲାକୁ ବେଶ୍ ଦୁଇପଦ ଶୁଣାଇଦେଲା। ଅସଲକଥା ନ କହି, ସାହେବଙ୍କ ଘରକୁ ତା' କୁକୁର ପଶିଆସୁଥିବାର ବାହାନା ଦେଖାଇଲା। ତାକୁ ଘରେ ନ ରଖିଲେ ପୋଲିସ୍‌କୁ କହି ବନ୍ଧାଇ ଦେବାର ଧମକ୍‌ଦେଲା।

ଦାମିଆ ପେଟେ ମଦ ପିଇଥିବା ଅବସ୍ଥାରେ ନିଜକୁ ବଡ଼ଲୋକ ବୋଲି ଭାବୁଥିଲା। ସେ ତା' କଥାଶୁଣି ଅଣ୍ଟାଭିଡ଼ିଲା। କହିଲା "ରଖିବେ ତୋର ସାହେବ। ସାଲା ଅପନାଘରମେ ସବ୍ ବଡ଼ାସାହେବ ହୋତା ହୈ। ମୋର ସେର୍ ଯୈସେ କୁତ୍ତା ତୁମାରାସେ କମ୍ ନେହିଁ। ତୋ ବାବୁକୁ ବୋଲ୍ ପାଚେରୀ ବନାଇବ। ଯା, ମେରେ ପ୍ୟାରେ କୁତ୍ତା, ଊର ଏକବାର୍ ଘୁସ୍‌ଯା।"

ପହଲା କିଛି ଉତ୍ତର ନ ଦେଇ ଚୁପ୍‌ରହିଲା।

ପୁଣିଦିନେ ଅଘଟଣ ଘଟିଲା। ଏଥର ଦେଶୀ କୁକୁର ନୁହେଁ ଖୋଦ୍ ରକି କେଉଁବାଟେ ଗଳିପଶି ଦାମିଆର ଘର ପାଖରେ ହାଜର।

କେତେ ସମୟ ସେଠି ଥିଲା କେଜାଣି। ପହଲାର ମୁଣ୍ଡ ଚକ୍କରଖାଇଲା। ତାକୁ ବୁଦ୍ଧିବାଟ ଦେଖା ଗଲାନି। ସେ ଧାଇଁଲା ଝୁମ୍ପୁଡ଼ିବସ୍ତି ଆଡ଼କୁ।

ରକି, ଆଗଗୋଡ଼ ଦୁଇଟା ଲମ୍ବାଇଦେଇ ଆରାମ୍‌ରେ ଶୋଇଥିଲା। ତା'ପାଖରେ ଦେଶୀ କୁକୁରଟା ମୁଣ୍ଡଟେକି ରଜାପରି ବସିଥିଲା। କିଛି ଦୂରରେ ବସ୍ତିର ଦୁଇଚାରିଟା ଧଡ଼ିଆକୁକୁର ବୁଲୁଥିଲେ।

ପହଲାକୁ ଦେଖି ଦେଶୀ କୁକୁର ଦୁଇତିନିଥର ଲାଙ୍ଗୁଡ଼ ପିଟିଦେଲା।

ତା'ଆଡ଼କୁ ଦୃଷ୍ଟି ନ ଦେଇ ସେ ଚଟ୍‌କରି ରକିକୁ ଟେକିଆଣିଲା । କହିଲା, "ତତେ କି ମନ୍ତ୍ର କରିଛନ୍ତି ଏମାନେ, ତୋ· ମନ ଆଉ ବଙ୍ଗଳାରେ ରହୁନି । ଚାଲ୍ ଏଥର ତୁ ବନ୍ଧାହେବୁ" ।

ଏଥର ବି ପହଲା ଧରା ପଡ଼ିଲାନି ।

କିଛିଦିନ ପରେ ବର୍ମା ସାହେବଙ୍କର ବିଦେଶ ଯିବାର ସ୍ଥିର ହେଲା । ତାଙ୍କ ସାଙ୍ଗେ ମ୍ୟାଡ଼ାମ୍ ମଧ୍ୟ ଗଲେ । ଯିବା ପୂର୍ବରୁ ରକି ପ୍ରତି ବିଶେଷ ଧ୍ୟାନ ଦେବାପାଇଁ ସେ ତାଗିଦ୍ କରିଥିଲେ ।

ସାହେବ ଚାଲିଗଲା ପରେ ପହଲା ଆଶ୍ୱସ୍ତ ହେଲା । ମାତ୍ର ଖୁବ୍ କମ୍‌ଦିନ ପରେ ସମସ୍ତ ଶାନ୍ତି ତା'ର ଚାଲିଗଲା । ରକିର ପେଟ ଫୁଲିଉଠିଲା । ସେ ଗର୍ଭବତୀ ହୋଇସାରିଛି । ସେକଥା ସ୍ପଷ୍ଟ ବାରିହୋଇଗଲା ।

ପହଲା, ଡାକ୍ତରଙ୍କ ପାଖେ ନେହୁରାହେଲା । କିଛି ଏକ ବ୍ୟବସ୍ଥା କରିବାପାଇଁ । ରକିର ସନ୍ତାନମାନଙ୍କର ପିତା ଦାମିଆ ରିକ୍ସାବାଲାର କୁତ୍ତା ବନିଯିବ, ସେକଥା କ'ଣ ସାହେବ ସହ୍ୟ କରିପାରିବେ । ଛି । କି ଲଜ୍ଜାର ବିଷୟ । ତାଙ୍କ ସମ୍ମାନରେ ଆଞ୍ଚ ଆସିବ । ତା' ଛଡ଼ା ଏ ଦେଶୀ କୁକୁରର ପିଲାଗୁଡ଼ା ବଙ୍ଗଳା ଭିତରେ ଲଟରପଟର ହେବେ । ଯାହା ଦେହରୁ ଗନ୍ଧ ବାହାରି ଆସୁଥିବ । ତାହା ତ ବରଦାସ୍ତ କରି ହେବନି । ସାହେବ କିପରି ତାଙ୍କର ସମାସ୍କନ୍ଦ ଲୋକଙ୍କ ଆଗରେ ମୁହଁ ଦେଖାଇବେ ?

ପହଲା ନିଜ ମନ ଭିତରେ ଆନ୍ଦୋଳନ ଅନୁଭବ କଲା । ଡାକ୍ତରବାବୁଙ୍କ ପାଖରେ ମୁଣ୍ଡିଆ ମାରିଲା ।

କିନ୍ତୁ ବେଳଗଡ଼ି ଯାଇଥିଲା । ଡାକ୍ତର କହିଲେ ଜୀବନପ୍ରତି ବିପଦ । ରକି ହୁଏତ ମରିଯାଇପାରେ । ସେ ବରଂ ଛୁଆ ପ୍ରସବ କରୁ । ଏ ଭେରାଇଟୀ ପସନ୍ଦ ନ ହେଲେ, ଆରଥରକୁ ଅନ୍ୟଗୋଟେ ଦେଖିନେବା ।

ପହଲାର ଆଉ କିଛି କହିବାର ନଥିଲା । ସମସ୍ତ ସମ୍ଭାବନାକୁ ମୁଣ୍ଡରେ ରଖି ସେ ଫେରିଆସିଲା । ତା'ର ମନେହେଲା ସେ ଯେପରି ମୁଖ୍ୟ ଆସାମୀ ବନିଯାଇଛି, ଘଟଣାଚକ୍ରରେ । ରକି ତ ବାବୁଙ୍କର କୁତ୍ତୀ ନୁହେଁ, ନିଜର ଝିଅ ପରି ।

ବେବି ସେଦିନ ଆସି ପହଞ୍ଚିଲା । ପହଲା ସାହସ ସଂଚୟକରି ତା' ଆଗରେ ସବୁକଥା କହିଲା । ନିଜର ଦୋଷ ମାନିନେଲା । ସେ ଚାହିଁଲେ ତାକୁ ରକ୍ଷା କରିପାରିବ । ବେବି କିଛି ସମୟ ଚୁପ୍ ରହିଲା । କହିଲା, "ତୋର ଦୋଷ କ'ଣ ପହଲା । ଦୋଷ ତ ବୟସର" ।

ପହଲା ଭାବିଥିଲା, ବେବି ତାକୁ ଗାଳିଦେବ । ଘରୁ ବାହାର କରିଦେବାକୁ ଧମକ ଦେବ । ସେ ତା'ର ଗୋଡ଼ତଳେ ପଡ଼ିବ । କ୍ଷମା ମାଗିବ । ଚାକିରି ଖଣ୍ଡକ ପାଇଁ ନେହୁରା ହେବ । ସାହେବ ବେବିକୁ କେତେ ଭଲ ପାଆନ୍ତି ସେ ଜାଣେ ।

କିନ୍ତୁ କଥାଟା ଅଲଗା ହେଲା । ବେବି କିଛି କହିଲାନି ବରଂ ରକିକୁ ଥରେ ଆଉଁସିଦେଲା ।

ଠିକ୍ ସମୟରେ ରକିର ତିନୋଟି ଛୁଆହେଲା । ଗୋଟାକର ଠିକ୍ ତା'ପରି ମୁହଁ ଅଥଚ ଦେହଟା ଦାମିଆର କୁକୁରପରି । ରଂଗ ବେଶ୍ ସୁନ୍ଦର, ଆକର୍ଷଣୀୟ । ଅନ୍ୟ ଦୁଇଟା ଠିକ୍ ଦେଶୀ କୁକୁରପରି । ପହଲା ଘୃଣାରେ ଛେପ ପକାଇଦେଲା । ରକି ପେଟରେ ପୁଣି ଦେଶୀଛୁଆ । ଇଚ୍ଛାହେଲା ତଣ୍ଟିଚିପି ଫିଙ୍ଗିଦେବ । ସାହେବଙ୍କ ସହ ଦାମିଆର ବଂଧୁତ୍ୱ ? ଛି...

ରକି ଉପରେ ଛୁଆଗୁଡ଼ା ଲଟର ପଟର ହେଲେ, ତା'ର ରାଗ ପଞ୍ଚମକୁ ଉଠିଯାଉଥିଲା । ହେଲେ, ବିଚରା କରିବ କ'ଣ । ତା'ର ନିଆଁପରି ଆଖିକୁ ଦେଖି ଚୁପ୍ ଚାପ୍ ରହୁଥିଲା ।

ହଠାତ୍ ଦିନେ ବର୍ମା ସାହେବ ଗେଟ୍ ପାଖରେ ଗାଡ଼ିରୁ ଓହ୍ଲାଇପଡ଼ିଲେ । ମ୍ୟାଡ଼ାମ୍ ହସି ହସି ଭିତରକୁ ଚାଲିଗଲେ । ସାହେବ କିନ୍ତୁ ସେଇଠି ଥାଇ ଡାକ ଛାଡ଼ିଲେ, ରକି... ରକି...

ପହଲାର ଅନ୍ତରାତ୍ମା ଥରିଉଠିଲା । ସେ ଦେଖିଲା ମୁହଁଟେକି ,ରକି ସାହେବଙ୍କ ଆଡ଼କୁ ଚାହିଁଛି । ହେଲେ, ଯିବାପାଇଁ ଶକ୍ତି ପାଉନି । ତେବେ ବି ଉଠିବାକୁ ଚେଷ୍ଟାକଲା ବେଳକୁ, ତିନୋଟି ଛୁଆ, ତା'ର ସ୍ତନକୁ ଭିଡ଼ି ଧରୁଛନ୍ତି । ସେ ଯାଇ ପାରୁନି । ତା'ର ଦାୟିତ୍ୱବୋଧ ବଢ଼ିଯାଇଛି ।

ବର୍ମା ସାହେବ ଧାଇଁଆସିଲେ । କ'ଣ ହୋଇଛି ରକିର ? ଏ ଛୁଆ ?

ପହଲା ଚୁପ୍ ଚାପ୍ ଠିଆହୋଇ ରହିଲା, ଦୋଷୀଟିଏ ପରି । ବର୍ମା ସାହେବ ଚିତ୍କାର କଲେ ।

ରକି କ'ଣ ବୁଝିଲା କେଜାଣି । ମୁଣ୍ଡପୋତି ନିର୍ବିକାରରେ ଶୋଇ ରହିଲା । ତିନୋଟି ଛୁଆ ନିର୍ଦ୍ୱନ୍ଦ୍ୱରେ ସ୍ତନ୍ୟପାନ କରି ଚାଲିଥିଲେ ।

ପହଲା କହିଲା, ପଛପଟ ବାଡ଼ବାଟେ ଦାମିଆର...

ଓ, ସଟ୍‌ଅପ୍, ବର୍ମା ସାହେବ କିଛିସମୟ ଆଖିବୁଜି ଠିଆହୋଇ ରହିଲେ ।

ତାଙ୍କର ଗୋରା ମୁହଁଟା ଲାଲ ପଡ଼ିଯାଇଥିଲା । ରାଗରେ ଫଣ ଫଣ ଦେଖାଯାଉଥିଲେ । ସେ କିଛି କଥା କହିପାରୁ ନ ଥିଲେ । ଧୀର ପଦକ୍ଷେପରେ ଆଗକୁ ଯାଇ ଚଉକି ଉପରେ ଗୋଡ଼ ଲମ୍ବାଇ ବସିପଡ଼ିଲେ । ତାଙ୍କର ମୁଣ୍ଡ କାମ କରୁ ନ ଥିଲା । ଘରର ଚାକର, ପୂଜାରୀ କିଛି ବିପଦ ଆଶଙ୍କାକରି ମୁଣ୍ଡପୋତି ଠିଆହୋଇ ରହିଥିଲେ ।

କାହାର କ୍ଷୀଣ ଶବ୍ଦରେ ସେ ମୁଣ୍ଡଟେକି ଚାହିଁଲେ... ଦେଖିଲେ ରକି ତାଙ୍କର ଗୋଡ଼ ପାଖରେ କୁଁ କୁଁ ହୋଉଛି ।

କେଜାଣି କାହିଁକି ସେ ତା' ଆଡ଼କୁ ଚାହିଁ ପାରିଲେନି । ମନେ ହେଲା ଯା ଭିତରେ ସେ ଏକ ସାଧାରଣ କୁତ୍ତା ବନିଯାଇଛି । ରିକ୍ସାବାଲାର କୁକୁରସହ ସମାନତା ରହିଛି ତା'ର । କାହିଁ ନେପାଳ ରାଜପରିବାରର ରକ୍ତ, କାହିଁ ଝୁମ୍ପୁଡ଼ିରେ ରହୁଥିବା ଗରିବ ଭିକାରି ରିକ୍ସା ବାଲାର । ଛି...

କ'ଣ ଭାବି ସେ ଭିତରକୁ ଉଠିଗଲେ । ହାତରେ ତାଙ୍କର ଗୁଳିଭରା ପିସ୍ତଲ୍ । ଆଗରେ ତଥାକଥିତ ସମ୍ମାନ ହରାଇଥିବା ରକି ।

ସର୍ବସମ୍ମୁଖରେ ରକି ଟଳିପଡ଼ିଲା ।

ତେବେ ବି ରାଗ ଥମିଲାନି । ସେ ଗୋଟାଏ ଛୁଆକୁ ଫିଙ୍ଗିଦେଲେ । କାହିଁ କେତେ ଉଚ୍ଚକୁ ଉଠି ସେ ପାଚେରୀ ଆରପଟେ ଅଦୃଶ୍ୟ ହୋଇଗଲା । ସେହିପରି ଦ୍ୱିତୀୟ ଓ ତୃତୀୟକୁ ଭିନ୍ନ ଭିନ୍ନ ଦିଗକୁ ଫିଙ୍ଗିଦେଇ ଚିତ୍କାର କଲେ । ଭାଗ୍ୟରେ ଥିଲେ ବଂଚିଯାଅ । ତୁମର ଇତିହାସ ନ ରହୁ ।

ନିଜ କାର୍ ଭିତରେ ବସିପଡ଼ି, ରାମୁ ଓ ପହଲା ଉଦ୍ଦେଶ୍ୟରେ କହିଲେ, "ଇଉ ଅଲ୍ ଗେଟ୍ ଆଉଟ୍ । ତମର ଆଉ ଆବଶ୍ୟକତା ନାହିଁ" ।

ନିଜେ ଗାଡ଼ିଚଳାଇ ସେ ବାହାରିଗଲେ ।

କେତେ ରାତିରେ ଘରକୁ ଫେରିଲେ କେଜାଣି । ଗେଟ୍ ପାଖରେ ପହଞ୍ଚୁ ପହଞ୍ଚୁ ଅଭ୍ୟାସବଶତଃ ପାଟିରୁ ବାହାରି ଆସିଲା 'ରକି', ସାହେବ ପ୍ରକୃତିସ୍ଥ ହେଲେ ।

କେହିଜଣେ ନ ଥିଲେ ସ୍ୱାଗତ କରିବାକୁ । ଚାରିଆଡ଼କୁ ମୁହଁ ବୁଲାଇ ବାରଣ୍ଡା ଉପରକୁ ଉଠୁ ଉଠୁ ମ୍ୟାଡ଼ାମ୍ କହିଲେ, ସଂଜବେଲୁ ବେବି କୁଆଡ଼େ ଚାଲିଯାଇଛି । ଲେଖିଛି ଫେରିବନି ବୋଲି, ସି ୱାଜ୍ ପ୍ରେଗ୍‌ନେଣ୍ଟ୍ । ତା' ପାଇଁ ତୁମର ମତାମତ କ'ଣ ହେବ ସେ ଅନୁମାନ କରିନେଇଛି ।

ବର୍ମା ସାହେବଙ୍କ ମୁଣ୍ଡ ଘୂରାଇଦେଲା । ମନେହେଲା, ସେ ଖସିପଡ଼ିବେ । ଲଥିକରି ସେ ଚଉକି ଉପରେ ବସିପଡ଼ିଲେ, ଯେଉଁଠି କିଛିସମୟ ତଳେ ରକିର ରକ୍ତବୁନ୍ଦା ଝରିପଡ଼ିଥିଲା ।



## ସତ୍ୟ ମିଶ୍ର

# ଯୀଶୁଖ୍ରୀଷ୍ଟ

ଚୋରିଟା ଏମିତି ହୁଏ ।

ପ୍ରଥମେ ପିଟର୍ ଅନ୍ଧାର ଭିତରକୁ ପଶିଯାଏ ଓ ସ୍କାରିଆ ବାହାରେ ଠିଆହୋଇ କେହି କୁଆଡୁ ଆସୁଚି କି ନାହିଁ ଲକ୍ଷ୍ୟ କରେ । କିଛି ସମୟ ପରେ ଅନ୍ଧାର ଭିତରୁ ଶୁଭେ ଇତସ୍ତତଃ ଓ ଅସଂଯତ ଅନେକ ଶବ୍ଦ, କାହାର ପାଦଶବ୍ଦ, କିଛି ଗୋଟାଏ ରଖିବାର ବା ଉଠେଇବାର ଶବ୍ଦ ଓ ଅନ୍ୟାନ୍ୟ ଅନେକ ଶବ୍ଦ; ଯେମିତି ମନେହେବ ଯେ ଅନ୍ଧାର ଭିତରେ ଅନେକ ଇମାରତ୍ ଭୁଷୁଡ଼ି ପଡୁଚି । ସ୍କାରିଆ ଆତଙ୍କ ଓ ସମ୍ଭାବନାମିଶ୍ରିତ ଦୃଷ୍ଟିରେ ଅନ୍ଧାର ଭିତରକୁ ଅନେଇ ରହେ ।

ତା'ପରେ ବିନା କାରଣରେ ମଧ୍ୟ ସେ ଭାବିବାକୁ ଆରମ୍ଭ କରେ ଯେ ହଠାତ୍ ତା' ଭିତରୁ କେତେକ ଭୟଙ୍କର ଶବ୍ଦ ଶୁଭିବ । ଯଥା, ଚର୍ଚ୍ଚ ଗମ୍ବୁଜ ତଳର ଅନ୍ଧାର ଭିତରେ ବାଦୁଡ଼ିଟାଏ ଡେଣା ଫଡ୍ ଫଡ୍ କରୁଥିବାର ଶବ୍ଦ ଅଥବା ରାତି ବାରଟାରେ ପାଖ ବସ୍ତିରୁ କୁକୁରଟାଏ ଭୁକିବାର ଶବ୍ଦ । ଏମିତି ଗୋଟାଏ କିଛି ! ଏପରିକି ତା'ଭିତରୁ ବାଦୁଡ଼ିଟାଏ ବି ଉଡ଼ିଆସି ପାରେ । କିଛି କାରଣ ନ ଥିଲେ ବି ସେମିତି ଗୋଟାଏ କିଛି ଘଟିବ ।

କିନ୍ତୁ କିଛି ଘଟେ ନାଇଁ । ଏପରି ଅଯଥା ଉତ୍କଣ୍ଠାମୟ କେତେଟା ଓଜନିଆ ମୁହୂର୍ତ୍ତ ବିତିଯିବା ପରେ ଅନ୍ଧାର ଭିତରୁ ଦୁଇଟା ଆକୃତି ଆଗେଇ ଆସନ୍ତି । ଦୀର୍ଘ ବେଦନା ପରେ ଏକ ରକ୍ତାକ୍ତ ପ୍ରସୂତି ପରି ଅନ୍ଧାରର ଅଶୁଚି ଗର୍ଭରୁ ଜନ୍ମ ନିଅନ୍ତି ପିଟର୍ ଓ ତା'ର ପୋଷା ମାଙ୍କଡ଼ଛୁଆ ରକି ।

ସମୁଦାୟ ଚୋରିଟା ଏମିତି ସହଜ ଭାବରେ ଘଟିଯାଏ । କିଛି ଅସୁବିଧା ହୁଏନାହିଁ, କାରଣ ରକିକୁ ପିଟର୍ ବେଶ୍ ତାଲିମ୍ ଦେଇଥାଏ । ଝରକା ପାଖରେ ବା ଅଧାମେଲା ଦରଜା ମୁହଁରେ ତାକୁ ଛାଡ଼ିଦେବା ପରେ, ଭିତରକୁ ଯାଇ ମାଲ ଆଣି ପିଟର୍ ହାତରେ ପହଞ୍ଚେଇଦବା ଦାୟିତ୍ୱ ରକିର ।

ଆଉ ଧରା ପଡ଼ିଯିବାର ଭୟ ବି ନ ଥାଏ। ଏଥିରେ ବି ରକି ବେଶ୍ ଚାଲାକ୍! ରାସ୍ତାରେ ବିଟ୍ କରୁଥିବା କନେଷ୍ଟବଲ୍‌କୁ ଦେଖିଲେ ରକି ଚୋରି କରାଯାଇଥିବା ଜିନିଷକୁ ମୁହଁରେ ଧରି ଦୌଡ଼ିଯାଏ ଓ କନେଷ୍ଟବଲ୍ ଏହି ତୃତୀୟ ପୁରୁଷର ଉପସ୍ଥିତି ଜାଣିବା ଆଗରୁ ସେ ଅନ୍ଧାରରେ ଲୁଚି ଯାଇଥାଏ।

ତଥାପି କନେଷ୍ଟବଲ୍ ଟର୍ଚ୍ଚ ଜଳାଇ, ରାସ୍ତାରେ ବୁଟ୍ କଚାଡ଼ି ଚିତ୍କାର କରେ; କୌନ୍ ହୈ? ଜବାବ ଦିଏ ପିଟର୍; ଗାଁଓସେ ଲୌଟ ରହେ ହୈ। ତଲାସ କର୍ ସକତେ। ଆଲୁଅ ସବୁ ପଛକୁ ଫେରି ଫେରି କନେଷ୍ଟବଲ୍ ଟର୍ଚ୍ଚର ଗୋଲାକାର କାଚ ଭିତରେ ପଶିଯାନ୍ତି ଓ ପୁଣି ଅନ୍ଧାର କଥା କହେ: ଯା ସକତେ ହୋ।

ଅତଏବ ରକି ଥିବା ପର୍ଯ୍ୟନ୍ତ ଏସବୁ କଥା ରୀତିମତ ବାଁ ହାତର ଖେଳ; ପିଟର୍‌ର ଦୃଢ଼ ବିଶ୍ୱାସ ଯେ ଭବିଷ୍ୟତରେ ମାଙ୍କଡ଼ ରକି ଗୋଟାଏ ପୋଖତ୍ ଓ କୌଶଳୀ ଚୋର ହୋଇଯିବ। ତେଣୁ ସେ ବେଳେ ବେଳେ ତାକୁ ଦୋସ୍ତ ବୋଲି କହେ ଏବଂ ସ୍କାରିଆ ଏହାର ବିଶ୍ଳେଷଣ କରେ। ମଣିଷର ଦୋସ୍ତ ମାଙ୍କଡ଼।

ପିଟର୍ ଏଥିରେ ଯୋଗ କରେ: ମଣିଷର ପୂର୍ବପୁରୁଷ ମାଙ୍କଡ଼।

କିନ୍ତୁ ବାଇବେଲ୍‌ରେ ଏହା ଲେଖା ହୋଇନାହିଁ – ସ୍କାରିଆର ଅଭିଯୋଗ।

– ସେ ବାଇବେଲ୍ ନର୍କକୁ ଯାଉ।

– ବାଇବେଲରେ ଯୀଶୁଖ୍ରୀଷ୍ଟ ଅଛନ୍ତି।

– ଯୀଶୁଖ୍ରୀଷ୍ଟ? ହଁ, ତାକୁ କିଏ ପଚାରେ?

– ତମେ ଧର୍ମର ଦ୍ରୋହ କରୁଚ; ଚର୍ଚ୍ଚକୁ ଯାଉନାହଁ।

– ଚର୍ଚ୍ଚକୁ ମୁଁ ଯିବି, ଯଦି ସେଠି ଚୋରି କରିବା ପାଇଁ କିଛି ମାଲ୍ ମିଳିବ; ରକି ବି ଯିବ।

– ହେ ପ୍ରଭୁ! ସ୍କାରିଆ ତ୍ରସ୍ତ ହୋଇ ପ୍ରଭୁଙ୍କୁ ଡାକେ।

– ହେଃ ହେଃ ହେଃ! ପ୍ରଭୁ! ପିଟର୍ ପ୍ରଭୁ ଶବ୍ଦକୁ ଏମିତି ଉଚ୍ଚାରଣ କରେ ଯେମିତି ସେ ଗୋଟାଏ ନିହାତି ଅଶ୍ଳୀଳ ଶବ୍ଦକୁ ଦୁଇ ତିନିଥର ଜିଭରେ ପରୀକ୍ଷା କରି ପୁଣି ଲଣ୍ଡାଏ ଛେପ ଭଳି ବାହାରକୁ ଫୋପାଡ଼ି ଦେଉଚି।

ସ୍କାରିଆ କିନ୍ତୁ ବିକଳ ହୋଇ ପିଟର୍ ମୁହଁରୁ ଅବହେଳିତ ଭାବେ ତଳକୁ ଗଳି ପଡ଼ିଥିବା ସେଇ ଶବ୍ଦଟିକୁ ଚଟ୍ କରି ଗିଳି ପକାଏ ଓ କହେ; ଏମିତି କହନ୍ତି? ପ୍ରଭୁ ଯୀଶୁ ଆମ ପାଇଁ ପ୍ରାଣ ଦେଇଥିଲେ।

– ରକି ଆମ ପାଇଁ ପ୍ରାଣ ଦେଉଚି।

ଶେଷରେ ଉଭୟେ ଏକ ଅଲିଖିତ ଆପୋଷ ମିଳାମିଶା ସର୍ତ୍ତରେ ପ୍ରବିଷ୍ଟ ହୁଅନ୍ତି ।

ସେଦିନ କିନ୍ତୁ ଘଟଣାଟା ହେଲା ଭିନ୍ନ ପ୍ରକାରର ।

ଅନ୍ୟ ସମୟରେ ମୂଷାଙ୍କ ପରି ଲୁଚି ଛପି ଚୋରି କରୁଥିବା ମଣିଷ ପିଟର୍ ରାତିର ଏକ ନିଷିଦ୍ଧ ପ୍ରହରରେ ଏକ ଅତି ସମର୍ଥ ପୁରୁଷରେ ପରିଣତ ହୋଇଯିବାଟା ସେମାନଙ୍କ ପାଇଁ ନିତ୍ୟ ନୈମିତ୍ତିକ । ସେଦିନ ତା'ର ସମସ୍ତ ପୁରୁଷ ଚେତନା ଯେତେବେଳେ ଏକ ତ୍ୱକ୍‌ମୟ ଅନୁଭୂତି ହୋଇ ପ୍ରଚଣ୍ଡ ବେଗରେ ମୁକ୍ତିର ରାସ୍ତା ଖୋଜୁଥିଲେ, ସ୍କାରିଆର ମନେ ହେଲା ସେ ନିଜର ସମୁଦାୟ ଦେହସମେତ ପିଷ୍ଟ ହୋଇ ଯାଉଚି ଓ ଏପରିକି କିଛି ସମୟ ପରେ ତା'ର ଅସ୍ତିତ୍ୱ ବି ନ ରହିପାରେ । ମନୁଷ୍ୟର ପ୍ରଥମ ପାପ । ବାଇବେଲର ପାପ ! ହଠାତ୍ ସ୍କାରିଆ ଚିତ୍କାର କଲା । ଏଇ ଦେଖୁଚ ?

ପିଟର୍‌ର ଉତ୍ତେଜିତ ଦେହଟାକୁ ଗୋଟିଏ ପାଖକୁ ଠେଲି ଦେଇ ସ୍କାରିଆ ଆତଙ୍କିତ ହୋଇ କାନ୍ଥକୁ ଅନେଇ ରହିଲା, ଯେମିତି ସେ ଆଖି ଆଗରେ ଗୋଟିଏ ଜୀଅନ୍ତା ପ୍ରେତ ଦେଖୁଚି ।

– କ'ଣ ହେଲା ? – ଅତି ସମର୍ଥ ପୁରୁଷ ପିଟର୍ ପଚାରିଲା ।

– ହେ ଭଗବାନ ! ଇଏ ଏଠାକୁ କିମିତି ଆସିଲା ?

ପିଟର୍ ଦେଖିଲା, ସ୍ୱଳ୍ପାଲୋକିତ ସେଇ କୋଠରିର ଏକ କୋଣରୁ ଜଳନ୍ତା କୋଇଲା ଭଳି ଦୁଇଟା ଆଖି ସେମାନଙ୍କର ବୀଭତ୍ସ ରତିକୁ ଦେଖୁଚି ।

– ଏ ଯେ ରକି ।

– ହଁ, ସେ ଭିତରକୁ କିପରି ଆସିଲା ? ସେ ତ ବାହାରେ ଶୋଇବା କଥା ।

ପିଟର୍ ଆଉ କିଛି କହିଲା ନାହିଁ । ଏଭଳି ଏକ ନିଷିଦ୍ଧ କୋଠରି ଭିତରେ ଏଇ ତୃତୀୟ ପୁରୁଷର ଅଭାବିତ ଉପସ୍ଥିତି ଆବିଷ୍କାର କରି ପ୍ରଥମେ ଦୁହେଁ ଚକିତ ହୋଇଗଲେ । ତା'ପରେ ପ୍ରାୟ ଏକ ସମୟରେ ସ୍କାରିଆ ପିଟର୍‌କୁ ଅନେଇଲା ଓ ପିଟର୍ ସ୍କାରିଆକୁ ଅନେଇଲା । ହଠାତ୍ ଦୁହେଁ ନିଜ ନିଜର ନଗ୍ନତା ସଚେତନ ହୋଇ ପଡ଼ିଲେ ଓ ବ୍ୟସ୍ତ ହେବାକୁ ଲାଗିଲେ; ଯେମିତି ସେମାନେ ହେଉଛନ୍ତି ଆଦିମାନବ ଇଭ୍ ଓ ଆଦାମ୍ ! ଏବେ ଅକସ୍ମାତ୍ ନିଷିଦ୍ଧ ଫଳ ଖାଇ ପକାଇଚନ୍ତି ।

ଶୀଘ୍ର ଶୀଘ୍ର ସେମାନେ ନିଜକୁ ଆବୃତ କରିନେଲେ ।

ରକି ତଥାପି ସେମାନଙ୍କୁ ଏକ ଲୟରେ ଅନେଇଥିଲା, ଯେମିତି ସେ ନିଜେ ହଉଚି ଭଗବାନ୍ ଓ ନିଜ ସୃଷ୍ଟ ଏ ଦୁଇଟି ମଣିଷଙ୍କୁ ସେ କୈଫିୟତ ମାଗୁଚି । କୁହ, କାହିଁକି ସେ ଗଛର ଫଳ ଖାଇଲ ? କହ କାହିଁକି ଖାଇଲ ?

ପିଟର୍ ଗୋଇଠା ମାରି ରକିକୁ କୋଠରି ବାହାରକୁ ତଡ଼ିଦେଲା ଓ ଦରଜା ବନ୍ଦ କରି ପୁଣି ଫେରି ଆସିଲା ।

ହେ ପ୍ରଭୁ! ସ୍କାରିଆ ଅସ୍ଫୁଟ କଣ୍ଠରେ କହିଲା ଏବଂ କିଛି ସମୟ ନିରୁଦ୍ଦିଷ୍ଟ ଭାବରେ ସେଇ କୋଠରି ଭିତରେ ଇତଃସ୍ତତ ଘୂରିବାକୁ ଲାଗିଲା । ତା'ପରେ କେଉଁଠୁ ଗୋଟାଇ ଛିଣ୍ଡା ବାଇବେଲ ବାହାର କରି ସେଇ ରାତିଟାରେ ପଢ଼ିବା ପାଇଁ ବସିଲା ।

ଓଃ ! ସ୍କାରିଆ ତା'ହେଲେ ଗୋଟାଏ ବାଇବେଲ ବି ରଖିଚି ! ପିଟର୍ ଆଶ୍ଚର୍ଯ୍ୟ ହୋଇ ତା' ଆଡ଼କୁ ଚାହିଁଲା, ଯେମିତି ଅଯଥାରେ ଧର୍ମ, ଯୀଶୁଖ୍ରୀଷ୍ଟ ଇତ୍ୟାଦି ବାଜେ ଜିନିଷକୁ ନେଇ ବ୍ୟସ୍ତ ହେଉଥିବା ଏଇ ଝିଅଟାକୁ ସେ ମୋଟେ ବରଦାସ୍ତ କରି ପାରୁନାହିଁ ।

– ସ୍କାରିଆ ! ପିଟର୍ ବିଛଣାରେ ଗଡ଼ିପଡ଼ି ଡାକିଲା ।

– ନା ପିଟର୍, ଆଉ ନାଇଁ ।

ପିଟର କିଛି ବୁଝି ପାରିଲା ନାହିଁ ।

– ଆମେ ତ ବିବାହ କରିନୁ !

– ହଁ ! ପିଟର୍ ସ୍ୱୀକାର କଲା ।

– ଆମେ ପାପ କରୁଚୁ !

ପାପ ? ପିଟର୍‌ର ଓଠରୁ ପ୍ରଥମେ ଏ ଶବ୍ଦଟି ମୁଣ୍ଡାଏ ଗିଳି ହେଉ ନ ଥିବା ଟଫିପରି ତଳକୁ ଖସିପଡ଼ିଲା । ପାପ ? ଏଥର ଶବ୍ଦଟି ଏକ ଉଚ୍ଚା ପର୍ବତରୁ ତଳକୁ ଗଡ଼ି ଆସୁଥିବା ମୁଣ୍ଡାଏ ବରଫ ପରି ତା' ମୁହଁରୁ ଖସି ଆସିଲା । ତା'ପରେ ସେ କିଛିଟା ଉତ୍ତେଜିତ ହୋଇ ପଡ଼ିଲା ଓ ଏକ ପ୍ରାଗୈତିହାସିକ ଡ୍ରାଗନ ମୁହଁରୁ ହୁଳା ହୁଳା ନିଆଁ ବାହାରିବା ପରି ତା'ର ବିଦ୍ରୋହୀ କଣ୍ଠରୁ ପାପ ଶବ୍ଦଟି ଅସ୍ଫୁଟ ଭାବେ ବାରମ୍ବା ଉଚ୍ଚାରିତ ହେବାରେ ଲାଗିଲା ।

ସେତେବେଳକୁ ସ୍କାରିଆ ବାଇବେଲ ପଢ଼ା ଆରମ୍ଭ କରି ସାରିଥିଲା ।

ପିଟର୍ ତାକୁ ଆଉ ବିରକ୍ତ କଲାନାହିଁ । ପାପ ଶବ୍ଦଟିକୁ ନିଜ ଜିଭରେ ଭିନ୍ନ ଭିନ୍ନ ଭଙ୍ଗୀରେ ବାରମ୍ବାର ଉଚ୍ଚାରଣ କରି ତା'ର ଧ୍ୱନି ପରୀକ୍ଷା କରିବାକୁ ଲାଗିଲା । ବିବାହ ନ କରି ସ୍କାରିଆ ସହିତ ଏକାଠି ଶୋଇବା ପାପ, ଚୋରି କରିବା ପାପ । ଚୋରି କରି ଫେରିବାବେଳେ ରାସ୍ତାର ବିଟ୍ କନେଷ୍ଟବଲ୍‌କୁ ଠକିବା ପାପ !

ଅତଏବ ସେମାନେ ନିରନ୍ତର ପାପ କରୁଛନ୍ତି । ପିଟର୍, ସ୍କାରିଆ ଓ ରକି କେବଳ ପାପରେ ହିଁ ବଞ୍ଚିଚନ୍ତି ।

ପିଟର୍ ନୀରବ ହୋଇ ବିଛଣାରେ ଗଡ଼ିଥିଲା ଓ ପାଖରେ ବସି ସ୍କାରିଆ ଗୁଣୁ ଗୁଣୁ ହୋଇ ବାଇବେଲ ପଢୁଥିଲା । ନିସ୍ପୃହଭାବେ ପିଟର୍ ତାକୁ ଶୁଣିବାରେ ଲାଗିଲା ।

"ତାଙ୍କୁ ସେମାନେ କ୍ରୁଶରେ ଝୁଲାଇ କଣ୍ଟାଦ୍ୱାରା ବିଦ୍ଧ କରି ପକାଇଲେ । ଶାସକମାନେ ଯୀଶୁଙ୍କୁ ବ୍ୟଙ୍ଗ କରି କହିଲେ, ସେ ଅନ୍ୟମାନଙ୍କୁ ରକ୍ଷା କରିଥିଲା । ଯଦି ସେ ଈଶ୍ୱରଙ୍କର ବରପୁତ୍ର, ତା'ହେଲେ ଏବେ ନିଜକୁ ରକ୍ଷାକରୁ ।

ସୈନିକମାନେ ପାତ୍ରରେ ମଦ ଢାଳି ତାଙ୍କୁ ପିଇବାକୁ ଯାଚିଲେ ଓ ବିଦ୍ରୂପ କରି କହିଲେ, ତୁ ଯଦି ଜୀବମାନଙ୍କର ରାଜା, ତା'ହେଲେ ବର୍ତ୍ତମାନ ନିଜକୁ ରକ୍ଷାକର ।"

ଧେତ୍! ଯେତେ ସବୁ ବାଜେ ଜିନିଷ! ପିଟର୍ ବିରକ୍ତ ହୋଇ ବିଛଣାରୁ ଉଠିପଡ଼ିଲା ଓ କିଛି ନ କହି ସେହି ରାତିଟାରେ ରାସ୍ତାକୁ ବାହାରି ପଡ଼ିଲା । ରାସ୍ତାରେ କିଛି ସମୟ ଇତଃସ୍ତତ ଘୂରି ସେହି ସହରର ବତିଖୁଣ୍ଟଗୁଡ଼ାକ ଗଣିବାକୁ ଲାଗିଲା । ବତିଖୁଣ୍ଟ ସବୁ ତାକୁ ଗୋଟିଏ ଗୋଟିଏ କ୍ରୁଶ ପରି ଦେଖାଗଲେ । ନିଜର ଏ ପ୍ରକାର ଉଦ୍ଭଟ ଚିନ୍ତାପାଇଁ ସେ ନିଜ ଉପରେ ବି କ୍ଷୁବ୍ଧ ଓ ବିରକ୍ତ ହୋଇ ଉଠିଲା । ଏହାପରେ କ'ଣ କଲେ ସବୁଠାରୁ ଭଲହେବ ସେ ଯେମିତି ଆଦୌ ସ୍ଥିର କରି ପାରୁ ନ ଥିଲା । ଶେଷରେ ସେ ଘୂରି ଘୂରି ସହରତଳିର ବେଶ୍ୟା ବସ୍ତିରେ ପହଞ୍ଚିଯାଇ ନିଜକୁ ବୁଝାଇଲା । ସବୁ ସମାନ । ୟାରିଆକୁ ବି ମୁଁ ତ ବିବାହ କରିନାଇଁ ।

ବିବାହ ହିଁ ନାରୀ ପୁରୁଷର ଯୌନ ସଂପର୍କ ପାଇଁ ଏକମାତ୍ର କୈଫିୟତ ନୁହେଁ । ରାସ୍ତାରେ ବୁଲି ବୁଲି ବତିଖୁଣ୍ଟମାନଙ୍କୁ ଗଣୁଥିବା ପିଟର୍ ପୁଣି ନିଜ ଅତି ସମର୍ଥ ପୁରୁଷକାରକୁ ପୁନରୁଦ୍ଧାର କରିବାପାଇଁ ବେଶି ସମୟ ନେଲାନାହିଁ ।

ଡାର୍ଲିଂ! ପିଟର୍ ପ୍ରଶ୍ନ କଲା, ଯୀଶୁଖ୍ରୀଷ୍ଟ କିଏ... ?

କିନ୍ତୁ ତରୁଣୀ ଜଣକ କିଛି ଉତ୍ତର ଦେବା ଆଗରୁ ପିଟର୍ ଏକ ଶକ୍ତ ଚୁମ୍ବନରେ ତା'ର ଓଠ ବନ୍ଦ କରିଦେଲା ଓ ପୁଣି ପ୍ରଳାପ କରିବା ଭଳି କହିଲା– ୟାରିଆ ମୋତେ ଲୁଚାଇ ଗୋଟାଏ ବାଇବେଲ୍ ବି ରଖିଚି । ଶଃ! ତୁମେ କିନ୍ତୁ ଡାର୍ଲିଂ, ବେଶ୍ ଚମତ୍କାର । ମୁଁ ସାରା ସହର ବୁଲି ବୁଲି ଏଠି ପହଞ୍ଚିଛି । ଆଶା କରୁଚି ତମେ ବାଇବେଲ ରଖିନାଇଁ । ହଁ, ତମକୁ ବରଂ କହିରଖେ, ଅନ୍ୟମାନଙ୍କୁ ଯିଏ ପାପରୁ ମୁକ୍ତିଦିଏ ସିଏ ଯୀଶୁଖ୍ରୀଷ୍ଟ । ଆଃ! ରକି ଏଠାରେ ଏବେ ଥାନ୍ତା କି । ଡାର୍ଲିଂ; ମାଙ୍କଡ଼ ମଣିଷର ପୂର୍ବପୁରୁଷ !

ପିଟର୍ ଯେତେବେଳେ ସେଠାରୁ ଫେରିଲା, ସେତେବେଳେ ପାପ, ୟାରିଆ, ଯୀଶୁଖ୍ରୀଷ୍ଟ ପ୍ରଭୃତି କେତେକ ଅନାବନା ଜିନିଷ ତା' ମୁଣ୍ଡ ଭିତରେ ଏକପ୍ରକାର ଜମାଟବାନ୍ଧି ରହି ଯାଇଥିଲେ । ଅଯଥାରେ ମଧ୍ୟ ସେ ୟାରିଆକୁ ମନେ ମନେ ଦୋଷ ଦେବାକୁ ଲାଗିଲା । ତା'ର ମନେହେଲା, ଯେମିତି ୟାରିଆ ତାକୁ ଏସବୁ ଅପରାଧ ଓ ପାପର ଏକମାତ୍ର ଅଂଶୀଦାର ବୋଲି ଆକ୍ଷେପ କରୁଚି । ଏହାର ସିଧାସଳଖ ଅର୍ଥ ହେଲା ଯେ ସେମାନେ ଯୀଶୁଖ୍ରୀଷ୍ଟଙ୍କର ପାର୍ଟିରେ ମିଶିଗଲେଣି ଓ ପିଟର୍‌କୁ ଦୋଷ

ଦେବାକୁ ଆରମ୍ଭ କଲେଣି । ତା' ନ ହେଲେ ଅଧରାତିରେ ଏମିତି ବାଇବେଲ ପଢ଼ିବାର କି ଦରକାର ଥିଲା ?

କିନ୍ତୁ ଖୁବ୍ ଶୀଘ୍ର ପିଟର୍‌କୁ ନିଜ ଗ୍ଲାନି ଓ ପାପର ଆଉ ଜଣେ ଅଂଶୀଦାର ମିଳିଗଲା, ରକି । ଏହା କିଏ ନ ଜାଣେ ଯେ ରକି ତାଙ୍କୁ ଚୋରିରେ ସାହାଯ୍ୟ କରୁଚି । ବରଂ ସତ କହିବାକୁ ଗଲେ ରକି ନିଜେ ହିଁ ଚୋରି କରୁଚି ଓ ଏହାଠାରୁ ଆହୁରି ବେଶି ସତ କହିବାକୁ ଗଲେ, ରାସ୍ତାର ବିଟ୍ କନେଷ୍ଟବଲ୍‌କୁ ରକି ହିଁ ଠକୁଚି ! ସେ ପିଟର୍‌କୁ ଖାନତଲାସ କରିବା ବେଳେ ରକି ନିଜେ ଚୋରିମାଲ୍ ଧରି ଲୁଚି ଯାଉଚି । ଘୋର ଅପରାଧ ! ଅତି ଜଘନ୍ୟ ପାପ ! ତା' ଛଡ଼ା ସେ ଅବଶ୍ୟ ଭିନ୍ନ କଥା; ତଥାପି ସ୍କାରିଆ ଆଉ ପିଟର୍ ଯେ ବିବାହ ନ କରି ସୁଦ୍ଧା ଏକାଠି ଶୋଉଚନ୍ତି ସମଗ୍ର ଜୀବ ଜଗତରେ ଏକମାତ୍ର ରକି ହିଁ ଏହି ବୀଭତ୍ସ ପାପର ସାକ୍ଷୀ ।

ଅତଏବ ରକି ହିଁ ତାଙ୍କ ପାପର ଜୀବନ୍ତ ପ୍ରତୀକ ।

ପିଟର୍ ଏହା ଚିନ୍ତା କରି କିଛିଟା ଆଶ୍ୱସ୍ତ ହେଲା ଓ ମନେ ମନେ ରକିକୁ ପ୍ରଶଂସା କରିବାକୁ ଆରମ୍ଭ କଲା ।

କିନ୍ତୁ ଠିକ୍ ତା' ପରଦିନ ସେହି ଭୟଙ୍କର ଘଟଣାଟି ଘଟିଗଲା ।

ସମ୍ଭବତଃ ରକି ନିଜକୁ ପିଟର୍ ଠାରୁ ପୃଥକ ବୋଲି ମୋଟେ ଭାବୁ ନ ଥିଲା । ତା'ର ଏ ପ୍ରକାର ପ୍ରଶଂସନୀୟ ଏକାନୁଭୂତିର ଏକ ଚମତ୍କାର ପ୍ରମାଣ ବି ଖୁବ୍ ଶୀଘ୍ର ମିଳିଗଲା । ସେତେବେଳେ ପିଟର୍ ବାହାରେ ବସି ଚର୍ଚ୍ଚର ଉଚ୍ଚା ଉଚ୍ଚା ଟୀଖଗୁଡ଼ିକୁ ଦେଖି ମନେ ମନେ ବିରକ୍ତ ହୋଇ ଉଠୁଥାଏ । ସହରର ଘର ଓ କୋଠାମାନଙ୍କ ଉପରେ ଜମାଟ ବାନ୍ଧି ରହିଥିବା ଈଷତ୍ ନୀଳାଭ ମେଘଗୁଡ଼ିକ ତଥା ମେଘ ଉପରକୁ ବର୍ଚ୍ଛାପରି ଉଠି ଯାଇଥିବା ଏଇ ଚର୍ଚ୍ଚର ଶିଖଗୁଡ଼ିକ ମନେ ମନେ ଅନେକ ଉଦ୍ଭଟ ସମ୍ପର୍କ ଦ୍ୱାରା ପିଟର୍ ସଂଯୋଗ କରୁଥାଏ ।

ହଠାତ୍ କୋଠରି ଭିତରୁ ଏକ ଆତଙ୍କମିଶା ଚିତ୍କାର ଶୁଣି ସେ ଚମକି ଗଲା । ପରେ ପରେ ଏକ ଅମାନୁଷିକ ହିସ୍, ହିସ୍ ଶବ୍ଦ । ସମ୍ଭବତଃ ରକିର ।

ପିଟର୍ ଭିତରକୁ ଦୌଡ଼ିଯାଇ ଦେଖିଲା, ରକି ତା'ର ପଂଝା ସାହାଯ୍ୟରେ ସ୍କାରିଆର ଲୁଗାପଟା ଟାଣି ତାକୁ ନଗ୍ନ କରିଦେବା ପାଇଁ ଚେଷ୍ଟା କରୁଚି । ସ୍କାରିଆ ଅସହାୟ ଭାବେ ଆତ୍ମରକ୍ଷାର ଚେଷ୍ଟା କରୁଚି ଓ ଚିତ୍କାର କରୁଚି । ରକିର ତୀକ୍ଷ୍ଣ ପଂଝା ଲାଗି ସ୍କାରିଆ ଦେହର କେତେକ ସ୍ଥାନରୁ ରକ୍ତ ବି ଝରୁଚି ।

ପିଟର୍ ଦୌଡ଼ିଯାଇ ରକିକୁ ଶୂନ୍ୟେ ଶୂନ୍ୟେ ଉପରକୁ ଉଠାଇ ପୁଣି ତଳେ କଚାଡ଼ିଦେଲା ।

ଏହାପରେ ରକିକୁ ବରଦାସ୍ତ କରିବା ସମ୍ଭବ ନୁହେଁ; ଅଥଚ ରକି ପ୍ରତି ପିଟରର ଏକ ସ୍ୱାଭାବିକ ଶ୍ରଦ୍ଧାକୁ ମଧ୍ୟ ଅସ୍ୱୀକାର କରିହେବ ନାହିଁ। ଯେମିତି ରକି ପିଟର୍ ପାଇଁ ସାଙ୍ଘାତିକ ମାନସିକ ବିରୋଧର ସୂଚନା। ପିଟର୍ କିଛି ସ୍ଥିର କରିପାରୁ ନ ଥିଲା! ରକି ତା'ପାଇଁ ପାପର ଏକ ନିଶ୍ଚିତ ପ୍ରତୀକ! ବସ୍ତୁତଃ ରକି ନିଜେ ହିଁ ପାପ! ପାପ!

ହଠାତ୍ ପିଟର୍ ଆବିଷ୍କାର କଲା, ପାପ ପ୍ରତି ତା'ର ବହୁ ଆଗରୁ ରହିଥିବା ଏକ ସ୍ୱାଭାବିକ ଆକର୍ଷଣ କ୍ରମେ ବଢ଼ି ବଢ଼ି ଏହା ଭିତରେ ଏକ ଭକ୍ତିରେ ପରିଣତ ହୋଇଯାଇଛି। ଏପରିକି, ଯଦି ପାପ ଏକ ନିର୍ଦ୍ଦିଷ୍ଟ ଆକୃତି ଧରି ତା' ଆଗରେ ଉପସ୍ଥିତ ହୁଏ, ତାକୁ ସେ ପୂଜା କରିବ। ଏକ ପ୍ରକାର ସିଦ୍ଧାନ୍ତ ଗ୍ରହଣ କରିନେବା ଭଳି ଭଙ୍ଗୀରେ ସେ ଚିତ୍କାର କରି ଘୋଷଣା କଲା, ସ୍କାରିଆ, ଯୀଶୁକୁ ଦେଖିବୁ ଆ!

ସ୍କାରିଆ ଏ ଘୋଷଣା ଶୁଣିବା ପାଇଁ ସେତେବେଳେ ସେଠି ନ ଥିଲା। କିନ୍ତୁ ସେ ପୁଣି ଫେରିବା ବେଳକୁ ପିଟର୍ ସତକୁ ସତ ଏକ ଯୀଶୁଖ୍ରୀଷ୍ଟ ତିଆରି କରି ସାରିଲାଣି।

ସେଇ ପରିଚିତ କୋଠରି ଓ ପରିଚିତ କାନ୍ଥ; ଅଥଚ କାନ୍ଥରେ ଝୁଲି ରହିଥିଲା ଗୋଟିଏ ସାଙ୍ଘାତିକ ମୃତ୍ୟୁର ନମୁନା। କାନ୍ଥକୁ ଲଗାଇ ଗୋଟାଏ କାଠର କ୍ରୁଶ ରଖାଯାଇଚି ଓ ତା' ଦେହରେ କଣ୍ଟା ବାଡ଼େଇ ରକିକୁ କ୍ରୁଶବିଦ୍ଧ କରାଯାଇଚି। ଅବିକଳ ଖ୍ରୀଷ୍ଟଙ୍କ ପରି।

ସ୍କାରିଆ ସ୍ତବ୍ଧ ହୋଇ ଦେଖିଲା, କଣ୍ଟା ଗଳିଥିବା ସ୍ଥାନରୁ ଧାର ଧାର ରକ୍ତ ଗଳି ଚଟାଣ ଲାଲ ହୋଇ ସାରିଲାଣି। ରକି ନିଜର ଶେଷ ଜୀବନୀ ଟିକକ ଜାବୁଡ଼ି ଧରିବାର ପ୍ରବଳ ପ୍ରଚେଷ୍ଟାରେ ଛଟ୍ ଛଟ୍ ହେଉଚି। ରକ୍ତ ତଥାପି ଝରୁଚି ଥୋପି ଥୋପି ହୋଇ। ଆଗରେ ଏକ ଭୟଙ୍କର କାପାଳିକ ପରି ପିଟର୍ ଠିଆ ହୋଇଚି।

ରକିର ବିକୃତ ମୁହଁ ଆଗରେ ନିଜ ମୁହଁ ରଖି ପିଟର୍ ତାକୁ ଦାନ୍ତ ଦେଖାଇ ବିଦ୍ରୂପ କଲା ଓ ତା' ମୁହଁରେ ଲଣ୍ଡାଏ ଛେପ ପକାଇଲା। ତା'ପରେ କିଛି ପାଦ ପଛକୁ ଘୁଞ୍ଚିଯାଇ କହିଲା, ତୁ ଅନ୍ୟମାନଙ୍କୁ ରକ୍ଷା କରିଚୁ। ଯଦି ପାରୁଚୁ ଏବେ ନିଜକୁ ରକ୍ଷାକର।

ଥାକ ଭିତରୁ ବୋତଲେ ମଦ ବାହାର କରି ସେ ଗୋଟାଏ ଗ୍ଲାସରେ ଢାଳିଲା। ଗ୍ଲାସଟା ରକି ମୁହଁରେ ଧରି ପିଇବାକୁ ଯାଚୁ ଯାଚୁ ପୁଣି କହିଲା, ତୁ ଯଦି ଆମର ତ୍ରାଣକର୍ତ୍ତା, ତା'ହେଲେ ଏବେ ନିଜକୁ ରକ୍ଷା କର।

ରକିର ଶରୀର ଛଟପଟ ହୋଇ ସମ୍ପୂର୍ଣ୍ଣ ନିଶ୍ଚେଷ୍ଟ ହୋଇଯିବା ଆଗରୁ ସ୍କାରିଆ ଭୟରେ କକ୍ଷ ତ୍ୟାଗ କରି ଚାଲି ଯାଇଥିଲା ଏବଂ ପିଟର୍ ଆଣ୍ଠୁମାଡ଼ି ପ୍ରାର୍ଥନା କରୁଥିଲା, "ଦାଇ କିଙ୍ଗଡମ୍ କାମ୍...!"

ସ୍କାରିଆ ମନେ ମନେ ସ୍ଥିର କରିନେଲା ଯେ ପିଟର୍ ପାଗ୍ଳ ହୋଇଯାଇଚି । ସମ୍ଭବତଃ ତାକୁ ଯଥାଶୀଘ୍ର ସାଧାରଣ ଅବସ୍ଥାକୁ ନ ଆଣିଲେ ପୁଣି କିଛି ଅନର୍ଥ ଘଟାଇ ବସିବ ।

ରାତିରେ କୋଠରିର ଦରଜା ବନ୍ଦ କରି ସ୍କାରିଆ କୋଠରିର ବେଡ୍ ଲାଇଟ୍‌ଟିକୁ ଜାଳିଦେଲା ଓ ଲୁଗା ଖୋଲୁ ଖୋଲୁ ପିଟର୍‌ର ବେକରେ ଝୁଲିପଡ଼ି ପ୍ରେମ ନିବେଦନ କଲା, ଡାର୍ଲିଂ ।

ପିଟର୍ କିନ୍ତୁ ଗୋଟିଏ ଧକ୍‌କାରେ ତାକୁ ଠେଲିଦେଇ ଚିତ୍କାର କରି ଉଠିଲା, ବଜ୍ଜାତ୍ ମାଇକିନା- ମୋତେ ପୁଣି ସେଇ କ୍ରୁଶ୍‌ରେ ଝୁଲାଇବାକୁ ଭାବିଚୁନା ? ମୁଁ କିନ୍ତୁ ଯୀଶୁ ହେବାକୁ ଚାହେଁ ନାହିଁ, ଜାଣିଥା ।



ଭୀମ ପୃଷ୍ଟି

# ଦ୍ୱାର ବନ୍ଦ ସବୁଜ ଜୀବନ

କେତେ ବା ବୟସ ହୋଇଥିଲା ତା'ର–

ମହୁଲ ଗଛ ଉପରୁ ଦେଖୁଥାଏ– ଉପରେ ଆଖି ପାଉ ନଥିବା ନୀଳ ଆକାଶ ତଳେ ସବୁଜ ପୃଥିବୀ। ତା' ଭିତରେ ଜାତି ଜାତିକା ଫୁଲ। ଫୁଲକୁ ଫୁଲ ଉଡ଼ି ବୁଲୁଥାନ୍ତି ଚିତ୍ରିତ ପ୍ରଜାପତି। ଘାସକୁ ଘାସ ଡେଇଁ ବୁଲୁଥାନ୍ତି ଝିଣ୍ଟିକା। ଡାଳକୁ ଡାଳ ଡେଇଁ ବୁଲୁଥାନ୍ତି ଗୁଣ୍ଡୁଚିମୂଷା। ଗୋଟେ ଡାଳକୁ ଅନ୍ୟ ଡାଳ ସହ ସରୁ ସୂତାରେ ବାନ୍ଧି ଦେଉଥାନ୍ତି ବୁଢ଼ିଆଣୀ। ଚୌଦିଗର ସାବ୍‌ନା ସାବ୍‌ନା ନାଚକୁଦ। କଅଁଳିଆ ଖରା। ଉଷୁମ୍ ଉଷୁମ୍ ପବନ ସାରା ଜଙ୍ଗଲର ରଙ୍ଗ ବେରଙ୍ଗୀ ସ୍ୱାଧୀନତାରେ ଏ ବିଭୋର ହୋଇଗଲା। ଭାବିଲା–ଧାଇଁଯିବ ସମସ୍ତଙ୍କୁ ଗେଲ୍‌ରେ ଗେଲ୍‌ରେ ଛୁଇଁଯିବ। ଉଡ଼ି ବୁଲିବ ଘାସରୁ ଫୁଲ, ଫୁଲରୁ ଡାଳ, ଡାଳରୁ ଆକାଶ। ପୁଣି ତା ମହୁଲ ଗଛର ଘରକୁ ଫେରି ଆସିବ। ଗୋଡ଼ ହଲାଇଲା। ମୁଣ୍ଡ ହଲାଇଲା। କୁନି କୁନି ଡେଣା ଟେକି ଉଡ଼ି ଯିବାକୁ ଚାହିଁଲା। ମାତ୍ର ହତାଶରେ କୋରଡ଼କୁ ଫେରି ଆସିଲା। ଆହାର ଖାଇବାକୁ ସେତେବେଳେ ଇଚ୍ଛା ନ ଥିଲେ ମଧ ଚିଁ ଚିଁ ହୋଇ ମା' ଉପରକୁ ବିରକ୍ତ ହେଲା।

- ସକାଳୁ ସକାଳୁ କୁଆଡ଼େ ଯାଇଛୁ, ଯେ ଯାଇଛୁ। ଏଣୁତେଣୁ ଭାବୁ ଭାବୁ ଆଗରେ କଅଁଳିଆ ନିଦଟେ ମାଡ଼ି ଆସୁଥିଲା। ଥଲ୍‌କା ଥଲ୍‌କା ଗରମ ପବନ ବାମ୍ଫରେ ନିଦଟା ଚାଉଁକିନା ଭାଙ୍ଗିଗଲା। କୋରଡ଼ ଭିତରକୁ ଜଳନ୍ତା ନିଆଁ ମୁଣ୍ଡା ପରି ଦୁଇଟି ଆଖି ତାକୁ ଚାହିଁ ରହିଛି। ମୁହଁ ଦେଖୁ ଦେଖୁ ଚିହ୍ନିଗଲା ମଣିଷଟିଏ। ମା' ଦିନେ ଏମିତି ଗୋଟେ ମୁହଁ ସହ ପରିଚୟ କରାଇ ଦେଇ ସାବଧାନ କରି ଦେଇଥିଲା–

- ଧନରେ! ଏମାନେ ମଣିଷ। ଆମର ଜୀବନକୁ ନେଇ ଏମାନେ ସଉକ୍ ମେଣ୍ଟାନ୍ତି। ଥରେ ଏମାନଙ୍କ ହାବୁଡ଼ରେ ପଡ଼ିଲେ ଆଉ ମୁକ୍ତି ମିଳେନାରେ ଧନ।

ସେଦିନ ମା'ର କଥା ଏ କାନରେ ପୂରାଇ ସେ କାନରେ ବାହାର କରି ଦେଇଥିଲା। ମା'ର ସାବ୍‌ଜା ମୋଲାୟମ୍ ପର ତଳେ ଥକ୍ଷ ଗୁଞ୍ଜି ସେଦିନ ଭୁଲି

ଯାଉଥିଲା ସବୁ ଆତଙ୍କ । ମାତ୍ର ସେହି ମୁହୂର୍ତ୍ତରେ ମଣିଷର କଣ୍ଟାପରି ପାଞ୍ଚଟି ଆଙ୍ଗୁଠି ଖାପ୍‌ଚିରେ ସେ ବନ୍ଦୀ ହୋଇଗଲା । ତା' କୁନି ଥଣ୍ଟରୁ ନିମିଷକେ ନିଃଶେଷ ହୋଇଗଲା ସମସ୍ତ ଆକୁଳତାର ଚିଁ ଚିଁ ଶବ୍ଦ । ସେ ଯେପରି ଦେଖି ବି ଦେଖି ପାରୁନି - କ'ଣ ଘଟୁଛି ବା ଘଟିବାକୁ ଯାଉଛି ।

ତା'ପରେ ଗୋଟେ ଅଦ୍‌ଭୁତ ଘରେ ସେ ବନ୍ଦୀ । ଚାରିଆଡ଼େ ବିଞ୍ଚି ହୋଇଥାଏ ଆଲୁଅ । ଯା' ଆସ କରୁଥାଏ ପବନ । ଦେଖିପାରୁ ଥାଏ ସବୁ ଦୃଶ୍ୟ ଅଥଚ କାହାକୁ ଛୁଇଁ ପାରୁ ନଥାଏ । କାଠି ପିଞ୍ଜରାର ସେହି ସୀମିତ ପରିସରରେ ସେ ଚୁପ୍‌ଚାପ୍ ଦେଖୁଥାଏ ସେହି ଅପରିଚିତ ପୃଥ୍ୱୀକୁ । ସାରି ସାରି ମହୁଲ, ଶାଳ, ପିଆଶାଳ ଗଛ ବଦଳରେ ଆକାଶ ଛୁଆଁ କୋଠା ଘରର ଜଙ୍ଗଲ । ଗୁଣ୍ଡିଚିମୂଷା, ଝିଣ୍ଟିକା, ପ୍ରଜାପତି, ବିଭିନ୍ନ ଜାତିର ଚଢ଼େଇ ବଦଳରେ ଚାରିଆଡ଼େ ମଣିଷ, ରିକ୍‌ସା, ସାଇକେଲ ଓ ମଟରଗାଡ଼ିର ବିକଟାଳ ଶବ୍ଦ । ଏ ଜୋରରେ ଚିତ୍‌କାର କଲା । ପିଞ୍ଜରା ଭିତରେ ଏପାଖ ସେପାଖ ହେଲା । ଥଣ୍ଟ ଗଳାଇଲା ଶେଷରେ ଗୋଟେ ଅଦ୍‌ଭୁତ ଅସହାୟତାରେ କାନ୍ଦ କାନ୍ଦ ହୋଇ ଡାକ ଛାଡ଼ିଲା–

– କୁଆଡ଼େ ଗଲୁ ଲୋ ମାଆ । କେଉଁଠି ରହିଲା ଆମ ମହୁଲ ଗଛର ଘର । ପ୍ରଜାପତି, ଫୁଲ ଘାସ ଗାଲିଚା, ଝିଂଟିକା, କଅଁଳିଆପତ୍ର, ଗୁଣ୍ଡିଚିମୂଷା, ଉଷୁମ ପବନ, ବୁଢ଼ିଆଣୀ, ନୀଳ ଆକାଶ, କେଉଁଠି ସେହି ଆମର ସବୁଜ ଦୁନିଆ ଲୋ ମା ! ମହୁଲଗଛ କୋରଡ଼ରୁ ତାକୁ ଚୋରାଇ ଆଣିଥିବା ସେ କଳା ମଚମଚିଆ ଲେଂଗୁଠି ପିନ୍ଧା ଲୋକଟା ତାକୁ ଦୁଇ ତିନିଖଣ୍ଡ କାଗଜ ବଦଳରେ ବଢ଼ାଇ ଦେଲା ଆଉ ଜଣେ ସୁଟ୍‌ସାର୍ଟ ପିନ୍ଧା ମଣିଷକୁ । ସାଇକେଲ କ୍ୟାରିୟରରେ ତା ପଞ୍ଜୁରି ବନ୍ଧା ହୋଇ ଆଉ ଗୋଟେ ଅନିଶ୍ଚିତ ଇଲାକାକୁ ଆସୁଥିବାବେଳେ ତା କୋମଳ ହୃଦୟରେ ଝରି ଆସିଲା ଏକ କ୍ଷତାକ୍ତ ଯଂତ୍ରଣାର ଆର୍ତ୍ତି ।

– ମା' ଲୋ ! ତୁ ତ କହିଥିଲୁ ତୋ ଆଖିରେ ମୋ ଦାମ ଅମୂଲମୂଲ । ତୁ କିପରି ଜାଣନ୍ତୁ ଯେ ମୋ ଦାମ୍ ଏଠି କେଇଖଣ୍ଡ କାଗଜର ନୋଟ ଯେଉଁଠି ଜୀବନଟା କାଗଜ ବଦଳରେ କିଣାବିକା ହୋଇଯାଏ ସେଠି ବଂଚିବାର ମୂଲ୍ୟ କ'ଣ ଲୋ ମା ?

ଗୋଟେ ସୁନ୍ଦର ଟାଇଲ ଛାଉଣୀ ଘର ସାମ୍ନାରେ ଲୋକଟି ସାଇକେଲ ଅଟକାଇଲା ଓ ଗଦ୍‌ଗଦ୍ ସ୍ୱରରେ ଡାକିଲା–

– ମଂଟୁ ପପୁନ୍ ଦେଖିବ ଆସରେ କ'ଣ ଆଣିଛି ।

ଘର ଭିତରୁ ହୃଦଚାପା କୌତୂହଳ ନେଇ ଧାଇଁ ଆସିଲେ ମଂଟୁ ପପୁନ୍ ଓ ଝିଅଟିଏ । ମଂଟୁ ଚିତ୍‌କାର କଲା– 'ଇରେ ଶୁଆଟିଏରେ । ବୋଉ ! ଦେଖିବୁ ଆ, ବାପା ଶୁଆଟିଏ ଆଣିଛନ୍ତି ।

ଶାଢ଼ୀ କାନିରେ ଓଦା ହାତ ପୋଛୁ ପୋଛୁ ଘର ଭିତରୁ ଧାଇଁ ଆସିଲା ସ୍ତ୍ରୀ ଲୋକଟିଏ । ଆଖିରେ ଝଲ୍‌ମଲ୍ ହେଉଥିଲା ଆନନ୍ଦ । ପଚାରିଲା ସ୍ତ୍ରୀ ଲୋକଟି–

– ସତରେ କେତେ ଛୋଟ ଶୁଆଟିଏ ମ ! କେଉଁଠୁ ଆଣିଲ ? କେତେ ଦାମ୍ ନେଲା ?

ଲୋକଟି ଯେପରି ଗଡ଼ ଜୟ କରିଛି, ସେମିତି କହିଲା– ଆଗେ କୁହ । କେମିତି ହୋଇଛି ଏ ଶୁଆ ?

ଝିଅଟିଏ ଏପର୍ଯ୍ୟନ୍ତ ନିରବରେ ଠିଆ ହୋଇଥିଲା । ସୁନ୍ଦର ନୀଳ ଆଖି ଦୁଇଟି ନଚାଇ ନଚାଇ ମନ୍ତବ୍ୟ ଦେଲା–

– ଓ ଭାରି ସୁନ୍ଦର । ଭାରି ବଢ଼ିଆ ଶୁଆ ଛୁଆଟିଏ । ବାପା ତମେ ଦେଖିବ ରୁହ । ମୁଁ ତାକୁ ବହୁତ ଶୀଘ୍ର କଥା ଶିଖାଇଦେବି । ଝିଅଟିର କଥା ସରିନି, ମଂଟୁ ପଞ୍ଜୁରି ପାଖକୁ ଧାଇଁ ଆସି ଧମକ ଦେଲା ।

– ହେ ମିଟୁ ! ମିଟୁ ! କଥା କହ । କଥା କହ ।

ଝିଅଟି ବିରକ୍ତ ହେଲା– ହେ ମଂଟୁ ! କାହିଁକି ଏମିତି ଫାଜିଲ ହେଉଛୁ ଯେ, ରହ କିଛିଦିନ ଯାଉ । ସେ ଆଗେ କଥା କହିବନି କି ?

ସେତେବେଳକୁ ପପୁନ ଛୋଟ କାଠିଟେ ଧରି ପିଞ୍ଜରା ଭିତରକୁ ଖେଂଚା ଖେଂଚି ଆରମ୍ଭ କରିଦେଲାଣି । ଝିଅଟି ପପୁନ ହାତରୁ କାଠିଟା ଛଡ଼ାଇ ଧମକ ଦେଲା– "ବଦମାସ ଟୋକା ଏ କ'ଣ କରୁଛୁ ? ମୋ ଶୁଆଛୁଆ ସାଙ୍ଗରେ କେହି ଲାଗିବନି କହି ଦେଉଛି । ମୁଁ ତାକୁ ଗାଧୋଇ ଦେବି । ସୋଲା ଖାଇବାକୁ ଦେବି । କଥା ଶିଖାଇ ଦେବି ।" ମଂଟୁ ପପୁନ ମୁହଁମୋଡ଼ିଲେ – ହଅ, ଖାଲି ତୋ ଶୁଆ । ଏ ଆମ ଶୁଆ ।

ସେ ଦୁଇଜଣ ସ୍ତ୍ରୀ ପୁରୁଷ ପିଲାଙ୍କ ମଜା ଦେଖି ହସୁଥାନ୍ତି । କେତେ ସମୟ ପରେ ଲୋକଟି ଘରେ ବାରଣ୍ଡାର କାଠ ବିଟ୍‌ରେ ପଞ୍ଜୁରିକୁ ଟାଙ୍ଗି ଦେଇ ସାବଧାନ କରାଇ ଦେଲା–

– ଦେଖ, ପୁସି ଯେପରି ପଞ୍ଜୁରି ପାଖକୁ ଚଢ଼ି ନ ଆସେ ଦେଖିବ ।

ପପୁନ ବ୍ୟତୀତ ସମସ୍ତେ ଘର ଭିତରକୁ ଚାଲି ଯାଇଥିଲେ । ପପୁନ୍ ସାହିପିଲାଙ୍କୁ ଡାକିଲା– "ଦେଖିବ ଆସ । ଆମର ଶୁଆ ଆସିଛି । କେତେ ସୁନ୍ଦର ସାବ୍‌ଜା ଶୁଆଟିଏ ଦେଖିବ ଆସ ।

ଉପରେ ଟଂଗା ହୋଇଥାଏ ସେ । ତଳେ ଦଳ ଦଳ ପିଲା । ଯେପରି ପଞ୍ଚେ ଚଢ଼େଇ ହସୁଥାନ୍ତି । ନାଚୁଥାନ୍ତି ।

ତା'ପାଇଁ ଏ ଅଚିହ୍ନା ପୃଥିବୀରେ ଏତେ ଆନ୍ତରିକତା, ତାକୁ ପାଇ ଏ ମଣିଷଙ୍କ ଏତେ ଆନନ୍ଦ ଥାଇପାରେ ! ଏହା ଦେଖି ତଟସ୍ଥ ହୋଇ ଚୁପ୍‌ଚାପ୍ ବସିଥାଏ ସେ ।

ମା'ଠାରୁ ଯାହା ଆଗରୁ ଶୁଣିଥିଲା ତାହା ଏହା ଭିତରେ ଭୁଲି ଯାଇଥିଲା । ନିଜକୁ ସେ ନୂଆଭାବେ ଆବିଷ୍କାର କଲା ସେ, ସୁନ୍ଦର ଶୁଆ ଛୁଆଟିଏ ତା' ନାଁ ଦିଆ ହୋଇଛି ମିଟୁ । ସେ ସୋଲା ଖାଇବ । ଗାଧୋଇବ । ମଣିଷ ପରି କଥା କହିବ । ପୁସିମାନଙ୍କୁ ସାବଧାନ ରହି ଏ ପଞ୍ଜୁରି ଭିତରେ ବିତାଇ ଦେବାକୁ ତମାମ ଜୀବନ ।

'ତମାମ ଜୀବନ' – ଏହି ପଦିଏ ଚିନ୍ତାରେ ଥମ୍‌କରି ହଜିଗଲା ସବୁ ଆନନ୍ଦ । କିପରି ଗୋଟେ ନିର୍ବାସିତ ବନ୍ଦୀ ବନ୍ଦୀ ଜୀବନ । ଇଚ୍ଛା କରି ଉଡ଼ି ପାରିବ କି? ମନ ଇଚ୍ଛା ଆହାର ଖୁଣ୍ଟି ଖାଇ ପାରିବ କି? ଆପଣା ଭାଷାରେ ଗୀତ ଗାଇ ପାରିବ କି? ସୀମିତ ପରିସରର ପୃଥ୍ୱୀ, ସାମ୍ନାରେ ସୀମିତ ଦୃଶ୍ୟ, ଶିଖାଇ ଦିଆ ଯାଉଥିବା ସୀମିତ ଶବ୍‌ଦାବଳୀ ଭିତରେ ତା' ପରିବ୍ୟାପ୍ତ ଜୀବନର ଆଶା, ଆକାଂକ୍ଷା ସବୁ ହେବ ସୀମିତ । ସବୁ ହେବ ସଂକୀର୍ଣ୍ଣ, ନିଷିଦ୍ଧ ପଞ୍ଜୁରି ଭିତରେ ଉଡ଼ିବାର ସ୍ୱାଧୀନତା ତା'ପାଇଁ ହେବ ଗୋଟେ ମିଛ ସ୍ୱପ୍ନ, ଏହିପରି ଗୋଟେ ହୃଦଥରା ବିଷାଦରେ ଶୁଆ ଛୁଆଟିର ହୃଦୟ ଶୂନ୍ୟ ହୋଇଗଲା ।

ଛୋଟ ଛୋଟ ସିଲିଭର ଗିନାରେ । ଗୋଟାକରେ ତିନ୍ତା ଶୋଲା, ଅନ୍ୟଟିରେ ପାଣି ଦିଆଯାଏ । ପଞ୍ଜୁରି ପାଖରେ ଝିଅଟି ଗେହ୍ଲେଇ ହୁଏ– 'ମିଟୁ, ଖାଉନୁ କାହିଁକିରେ ଖାଆ ।'

ମଣ୍ଟୁ ଧମକ୍ ଦିଏ– ଆପେ ଖାଇବ ନାହିଁ କି । ଭୋକ କଲେ ନ ଖାଇ ଯିବ କୁଆଡ଼େ- ?

ମା' କାରଣ କହେ– 'ପହିଲେ ପହିଲେ ମିଟୁର ମା' କଥା ମନେ ପଡୁଛି । ଭୁଲିଗଲେ ଖାଇବ ଯେ ।'

ବାପା ଘର ଭିତରୁ ପଚାରୁଥାନ୍ତି– 'ଆରେ ପିଲାମାନେ! ମିଟୁକୁ ଖାଇବାକୁ ଦେଲଣି ନା?' ପପୁନ ଉତ୍ତର ଦିଏ– "ସେ କିଛି ଖାଉନି ମ ବାପା । ଦେଖୁନା କେମିତି ଚୁପ୍‌ଚାପ୍ ବସିଛି ।"

ଶୁଆ ଛୁଆଟି ସେମିତି ବସିଥାଏ । ଦିନେ, ଦୁଇଦିନ । ଝିଅଟି ବ୍ୟସ୍ତ କରୁଥାଏ ।

– ଖାଇ ଦେରେ ମିଟୁ, ଖାଇଦେ ।

ଶୁଆ ଛୁଆଟି ଝିଅଟିକୁ ଅନେଇ ରହିଥାଏ । ଚିଁ ଚିଁ ହୋଇ ତା ଭାଷାରେ କୁହେ–

ମୁଁ ଜାଣେ– ମୋ ଖାଇବା ପିଇବା ନେଇ ତୁମେ ଭାରି ବ୍ୟସ୍ତ । ମୋତେ ବନ୍ଦୀକରି ସାରା ଦିନ ବଞ୍ଚେଇ ରଖିବା ପାଇଁ ଏ ତୁମର ଗୋଟେ ଚାଲ୍ । ମୋତେ ଛାଡ଼ି ଦେଉନ କାହିଁକି? କାହିଁକି ମତେ ବାନ୍ଧି ରଖିଛ କହିଲ?

ଏୟା କହୁ କହୁ କାନ୍ଦି ପକାଏ ଶୁଆ ଛୁଆଟି ଅଥଚ ଝିଅଟି– 'ଖାଉନୁ କାହିଁକି, ଖାଇଦେ ମିଟୁ'– ଘଣ୍ଟାକୁ ଘଣ୍ଟା ପଞ୍ଜୁରି ପାଖକୁ ଆସି ବିରକ୍ତ କରୁଥାଏ । ଶୁଆଛୁଆଟି ସହି ପାରିଲାନି ଝିଅଟିର ମିଠା ଅନୁରୋଧ । ଭୁଲିଗଲା ନିଜର ବନ୍ଦୀ ଜୀବନ, ଭବିଷ୍ୟତ,

ଭୁଲିଗଲା ନିଜର ଏକାନ୍ତ ଦୁଃଖ ଟିକକକୁ । ନାଲିଥଣ୍ଟରେ ସୋଲା ଟୁଙ୍କି ଟୁଙ୍କି ଖାଇବା ଆରମ୍ଭ କରି ଦେଲା । ପ୍ରତୀକ୍ଷାରତ ଝିଅଟି ଚାପି ରଖିପାରିଲାନି ଏ ଖୁସି ଦୃଶ୍ୟକୁ । ପପୁନ୍, ମଣ୍ଟୁ, ବୋଉ, ଦେଖିବ ଆସ ମିଟୁ ଖାଇଲାଣି ।

ଧାଇଁ ଆସିଲେ ସେ ପରିବାର । ସେ ଖାଇଲେ ହିଁ ବଞ୍ଚିବ । ବଞ୍ଚିବ କେବଳ ଖାଇବା ପାଇଁ । ବଞ୍ଚିବ କେବଳ ଏ ପରିବାରକୁ ଖୁସି କରିବାକୁ ଏହା ସମସ୍ତେ ଧରି ନେଇଛନ୍ତି । ଖାଉ ଖାଉ ଶୁଆଛୁଆଟି ବୟସ୍କ ପରି ସିଦ୍ଧାନ୍ତ କରିନେଲା– ଯଦି ସମସ୍ତେ ଏୟା ଚାହାନ୍ତି ତେବେ ସେ ସେମିତି ବଞ୍ଚୁ ।

ସମୟେ ସମୟେ ଦୁଇଟା ଜଳନ୍ତା ପ୍ରଲୋଭିତ ଆଖି ତାକୁ ଚାହିଁ ରହିଥାଏ । ଶୁଆଛୁଆଟିର କଲିଜା ଯେପରି ଥମ୍ କରି ବନ୍ଦ ହେଲା ପରି ଲାଗେ । ସେ ଦିନ ମହୁଲ ଗଛ କୋରଡ଼ରେ ଦେଖିଥିବା ଆଖିଠାରୁ ଏ ଆଖି ଆହୁରି ପୈଶାଚିକ । ଧୋବ ଫର୍‌ଫର୍ ରୋମରୋମିଆ ଚେହେରାର ଜନ୍ତୁଟା ଉପରକୁ ଡେଇଁ ପଞ୍ଜୁରିକୁ ଛୁଇଁବାକୁ ଚେଷ୍ଟା କରୁଥାଏ । ଛୁଇଁ ନ ପାରିବାର ବ୍ୟର୍ଥତାରେ ଡାକୁଥାଏ– 'ମିଆଉଁ' । ସେତିକିବେଳେ କେଉଁଠି ଥାଏ ଝିଅଟି ଆସେ ଧମକ ଦେଇ କୁହେ–

– 'ଦେଖ୍ ପୁସି ! ମୋ ମିଟୁ ଉପରକୁ ଆଖି ଦେବୁନି କହିଦେଉଛି । ସେଦିନ ତୋତେ ଶେଷ କରିଦେବି ।'

ଦ୍ୱିପ୍ରହରରେ ଘରେ ସମସ୍ତେ ଶୋଇ ଯାଇଥାନ୍ତି । ପଞ୍ଜୁରି ଭିତରେ ଶୁଆ ଛୁଆଟି ଭାବୁଥାଏ– ଆଶଙ୍କା, ଆତଙ୍କ ଭିତରେ ତା'ର ବିତୁଥିବା ପ୍ରତିଟି ମୁହୂର୍ତ୍ତକୁ ନେଇ ସାରା ଜୀବନ । ସ୍ୱାଧୀନତା ପାଇଁ ପଞ୍ଜୁରି ଭିତରୁ ମୁକ୍ତି ଖୋଜିଲେ ମଧ ନିସ୍ତାର ମିଳିବନି । ତା'ସ୍ୱାଧୀନତାର ସ୍ୱପ୍ନକୁ ରକ୍ତାକ୍ତ କରିବାକୁ ପୁସି ଜହ୍ଲାଦ ପରି ତା'ରି ଅପେକ୍ଷାରେ ହିଁ ବସି ରହିଥିବ । ଗୋଟେ ଘରେ ଦୁଇଟି ପୋଷାଜନ୍ତୁଙ୍କ ଭିତରେ ଏମିତି ଚାଲିଥିବ ଶିକାର ଶିକାରୀର ଖେଳ ।

ଅଥଚ ବଞ୍ଚିରହିବାର ଲୋଭଟିରେ କଟିଗଲା କିପରି ପାଞ୍ଚ ବର୍ଷ । ଏକଥା ଭାବିଲେ ଶୁଆଟିକୁ ଲାଗୁଛି ନିଦରୁ ଉଠି ସ୍ୱପ୍ନଟି ପରି ଆଶ୍ଚର୍ଯ୍ୟ । ତା'ବେକକୁ କଳା ମାଳଟିଏ ପିନ୍ଧେଇ ଦେଲା ପରି ସେହି ରଙ୍ଗର ବଳୟଟିଏ ତା' ଚିକ୍‌କଣ ସବୁଜ ଦେହରେ ବେଢ଼େଇ ହୋଇ ସାରିଥାଏ । ଲମ୍ବାଡ଼େଣା । ତୀକ୍ଷ୍ଣ ଗୋଲାପି ଥଣ୍ଟ । ଲାଲ ଗୋଲ ଗୋଲ ଆଖିରେ ବେପରୁଆ ଚାହାଣି ଚିହ୍ନେଇ ଦେଉଥାଏ ଶୁଆଟିର ବିଜୟଦୀପ୍ତ ଯୌବନକୁ, ପଞ୍ଜୁରୀ ପୃଥିବୀରେ ଅଧିକାର ଜାହିର କରିବାର ଅହଙ୍କାରକୁ । ଏହି ଅହଙ୍କାରରେ କିଛି ଦିନ ସେ କାଟି ଦେଇଥିଲା କାଠି ପଞ୍ଜୁରିର କେତୋଟି କାଠି । ସେଥିରୁ ନିସ୍ତାର ମିଳିଲାନି । ଗୋଟେ ଲୁହା ପଞ୍ଜୁରିକୁ ତାକୁ ସ୍ଥାନାନ୍ତରିତ କରା ଯାଇଥିଲା ।

ସକାଳୁ ସକାଳୁ ଶୁଆଟା ଚିତ୍କାର କରେ ଏ ମିଟୁ– କହ, ହରେ କୃଷ୍ଣ ହରେ ରାମ ।

ଆଜିକାଲି ଶୁଆର ଏ କଥା ଅତି ଫର୍ମାଲ ଲାଗେ ମଣ୍ଟୁକୁ । ଉଷ୍ମ ବୟସରେ ପିଲାଟା ଦିନକୁ ଦିନ ଯେପରି ହୋଇଯାଉଛି ଖାମଖିଆଲି । ବେପରୁଆ । ପଞ୍ଜୁରି ପାଖକୁ ଆସି ଧମକ ଦିଏ– 'କାହିଁକି ଇଡ଼ିୟଟଟାପରି ପାଟି କରୁଛୁ? ହରେ କୃଷ୍ଣ ନା ଛେନାଗୁଡ଼ । ଶାଲା ସକାଳୁ ସକାଳୁ ମୁଣ୍ଡଟା ଖରାପ କରିଦେଲା ।'

ସକାଳେ ମଣ୍ଟୁ ସାଇକେଲ ଧରି ବାହାରିଯାଏ । ଆସେ ନିର୍ଧୁମ ଖରାବେଳେ । ପୁଣି ଖାଇଦେଇ ଛୁ । ପୁଣି ଫେରୁ ଫେରୁ ରାତି ଏଗାର କି ବାର୍ । ସେ ପହଞ୍ଚିଗଲେ ଘରେ ଯେପରି ଝଡ଼ଟିଏ ବହିଯାଏ । ପିଲାଟିର କ୍ରୋଧ ପାଖରେ ଏ ଘରେ ସମସ୍ତେ ଆଶଙ୍କାରେ ବିତେଇ ଚାଲନ୍ତି ସେ ଘରେ ରହିଥିବା ମୁହୂର୍ତ୍ତଗୁଡ଼ିକୁ । କେତେବେଳେ ନଖାଇ ସାଇକେଲ ଧରି ଚାଲିଯାଏ କେତେବେଳେ ଶୁଭେ କପ୍ ପ୍ଲେଟ ଆଇନା ଭାଙ୍ଗିବାର ଶବ୍ଦ ।

ଝିଅଟି ଆଜିକାଲି ଅସମ୍ଭବ ପ୍ରକାର୍ ଗ୍ରମ୍ଭୀର । ଖୁବ୍ କମ୍ କଥା କହୁଛି । ମାପିଚୁପି ହସୁଛି । ଅଦ୍‌ଭୁତ କାରୁଣ୍ୟରେ ଝିଅଟି ଦିନକୁ ଦିନ ପାଲଟି ଯାଉଛି ଦୁଃଖେଶ୍ୱରୀ । ଆଗେ ତା'ରି ପଞ୍ଜୁରି ପାଖରେ ଠିଆ ହେବା ବାହାନାରେ ଗୋଟେ ନିର୍ଦ୍ଦିଷ୍ଟ ସମୟକୁ ଅପେକ୍ଷା କରୁଥାଏ ଏ ଝିଅ । ସାଇକେଲ ଘଣ୍ଟି ବଜାଇ ନିରବରେ ରାସ୍ତା ପାରି ହେଉଥିବା କଳା ଡେଙ୍ଗା ଟ୍ରାଉଜର ପଞ୍ଜାବିପିନ୍ଧା ଲୋକଟିକୁ ଦେଖିଲେ ଝିଅଟିର ଆଖିରେ ଓହ୍ଲେଇ ଆସୁଥିଲା ଗୋଟେ ଅପୂର୍ବ ଜହ୍ନରାତି । କେବେ କେବେ ବାରଣ୍ଡାତଳେ ସାଇକେଲ ଉପରେ ବସି ପଦେ ଦି'ପଦ ପଚାରି ଦିଏ । ଝିଅଟି ଉତ୍ତର ଦେଉ ଦେଉ ଲାଜେଇ ଯାଏ । ଲାଜେଇଯାଏ ତ ପଞ୍ଜୁରି ଆଡ଼କୁ ଚାହିଁ ହସିଦିଏ । ଶୁଆଟି ଝିଅଟିର ହସର ଅର୍ଥ ବୁଝେନା ମାତ୍ର ଖୁସି ହୋଇଯାଏ । କିନ୍ତୁ ଆଜିକାଲି ସାଇକେଲ୍‌ର ଘଣ୍ଟି ଶୁଭେନା । ଝିଅଟି ଅଗଣାରେ ଠିଆ ହୋଇ ଦୂର ରାସ୍ତାକୁ ଚାହିଁ କାହାକୁ ଅପେକ୍ଷା କରେନା । ଏବେ ଝିଅଟିର କୌଣସି ଘଟଣା ପ୍ରତି ଆଗ୍ରହ ନାହିଁ । ଝିଅଟିର ହୃଦୟରୁ ଯେପରି ଆଶ୍ଚର୍ଯ୍ୟ ହେବା, ଆଶ୍ଚର୍ଯ୍ୟ ହୋଇ ଆନନ୍ଦ ଦେଇଯିବାର ପ୍ରବୃତ୍ତିଟି ମରି ମରି ଯାଇଛି । ପ୍ରଗଲ୍‌ଭତାରେ ନିଜେ ନିଜର ଭିତରେ ଓ ବାହାରେ ତରଙ୍ଗାୟିତ ହୋଇ ଯାଉଥିବା ଝିଅଟି ବର୍ତ୍ତମାନ ଯେପରି ଗୋଟେ ସ୍ଥିର ହ୍ରଦ ।

'ବାପା' ବୋଲି ଲୋକଟାର ବୟସ ଯେପରି ଏ ପାଞ୍ଚବର୍ଷ ଭିତରେ ବଢ଼ିଯାଇଛି ଅଧିକ ଦଶବର୍ଷ । ମୁହଁରେ ଦାଢ଼ି ଅଯତ୍ନ ପୋଷାକ, ଛିଣ୍ଡାଚପଲ ଭାରାକ୍ଲାନ୍ତ ମୁହଁ, ଗରମ ଗରମ ଦୀର୍ଘନିଃଶ୍ୱାସ । ଆସନ୍ତା ବର୍ଷେ ଦୁଇବର୍ଷର ରିଟାୟାଡ଼ମେଂଟ ସମୟକୁ ହିସାବ କରି କରି ଲୋକଟି ଅଦ୍‌ଭୂତ ଅସହାୟତାରେ ସ୍ଥାଣୁ ହୋଇଯାଇଛି । ଅଫିସ

ଯାଉଛି, ଆସୁଛି ଅଥଚ ଅଫିସଫେରା ପରର ଶାନ୍ତି ଯେପରି ହଜେଇ ଦେଉଛି। ମାର୍କେଟିଙ୍ଗ୍ କରୁଛି ଅଥଚ ମାର୍କେଟିଙ୍ଗ୍ ବ୍ୟାଗ ଧରି ଫେରୁଥିବା ଏହି ଗୃହସ୍ଥର ଆତ୍ମତୃପ୍ତି ବିଲୁପ୍ତି ହୋଇ ଯାଇଛି। ପୁଅର ଔଦ୍ଧତ୍ୟ, ଝିଅର ବିବାହ, ସ୍ତ୍ରୀର ଔଷଧ ଚିନ୍ତାରେ ଏ ଲୋକଟି ଯେପରି ଭୁଲି ଯାଇଛି, ନିଜର ସୁଖଶାନ୍ତିକୁ, ନିଜକୁ।

ବୋଉ ନାମକ ସ୍ତ୍ରୀ ଲୋକଟି ଦୁଃସାଧ୍ୟ ରୋଗରେ ବିତାଉଛି ବିକଳ ଜୀବନଟିଏ।

ଗୋଟେ ଝାପ୍‌ସା ଅଭାବବୋଧ ସେହି ପରିବାରକୁ ଯେପରି ଗ୍ରାସ କରି ଆସୁଛି। ସମସ୍ତେ ଯେପରି ମୂକହୋଇ ଯାଇଛନ୍ତି। ଆସ୍ତେ ଆସ୍ତେ ସରି ଯାଉଛି ସବୁ ଆନନ୍ଦ। ପରିବାରଟିର ଏହି ପରିସ୍ଥିତିଟି ଭାବିଲେ ଶୁଆଟିର ହୃଦୟ ଶୀତଳ ବିଷାଦରେ ଓଦା ହୋଇଯାଏ। ସାରା ପରିବାରଟି ଯେତେବେଳେ ଚୁପ୍‌ଚାପ୍ ସେତେବେଳେ ଶୁଆଟି କେବଳ ନୀରବ ଦୁର୍ଭାଗ୍ୟ ମଝିରେ ଚିତ୍‌କାର କରି ଜଣାଇଦିଏ, ଏବେ ବି ସମସ୍ତେ ଆଗପରି ଅଛନ୍ତି। ସେ ପାଇଁ ବୁରି ଛାଡୁଥାଏ– ମିଟୁ, ପପୁନ, ବାପା ବୋଉ– କହ ହରେ କୃଷ୍ଣ ହରେ ରାମ।

ପ୍ରଥମେ ପ୍ରଥମେ ତା ଡାକ ଶୁଣିବା ପାଇଁ ଶିଶୁର ଦରୋଟି କଥା ଶୁଣିବା ପରି ପରିବାରଟି ଆହ୍ଲାଦିତ ହେଉଥିଲେ। ସେତେବେଳେ ଗୋଟେ ଚଢ଼େଇର କଣ୍ଠସ୍ୱର ଭିତରେ ମଣିଷର ନକଲିସ୍ୱର ଶୁଣିବାକୁ ପ୍ରତିଟି ମଣିଷର ଆତ୍ମରତିକୁ ବେଶ ହୃଦୟଙ୍ଗମ କରୁଥିଲା ଶୁଆଟି। 'ବୋଉ' ବୋଲି ଡାକି ଦେଲେ– ମାତୃତ୍ୱରେ ଉଚ୍ଛୁଳି ପଡୁଥିଲା ସ୍ତ୍ରୀ ଲୋକଟି।

'ବାପା' ବୋଲି ଡାକିଦେଲେ ପୌରୁଷଚିତ୍ତ ଗର୍ବରେ ଶୁଆଟିକୁ ଚାହିଁ ହସି ଦେଉଥିଲା ଲୋକଟି।

ମଣ୍ଟୁକୁ 'ମଟୁ' ବୋଲି ଡାକିଦେଲେ- ମଣ୍ଟୁ ସଂଶୋଧନ କରି ଡାକିବାକୁ କୌତୁହଳୀ ଧମକ ଦେଉଥିଲା।

'ପପୁନ' ବୋଲି ଡାକିଲେ– ପପୁନ ଗେହ୍ଲାସ୍ୱରରେ ଅଭିଯୋଗ ବାଢୁଥିଲା– 'ମିଟୁ। ମୋ ଭଲ ନାଁରେ ଡାକୁନୁ କାହିଁକି ଯେ'?

ସେହି ପରିବାରରେ ସମସ୍ତଙ୍କ ନାଁ ଶିଖାଇ କେବଳ ନିଜ ନାଁଟି ଶିଖାଇ ଦେଇ ନଥିଲା ଝିଅଟି। ସେଥିପାଇଁ ଇଚ୍ଛାକରି ମଧ୍ୟ ଶୁଆଟି ଝିଅଟିକୁ ଡାକିପାରେନା। ନ ଡ଼ାକି ପାରିବାର ଅସହାୟତାରେ ଶୁଆଟି ଛଟପଟ ହୁଏ। କୂଅପାଖକୁ ତାକୁ ଗାଧୋଇ ନେଲାବେଳେ, ସୋଲା ଖାଇବାକୁ ଦେଲାବେଳେ ଅନେକ ସମୟଧରି ତାକୁ ଚାହିଁ ରହିଥିବାବେଳେ ଝିଅଟିକୁ ଶୁଆଟି ନିଜ ଭାଷାରେ ପଚାରେ– 'ହେ! ବତାଇ ଦିଅନା ତୁମ ନା। ଜାଣ ତୁମ ନାଁ ନ ଡ଼ାକିପାରେ ବୋଲି କେତେ କଷ୍ଟପାଏ ମୁଁ। ସତରେ ତମେ ଶିଖାଇ ଦେଉଥିବା ଶବ୍ଦକୁ ମୁଁ ଶିଖିପାରେ। କହି ଦିଅନା ତୁମ ନାଁ।

କିଛି ବୁଝିପାରେନା ଝିଅଟି । ଡବଡବ କରି ଚାହିଁଥାଏ କେବଳ ।

ଏବେ ବେଶି ନିଃସଙ୍ଗ ଲାଗିଲାଣି । ବିରକ୍ତିକର ସମୟର ବୋଝବୋହି ଏକପ୍ରକାର ଅତିଷ୍ଠ ହୋଇ ପଡ଼ିଲାଣି ଶୁଆଟି । ଘରଟାରେ ପାଞ୍ଚଟା ମଣିଷ ଯେପରି ଭିନ୍ନଭିନ୍ନ ପାଞ୍ଚଟି ସରଳରେଖା । ନିଶବ୍‌ଦରେ ବିତେଇ ଚାଲିଛନ୍ତି ସେମାନଙ୍କ ବାଧ୍ୟଜୀବନକୁ । ଆଗପରି ଆଉ ସକାଳ ହେଲାକ୍ଷଣି ହକର ଆସି ଝର୍କାରେ ଗଳେଇ ଦେଇ ଯାଉନାହିଁ ଖବର କାଗଜଟିଏ । କ୍ଷୀରବାଲାର ବନ୍ଦଦର୍ଜା ଖୋଲିବାକୁ କଲିଙ୍ଗବେଲର ଶବ୍‌ଦ ଶୁଭୁନି । ଆସିବା ମଧ୍ୟ ବନ୍ଦ ହୋଇଯାଇଛି ବନ୍ଧୁ ବାନ୍ଧବ, ଅଫିସମେଂଟ୍, ସାଙ୍ଗସାଥୀ, ପଡ଼ୋଶୀ । ଲୋକଟି ଅବସର ନେବାର ବର୍ଷ ପାଖେଇ ଆସୁଛି । ଘରର ଜଂଜାଳ ବଢ଼ୁଛି । ବଢ଼ି ଯାଉଛି ମଂଟୁର ଔଦ୍ଧତ୍ୟ ।

ଦିନେ ରାତିରେ ହଠାତ୍ ପାଟିତୁଣ୍ଡରେ ଶୁଆଟିର ନିଦ ଭାଙ୍ଗିଯାଏ । ମଂଟୁର ଚିତ୍‌କାର ଶୁଭୁଥାଏ । ଶୁଭୁଥାଏ ବାପାଙ୍କର ଚାପାଚାପା କଥା । ଆସ୍ତେ ଭାସି ଆସୁଥାଏ ଝିଅଟିର କାନ୍ଦଣା । କାହାକୁ ଡାକିପାରେନା ଶୁଆଟି । ଚୁପ୍‌ଚାପ୍ କାନ ଡ଼େରେ । କିଛି ବୁଝିପାରେ । ବୁଝିପାରେନା ଅନେକ କିଛି ।

ମଂଟୁ ଚିତ୍‌କାର କରି କହୁଥାଏ– 'ହଁ ଭଲ ହୋଇଛି ମୁଁ ମଦ ଖାଉଛି, ଯୁଆ ଖେଳୁଛି । ମୋ ସାର୍ଟପେଣ୍ଟ ଜଳଖିଆ ବହିପତ୍ର ପାଇଁ ତମେ କେତେ ପଇସା ଦେଉଛ ?' ବାପାଙ୍କ ଚଡ଼ା ଉତ୍ତର ଶୁଭୁଛି- 'ତୁମ ବୟସର ପିଲା ଚାକିରି କଲେଣି ଘରର ଦାୟିତ୍ୱ ବୁଝିଲେଣି । ତୁମେ କ'ଣ ଜାଣନା ବର୍ଷେ ରହିଲା ମୋ ରିଟାୟାର୍ଡ଼ମେଂଟ୍ । ତା'ପରେ କିପରି ଚଳିବ ଏ ଘର । କିପରି ତୁମ ବଡ଼ ଭଉଣୀ ବାହାଘର ହେବ, ଏକଥା ଦିନେ ଚିନ୍ତା କରୁଛ ?'

ମଂଟୁର ଚଡ଼ା ଗଳାର ଉତ୍ତର ଶୁଭୁଥାଏ । ଆପଣ କ'ଣ ଜାଣନ୍ତି ନାହିଁ ଘରଟେ ତିଆରି କରିବା ସହଜ । ଘର ଚଳେଇବା କଷ୍ଟ । ଯେଉଁ ଘରଟାକୁ ଆପଣ ଏତେଦିନ ଧରି ଚଳେଇ ଆସିଛନ୍ତି; ଅନ୍ୟଉପରେ ଭରସା ରଖିପାରୁଛଂତି କିପରି ?' ଝିଅଟି ପ୍ରତିବାଦ କଲା– 'ଏଟା କ'ଣ ତୋ ଘର ନୁହେଁ ମଂଟୁ ?' ମଂଟୁର ଚିତ୍‌କାର ଶୁଭେ– 'ମଝିରେ ତୁ କିଆଁ ଓକିଲାତି କରୁ । ତୁ ତ ପାଠପଢ଼ିଛୁ ଚାକିରି କରୁନୁ । ତୋ ବାହାଘର ବ୍ୟବସ୍ଥା ତୁ ନିଜେ କରୁନୁ, ତୋରି ପାଇଁତ ମୋ ସ୍ୱାଧୀନତା ଟିକକ ଏମାନେ ଛଡ଼େଇ ନେଉଛନ୍ତି ।

ବୋଉର କ୍ଷୀଣ ପ୍ରତିବାଦ, ବାପାଙ୍କ ଅପମାନ, ଝିଅଟିର କାଂଦ ଭିତରେ ଶୁଭେ କାଚଗ୍ଲାସ ଭାଙ୍ଗିବାର, ବାସନ ଫିଙ୍ଗାଯିବାର ଶବ୍‌ଦ, ସାଇକେଲଧରି ମଂଟୁ ବାହାରିଯାଏ । କିଛି ସମୟ ପରେ ଚୁପ୍‌ଚାପ୍ । ମାତ୍ର ନିଶ୍ଚିନ୍ତରେ ଶୁଆଟି ଶୋଇ ପାରେନା । ଭାବୁଥାଏ ଏଇଆ କ'ଣ ମଣିଷଙ୍କ ଜୀବନ ? ସମସ୍ତେ ତା'ରି ପରି ଗୋଟେ ଅବରୁଦ୍ଧ ପଞ୍ଜୁରିରେ

ବନ୍ଦୀ। କେହି ବୁଝିପାରନ୍ତିନି କାହାର ଅସହାୟତା। କେହି କାହାକୁ କହି ପାରନ୍ତିନି ନିଜର ଦୁଃଖ। ଅସହାୟ ଓ ଦୁଃଖ ଭିତରେ ପ୍ରତିଟି ମଣିଷ କ'ଣ ଏମିତି ନିର୍ବାସିତ?

ଶୁଆଟିକୁ ଆଉ ଏ ପରିବାର ଭଲ ଲାଗୁନି। ଉଡ଼ି ଚାଲିଯିବାର ଆଗ୍ରହଟି ଶୁଆକୁ ପ୍ରତି ମୁହୂର୍ତ୍ତରେ ବ୍ୟସ୍ତ କରୁଛି। ମୁକ୍ତି ପାଇବାର ଆନନ୍ଦ ତା' ଭିତରେ ଡେଣା ମେଲେ। ସେ ମୁକ୍ତି ପାଇଯା'ନ୍ତା। ଏମିତି ଗୋଟେ ନିର୍ବାସନ, ଯେଉଁଠି ମୁକ୍ତ ମଣିଷମାନେ ବନ୍ଦୀ ସେଠି ବନ୍ଦୀ ଶୁଆର ଜୀବନ କେତେ ହାହାକାରମୟ? ଅଥଚ ଝିଅଟିର ଲୁହ ଢଳଢଳ ଆଖି ଦୁଇଟା ଭୁଲେଇ ଦିଏ ସବୁ। ଝିଅଟି ତା' ମନର କଥା ଶୁଣେଇବାକୁ ଯେପରି ବାଛି ନେଇଛି ଶୁଆଟିକୁ। କେବେ ଶୂନ୍‌ଶାନ୍ ଦ୍ୱିପ୍ରହରରେ ପୁଣି କେବେ ନିସ୍ତବ୍ଧ ରାତିରେ ଝିଅଟି ଶୁଆଟିକୁ ନିଦରୁ ଉଠାଇ ଫିସ୍ ଫିସ୍ ହୋଇ କୁହେ– ମିଟୁ, ତୋ ଭଳି ମୁଁ ଏ ଘରେ ବଂନ୍ଦିନୀ। ଭାରି କଷ୍ଟ ଏ ଜୀବନ।

ଦିନେ ଦିନେ ଝିଅଟି କହେ– ମିଟୁ! ସତରେ ତୋତେ ଭଲ ଲାଗୁଛି ଏ ପଞ୍ଜୁରି? ତୋ'ର କ'ଣ ଶାରୀଟିଏ ଲୋଡ଼ା ନାହିଁ କିରେ ମିଟୁ?

କିଛି ଅର୍ଥ ପାଏନା ଶୁଆଟି। କେବଳ ମିଟିମିଟି ଚାହିଁଥାଏ। ଏବେ ଝିଅଟି ଏକପ୍ରକାର ପାଗଳୀ ହୋଇଯାଇଛି। ଗୀତ ଗାଉଛି ତ ଗାଉଛି। ଭାରି ସୁନ୍ଦର ସେ ଗୀତର ସ୍ୱର। ଗପୁଛି ତ ଗପୁଛି। ସତ କାହାଣୀ ପରି ସେ ଗପ। ନିଜେ ଯେପରି ନିଜସହ କଥାବାର୍ତ୍ତା କରୁଛି। ଶୁଆଟି ଭାରି ବ୍ୟସ୍ତ ହୋଇପଡୁଛି। ଗୋଟେ ଅଦ୍‌ଭୁତ ନିଃସଙ୍ଗତାରେ ଛଟପଟ ହେଉଛି ଶୁଆଟି। କାରଣ ଝିଅଟି ଆଉ ପଞ୍ଜୁରୀ ପାଖକୁ ଆସୁନି। ପପୁନ୍ ତାକୁ ଖାଇବାକୁ ଦେଉଛି। ଅଯତ୍ନରେ ଚୁପ୍‌ଚାପ୍ ବସିଥିବା ଶୁଆର ନିଜପାଇଁ ଦୁଃଖ ନାହିଁ ଦୁଃଖ କେବଳ ଝିଅଟିର ଅନୁପସ୍ଥିତି ପାଇଁ। ଏହିଘରେ ସେ ଝିଅଟି ଅଛି ଅଥଚ କାହିଁକି ତା' ପାଖକୁ ଆସୁନାହିଁ। କାହିଁକି ଥରେ ମାତ୍ର ଚାହିଁ ଦେଇ ଯାଉନି? କାହିଁକି ତା' ଆଖିରେ ଭରି ଦେଉନି ମିଠା ସ୍ୱପ୍ନ। କାହିଁକି? ତା କଣ୍ଠରେ ଥୋଇ ଦେଉନି ନୂଆ ଶବ୍ଦ? ଶୁଆଟି ପାଇଁ ଝିଅଟି ପାଖରେ କ'ଣ ସରିଯାଇଛି ସବୁ ଆଂତରିକତା, ସବୁ ସ୍ୱପ୍ନ, ସବୁ ଶବ୍ଦାବଳି? ଶୁଆଟି ଅଭିମାନରେ କାନ୍ଦ କାନ୍ଦ ହୋଇଗଲା।

ଦିନେ ଦ୍ୱିପ୍ରହରରେ ଅସମ୍ଭବ ଭାବେ ଘର ଭିତରଟା ଶୂନ୍‌ଶାନ୍। ପପୁନ୍ ସ୍କୁଲରେ ଥାଏ। ମଣ୍ଟୁ ସାଇକେଲ ଧରି ବାହାରି ଯାଇଥାଏ। ବାପା ଅଫିସ୍‌ରେ। ମା'ଝିଅ ଚୁପ୍‌ଚାପ୍ ଘର ଭିତରେ। ଶୁଆଟି ପଞ୍ଜୁରି ଭିତରେ ଘୁମଉ ଥାଏ। ଖଡ୍ କରି ଶବ୍ଦଟେ ହେଲେ ହଠାତ୍ ନିଦଭାଙ୍ଗିଯାଏ ତ ଚିତ୍‌କାର କରି ତା' ଉପସ୍ଥିତି ଜଣାଇଦିଏ। ସେଦିନ ଖରାବେଳେ ଶୁଆଟି ଗୋଟେ ଉଦାସ ଉଦାସ ଚାହାଣିରେ ନିଶୂନ ପିଚୁରାସ୍ତାକୁ ଅନେଇ

ଥିଲା । ପିଚୁରାସ୍ତାରେ ଖରା ଝଲମଲ୍ ହେଉଥାଏ । ଆଶ୍ଚର୍ଯ୍ୟ ହୋଇଗଲା ଶୁଆଟି । ଆଶ୍ଚର୍ଯ୍ୟରୁ ଆନନ୍ଦରେ ପୂରିଉଠିଲା ତା ଶୂନ୍ୟ ମନ । ଅନେକ ଦିନ ପରେ ତା' ସାମ୍ନାରେ ଝିଅଟି ଠିଆ ହୋଇଥିଲା ।

ବିଚିତ୍ର ଘଟଣାଟିଏ ଘଟିଲା । ଝିଅଟି ଖୋଲିଦେଲା ପଞ୍ଜୁରିର ଦର୍ଜା । ଶୁଆଟି ଏକଲୟରେ ଝିଅଟିର ଆଖିକୁ ଚାହିଁଥାଏ । ଏତେ ସୁନ୍ଦର ଢଳ ଢଳ ଆଖି ସେ କେବେ ଦେଖିନଥିଲା । ଝିଅଟି ଫିସ୍ ଫିସ୍ ହୋଇ କହିଲା–

– ମିଟୁ । ତୁ ତୋ' ମନଇଚ୍ଛା ଯୁଆଡ଼େ ଯିବୁ ଚାଲିଯା' । ମୁଁ ଏ ଘରର ପଞ୍ଜୁରିରୁ ମୁକ୍ତ ହୋଇ ଯେଉଁଠିକି ସବୁଦିନ ପାଇଁ ଚାଲିଯାଉଛି ତୁ କାହିଁକି ସାରା ଜୀବନ ଏ ପଞ୍ଜୁରିରେ ବନ୍ଦୀ ହୋଇଥିବୁରେ । ଯା' ଚାଲି ଯା' ।

ଶେଷବେଳକୁ ଝିଅଟି କିଛି କହିପାରିଲାନି । ସରି ଆସୁଥିଲା ଯେପରି ସବୁ ଭାଷା । ରୁଦ୍ଧ ହୋଇ ଆସୁଥିଲା ତା' କଣ୍ଠସ୍ୱର ।

ଶୁଆଟି ଦର୍ଜାଖୋଲା ପଞ୍ଜୁରିରେ ବସିଥାଏ । ଝିଅଟି କେତେବେଳୁ ଘର ଭିତରକୁ ଯାଇ ସାରିଥାଏ ମୁକୁଳା ଦର୍ଜାକୁ ଚାହିଁଲା ଶୁଆଟି– ପଳେଇ ଯିବାର ରାସ୍ତା ।

ଅଥଚ କୁଆଡ଼େ ଯିବେ ଯେ, ତାର ଦୁଇଟା ଲମ୍ବା ଡ଼େଣା ଅଛି ଅଥଚ ଉଡ଼ିବାର ଅଭ୍ୟାସ ନାହିଁ । ସାମ୍ନାରେ ଏତେ ବଡ଼ ଖୋଲା ପୃଥିବୀଟେ ଅଛି– ଅଥଚ ତାର ନିଜର ଲକ୍ଷ୍ୟ ନାହିଁ । ଜଙ୍ଗଲ ଅଛି ତାର ଘରଟିଏ ନାହିଁ । ଏତେ ପକ୍ଷୀ ଅଛନ୍ତି ତା' ମା' ନାହିଁ । ବନ୍ଧୁ ବାନ୍ଧବ ନାହାନ୍ତି । ଗୃହହୀନ, ବନ୍ଧୁହୀନ ବଞ୍ଚିବା ପାଇଁ ଉଦ୍ଦେଶ୍ୟ ହୀନ ଜୀବନ କିପରି ସେ ବରିନେଇ ପାରିବ ? ଏମିତି ଦ୍ୱନ୍ଦ୍ୱରେ ସେ ଗୁମ୍ ମାରି ବସିଥାଏ । ହଠାତ୍ ଘର ଭିତରୁ ବୋଉର ଚିତ୍କାର ଶୁଭିଲା । ଚିତ୍କାର ପରେ ଲହରେଇ ଲହରେଇ ଶୁଭିଲା କାନ୍ଦଣା । ଯେପରି କେଉଁଠି କାହାର ହୃଦୟ ମୁଠାଏ ତାସଘର ପରି ଭାଙ୍ଗି ପଡୁଛି– ଏପରି ହୃଦୟବିଦାରକ କାନ୍ଦଣା କେବେ ଶୁଣି ନଥିଲା ଶୁଆଟି । ବୋଉର ମନ ପ୍ରବଳ ବିଷାଦ ସ୍ରୋତରେ ଯେପରି ଲୀନ ହୋଇ ଯାଉଛି । ଅଥଚ ଝିଅଟିର ପାଟି ତୁଣ୍ଡ ଶୁଭୁନି । କ'ଣ ହେଲା କାହାର ? ପଡ଼ୋଶୀ ସ୍ତ୍ରୀ ଲୋକମାନେ, ପିଲାମାନେ ଆସୁଛନ୍ତି ଘର ଭିତରକୁ ଯାଉଛନ୍ତି । ଘରୁ ବାହାରି ଗଲାବେଳେ ସମସ୍ତଙ୍କ ଆଖିରେ ଲୁହ । ସମସ୍ତେ ଗୋଟେ ଅପ୍ରତ୍ୟାଶିତ ଦୁର୍ଘଟଣା ଦେଖି ଯେପରି ମୂକ ହୋଇ ଯାଇଛନ୍ତି । ଶୁଆଟି ବୁଝି ପାରିଲାନି ଏହାର ଅର୍ଥ । ଶୁଆଟି ଚିତ୍କାର କଲା– ମିଟୁ, ପପୁନ, ବାପା, ବୋଉ । ଚିତ୍କାର କଲା– କହ ହରେ କୃଷ୍ଣ ହରେ ରାମ । ଚିତ୍କାର କଲା । ସମସ୍ତଙ୍କ ନାଁ ଧରି ଡାକିଲା ଅଥଚ ତାକୁ କିଏ ବୁଝେଇବାକୁ ଆସିଲେନି– ଘଟଣା କ'ଣ ? କେହି କୌତୁହଳରେ ଚାହିଁଲେନି ରାବୁଥିବା ଶୁଆଟିକୁ । ମନେ ପଡ଼ିଲା । କିଛି ସମୟ

ଆଗରୁ ଝିଅଟି କହି ଯାଇଥିଲା ସେ ଘରର ପଞ୍ଜୁରିରୁ ମୁକ୍ତ ହୋଇ ସବୁଦିନ ପାଇଁ ଚାଲି ଯାଉଛି । ଶୁଆଟି ଭାବିଲା ତେବେ କ'ଣ ଚାଲିଯାଇଛି ଝିଅଟି । ଅଥଚ କେଉଁ ବାଟେ ଗଲା ଯେ- ସେ'ତ ଦର୍ଜା ସାମ୍ନାରେ ଅଛି । ସେତିକିବେଳୁ ଘର ଭିତରକୁ ଯାଇଛି ଯେ ଯାଇଛି– କୁଆଡ଼େ ଗଲା ସେ ଝିଅ ? ପୁଣି ଭାବିଲା– ଗୋଟେ ମଣିଷ ତା' ପଞ୍ଜୁରିରୁ ମୁକ୍ତ ହୋଇଗଲାପରେ ସବୁ ମଣିଷ କ'ଣ ଏମିତି କାନ୍ଦନ୍ତି ? ଅନ୍ୟକୁ ତ ଝିଅଟି କେବେ କନ୍ଦାଇଛି ବୋଲି ମନେ ପଡୁନି ଅଥଚ ଆଜି କାହିଁକି ସେ ସମସ୍ତଙ୍କୁ କନ୍ଦାଉଛି ଯେ !

ଶୁଆଟି ନିଜେ କହି ନିଜେ ଉତ୍ତର ଦେଇ ଆତ୍ମସନ୍ତୋଷ ପାଇ ପାରିଲାନି । ଝିଅଟିକୁ ଥରେ ମାତ୍ର ଦେଖିବାର ପ୍ରଲୋଭନରେ ସେ ଯେପରି ଅନ୍ଧ ହୋଇଗଲା । ସାମ୍ନାରେ ମୁକୁଳା ଦର୍ଜା । ହଠାତ୍ ଦର୍ଜା ସାମ୍ନାକୁ ଆସିଲା । ଆସିଲା ଡେଇଁ ପଡ଼ିଲା ତଳକୁ । ତଳକୁ ଡେଇଁ ପଡ଼ିବା ମୁହୂର୍ତ୍ତରେ ତାକୁ ମନେ ହେଲା ସେ ହାଲ୍‌କା ସୋଲା ଚୋପା ପରି ଖୁବ୍ ସହଜରେ ତଳକୁ ଉଡ଼ି ଆସିଛି ବାରଣ୍ଡାରେ ବସିଥିବା ଶୁଆଟି ଚାରିଆଡ଼କୁ ଚାହିଁଲା । ତା' ଚାରିପାଖେ ପଞ୍ଜୁରିର ତାର ବାଡ଼ ନାହିଁ, ସେ ମୁକ୍ତ– ଏ ଅଦ୍‌ଭୂତ ଆନନ୍ଦରେ ଫୁଲିଉଠିଲା ତା' ସାବ୍‌ଜା ଲୋମ । ଛଳ ଛଳ ହୋଇଉଠିଲା ତା' ଚମତ୍କାର ଲାଲ୍ ଗୋଲ୍ ଆଖି । ସେତେବେଳକୁ ସେ ଭୁଲିଯାଇଛି ସବୁ । ସବୁ ଅତୀତ ଭବିଷ୍ୟତ ଗୋଟିଏ ବିନ୍ଦୁରେ ମିଳିଯାଇଛନ୍ତି । ସେଟା ତା' ବର୍ତ୍ତମାନ । ସେଟା ତା' ଉଡ଼ିଯିବାର ମୁହୂର୍ତ୍ତ । ସାମ୍ନାରେ ନୀଳ ଆକାଶ । ବୋଉ କାନ୍ଦୁଛି । ସିରି ସିରି ଉଷୁମ ପବନ ଝିଅଟି ବର୍ତ୍ତମାନ କେଉଁଠି ? ହେଉ ପଂଝେ, ଚଢ଼େଇ ସଜନା ଗଛରୁ ଫୁର୍‌କରି ଉଡ଼ିଗଲେ । ଶୁଆଟି ସେ ଅପୂର୍ବ ଦୃଶ୍ୟରେ ତନ୍ମୟ ହୋଇଗଲା, ମେଲା ହୋଇ ଆସିଲା ଶୁଆଟିର ଅନେକ ଦିନରୁ ଥିବା ଡେଣା । ଡେଣା ଫିଟେଇ ଉପରକୁ ଉଡ଼ିବା ପାଇଁ ଉଡ଼ିବା ହେଉଛି, କେଉଁଠି ଥିଲା ଧାଇଁ ଆସିଲା ଧୋବ ଫର ଫର ଜଳନ୍ତା ଆଖି ଦୁଇଟାକୁ ଧରି ଧାଇଁ ଆସିଲା ପୁସି । ଧାଇଁ ଆସିଲା ଗୋଟେ ପାଶବିକ ଲାଳସାରେ । ଧାଇଁ ଆସି ବନ୍ଦକରିଦେଲା ଶୁଆଟିର ମୁକ୍ତିର ଦର୍ଜା । ବନ୍ଦ କରିଦେଲା ।



ନିତ୍ୟାନନ୍ଦ ଶତପଥୀ

# ଶ୍ୱାନ ଉପାଖ୍ୟାନ

ସେମାନେ କ'ଣ ଦୁଇ ବଂଧୁ, ପ୍ରେମିକ ପ୍ରେମିକା ନା ପତିପତ୍ନୀ? ମୁଁ ସବୁଦିନ ପ୍ରାତଃଭ୍ରମଣରେ ଗଲାବେଳେ ସେ ଦୁହିଁଙ୍କୁ ଦେଖେ। ଅନେକ ସମୟରେ ପାଖାପାଖି ଲଗାଲଗି ହୋଇ ଶୋଇଥାନ୍ତି, କେତେବେଳେ ପରସ୍ପର ଠାରୁ କିଛି ବ୍ୟବଧାନରେ। ଜଣକ ଆଖିରେ ସବୁବେଳେ ବିଷଣ୍ଣତା- ସେ ପୁରୁଷ; ଆରଜଣକ ଆଖିରେ ସବୁବେଳେ ଚପଳତା- ସେ ନାରୀ। ମୁଁ ମୋ ବାଡ଼ି ଦେଖେଇଲେ ବି ସେମାନେ ଘୁଞ୍ଚି ଯାଆନ୍ତିନି- ବୋଧହୁଏ ଜାଣନ୍ତି ଏଇ ବାଟ ଦେଇ ସବୁଦିନେ ବୁଲିବାକୁ ଯାଉଥିବା ବୁଢ଼ାଲୋକଟି କେବେ ବି ବାଡ଼ିରେ ପାହାରେ ପକାଇବନି। ଥରେ ଅବଶ୍ୟ ପାହାରେ ଦେଇଥିଲି। କାରଣ ତା' ଉପରେ ମୋର କ୍ରୋଧ ଜମାଟ ବାନ୍ଧିଥିଲା। ସେ ବିନା କାରଣରେ ଏକ ସୁନ୍ଦର ଭିଣାତୁଳା ପରି ଧଳା ଲୋମଶ ବିଦେଶୀ ବଂଶଜ କୁକୁର ଛୁଆଟିକୁ କାମୁଡ଼ି ଦରମରା କରି ଦେଉଥିଲା। ପ୍ରାଣ ବିକଳରେ ତା' ଦାନ୍ତର ଜାବରୁ ଆତ୍ମରକ୍ଷା କରି ଛୁଆଟି ଯେତେ ଯେତେ ଆଗ ରାସ୍ତାରେ ଦଉଡୁଥିଲା ଛଉକା କୁକୁରଟି ତାକୁ ପୁନଶ୍ଚ ଆକ୍ରମଣ କରିବାକୁ ତା' ପଛେ ପଛେ ଗୋଡ଼ାଉଥିଲା। ମୁଁ ନଥିଲେ ସୁନ୍ଦର ଲୋମଶ ଧଳା କୁକୁର ଛୁଆଟି ସେଦିନ ମରିଯାଇଥାନ୍ତା। ମୁଁ ପଛେ ପଛେ ଗୋଡ଼େଇ ଛଉକା ମୁହଁରୁ ତାକୁ କେବଳ ରକ୍ଷା କରି ନଥିଲି, ତାକୁ ପଳାଇଯିବାରେ ସାହାଯ୍ୟ କରିଥିଲି। ସେ ଦଉଡ଼ି ଦଉଡ଼ି ଅନ୍ୟ ଏକ ଇଲାକା ଭିତରେ ପ୍ରବେଶ କରି ସାରିଥିଲା, ଯେଉଁ ଇଲାକା କି ଥିଲା ଛଉକା କୁକୁରଟି ପାଇଁ ନିଷିଦ୍ଧାଞ୍ଚଳ। ପ୍ରବେଶମାତ୍ର ଶତ୍ରୁପକ୍ଷ ତାକୁ ଆକ୍ରମଣ କରିବାକୁ ଭିଡ଼ି ଆସିଥାନ୍ତେ। ଲାଂଗୁଳ ଜାକି ସେ ଫେରି ଆସିଥାନ୍ତା ତା' ନିରାପଦ ଅଂଚଳକୁ ଯେଉଁ ଅଂଚଳର ବିସ୍ତୃତି ଥିଲା ଡୁପ୍ଲେକ୍ସ ୨୨ ଠାରୁ ଡୁପ୍ଲେକ୍ସ ୩୦ ପର୍ଯ୍ୟନ୍ତ ପରିବ୍ୟାପ୍ତ।

ସାହୁବାବୁଙ୍କ ଘର ସାମ୍ନାରେ କିମ୍ବା ଡାକ୍ତରବାବୁଙ୍କ ଘର ସାମ୍ନାରେ ଛଉକା ଓ ନାଲି ପ୍ରାୟ ସବୁବେଳେ ଶୋଇଥାନ୍ତି। କିମ୍ବା ବୁଲୁଥାନ୍ତି, କିମ୍ବା ସାହୁବାବୁଙ୍କ ଘରୁ ଦିଆଯାଇଥିବା ରୁଟି ଖାଉଥା'ନ୍ତି। କେହି କାହାଠାରୁ ଅନ୍ତର ହେବା ଅନ୍ତତଃ ମୁଁ ଦେଖିନାହିଁ।

ବେଳେବେଳେ ନାଲି କୌଣସି କାରଣରୁ ଦଉଡ଼ିଲେ ଛଉକା ତା' ପଛେ ପଛେ ଗୋଡ଼େଇ ଗୋଡ଼େଇ ଯାଏ । ମା' କ୍ଲିନିକ୍‌ର ସାନପିଲାକୁ ଧରି କେହି ଜଣେ ଫାଟକ ଆରପାଖରୁ ପିଲାଟି ହାତରେ ରୋଟି ଟୁକୁରା ଧରାଇ ଦିଅନ୍ତି । କଳାଛଉକା ଡେଇଁ ପଡ଼ି ଆଗ ତା' ପାଟିରେ ଟୁକୁଡ଼ାକୁ ଧରିନିଏ । କେବେ ବିସ୍କୁଟ ଟୁକୁରା ମଧ ନାଲିକୁ ମିଳେ । କିଂତୁ ତା'ର ଭାଗ କମ୍ ଥାଏ କାରଣ ସେ ଛଉକା ପରି ବଳୁଆ ନୁହେଁ । ସେ ନାରୀ ମିଳିଲେ ଖୁସି, ନ ମିଳିଲେ ନାହିଁ । ପୁରୁଷ ସବୁ କଥାରେ ବଳିୟାର, ମାଡ଼ିବସି ସବୁ ଖାଇବ, ଟିକେ ବି ତା' ମନରେ ଅନୁକଂପା ନଥିବ ଯଦିଓ ପାଖରେ ସବୁଦିନେ ଅଛି, ପାଖରେ ଶୋଉଛି । ଗୋଟିଏ ରୁଟିର ଟୁକୁଡା ତା' ପାଟିରୁ ନ ସରୁଣୁ କୁନି ପିଲାଟି ପକାଇଥିବା ଟୁକୁଡାକୁ ସେ ପଛରୁ ଝାଙ୍କି ନେବ, ଭାଗ କିନ୍ତୁ ଦେବ ନାହିଁ । ତା'ରି ଭିତରେ କେତୋଟି ଟୁକୁଡ଼ା ଯଦି ନାଲି କୁକୁରଟିର ହାବୁଡ଼ରେ ପଡ଼ିଥିବ ସେଇଥିରେ ତା'ର ତୃପ୍ତି କହିଲେ ନ ସରେ । ପେଟ ପଛେ ସବୁବେଳେ କଂକାଳରେ ମିଶିଯାଉଥିବ, ବୋଧହୁଏ ଭୋକରେ ହେଉଥିବ ଆଉଟୁପାଉଟୁ, କିନ୍ତୁ ଜୋର୍‌କରି ଛଡ଼ାଇ ଆଣିପାରିବନି ତା' ଭାଗ । ଶିଶୁଟି କିନ୍ତୁ ବିଚାର ନିରପେକ୍ଷ । ସେ ସୁବିଧା ଦେଖି ମଝିରେ ମଝିରେ ନାଲି କୁକୁରଟା ପାଖୁ ତା' ପାଟି ପାଖରେ ପଡ଼ିବା ପରି କାଇଦାରେ ବିସ୍କୁଟ ବା ରୁଟିର ଟୁକୁଡ଼ା ଫୋପାଡ଼ି ଦେଇଥିବ । ନାଲିର ସେତେବେଳେ ବାଜିମାତ୍ ।

ସବୁଦିନେ ତଥାପି ସେମାନେ ସାଙ୍ଗପାଙ୍ଗ ହୋଇ ଶୋଇଥିବେ, ଦଉଡୁଥିବେ, ଦରକାର ହେଲେ ଆଉ କେଉଁ ଅନୁପ୍ରବେଶକାରୀ କୁକୁରକୁ ଖୋଜୁଥିବେ । ମୋ' ବାଡ଼ିକୁ ତାଙ୍କର କିଛି ମାତ୍ରାରେ ସେଦିନ ଡର ଆସି ଯାଇଥିବାରୁ ମୋତେ ଦେଖିଲେ ରାସ୍ତା ଉପରୁ ଉଠି ସାହୁବାବୁଙ୍କ ବାଡ଼ି ଭିତରକୁ ପଶିଯିବେ, ନଇଲେ ରାସ୍ତା କଡ଼କୁ ଆଡ଼େଇ ହୋଇଯିବେ । ମାଡ଼ ଖାଇବା ପରଦିନ ଅବଶ୍ୟ କଳାଛଉକା କୁକୁରଟା ମୋତେ ଦେଖି ଭୁକି ଉଠିଥିଲା । ମୁଁ କିନ୍ତୁ ମୋ ବାଡ଼ିକୁ ଧରି ତାକୁ ଅବଜ୍ଞା କରି ଧୀରେ ଚାଲି ଯାଇଥିଲି । ଏମିତି ତିନି ଚାରିଦିନ ପରେ ପୁଣି ଆମ ଭିତରେ ସ୍ୱାଭାବିକ ହୋଇଗଲା ପରିବେଶ । ତା'ର ମୋ ପ୍ରତି ଭୟ ନଥିଲା; କିମ୍ବା ମୋର ଆଉ ତା' ଉପରେ ରାଗ ନଥିଲା । ବଡ଼ ଚୁପ୍‌ଚାପ୍ ସୁଧାର କୁକୁର ଯୋଡ଼ିକ ତାଙ୍କ ଜୀବନଧାରାରେ ମୋତେ ଅନନ୍ୟ ଜଣା ଯାଉଥିଲେ ।

ବର୍ଷାଦିନ ଆସିଲା । ସେମାନେ ଆହୁରି ଆହୁରି ପାଖପାଖ ହୋଇ ଜଡ଼ୀଭୂତ ହେବାକୁ ଚାହୁଁଥିଲେ ବୋଧହୁଏ । କିଂତୁ ଆଖିରେ ପଡ଼ିବା ପରି କୌଣସି ଦୃଶ୍ୟ ମୁଁ ପ୍ରାତଃ ଭ୍ରମଣରେ କେବେ ବି ଦେଖିନାହିଁ । କିଂତୁ ବେଳେବେଳେ ଦ୍ୱିପ୍ରହରରେ ବା ଆସନ୍ନ ସଂଜରେ ଗଲାବେଳେ ଦେଖିଛି ସେମାନେ ଦୁହେଁ ପରସ୍ପରକୁ ଗେଲ କରୁଛନ୍ତି । ଦଉଡ଼ା ଦଉଡ଼ି ଖେଳରେ ମାତିଛନ୍ତି । କିଂତୁ ପ୍ରେମର ପରିଣତି କେବେବି ଦୃଷ୍ଟିଗୋଚର

ହୁଏ ନାହିଁ । ମୁଁ ବୁଝେ ଉଭୟେ ପ୍ରଣୟୀ ଓ ପ୍ରଣୟିନୀ । କିନ୍ତୁ ବର୍ଷାଋତୁର ପ୍ରଭାବ ସେମାନଙ୍କୁ ଏକାକାର ହୋଇଯିବାକୁ କ'ଣ ବାଉଳା କରେ ନାହିଁ ? ମେଳରେ ନଥିବା ସେମାନେ କ'ଣ ଦୁଇଟି ନିଃସଙ୍ଗ ପଦାତିକ ? ଗୋଟିଏ ବର୍ଷାଦିନେ ବି ତଥାପି ବିଷଣ୍ଣ ଆଉ ଅନ୍ୟଟି କରକା ପରି ବିଗଳିତ । କ'ଣ ହୋଇପାରେ ସେମାନଙ୍କ ମନସ୍ତତ୍ତ୍ୱ ? ମୁଁ ଆଦୌ ବୁଝିପାରେନା । ବେଳେବେଳେ ସେମାନଙ୍କ କୌତୁକ ଖେଳ ମୋତେ ରହସ୍ୟାତ୍ମକ ଲାଗେ । ପ୍ରେମିକ ପ୍ରେମିକା ନା ସ୍ୱାମୀ ସ୍ତ୍ରୀ ? ମୋର ଯେପରି ମନେହୁଏ ସେମାନେ ସ୍ୱାମୀ ସ୍ତ୍ରୀ । କାରଣ କେହି କାହା ପାଖରୁ ଅନ୍ତର ହେବେ ନାହିଁ । ନିଜ ଇଲାକାକୁ ଭୁଲ୍‌ରେ ଆଉ କେଉଁ କୁକୁର ଆସିଗଲେ ତାକୁ କାମୁଡ଼ି ଗୋଡ଼େଇବେ । ଆଗେ ଆଗେ ଦଉଡୁଥିବ ଛଉକା ଓ ପଛେ ପଛେ ତାର ପତ୍ନୀ ନାଲିପାନ ବିବି । ସେମାନେ ମୋତେ ସେଇ କାଳିପାନ ରାଜା ଓ ନାଲିପାନ ରାଣୀ ପରି ଲାଗନ୍ତି । ତାଙ୍କ ବିନା ଅନୁମତିରେ ପୁରୁଷ ହେଉ ବା ନାରୀ ହେଉ ଆଉ ଗୋଟାଏ ଚତୁଷ୍ପଦୀ ପଶିଆସିବା ସେମାନେ କିପରି ସେ କଥା ସହି ପାରିବେ ? ମୁଁ ଭାବେ ଏ ଅନୁପ୍ରବେଶକାରୀ ପ୍ରତି ମାଈ କୁକୁରଟିର ଏତେ ଧ୍ୟାନ ନାହିଁ ଯେତେ ଅଛି କଳାଛଉକା ପୁରୁଷ କୁକୁରଟିର । ଜୋର୍ ଆଉ ବା ନ ଥାଉ ସେ ଧପାଡ଼ି ଯିବ । ତା'ର ଖାମିଦମାନେ ତାର ବଳ । ସେମାନେ ତାକୁ ଓ ନାଲିକୁ ଖାଇବାକୁ ଦିଅନ୍ତି, ଏଠି ତୃତୀୟର ସ୍ଥାନ ନାହିଁ ।

ଏମିତି ଏମିତି ଜୁଲାଇ ଯାଇ ଅଗଷ୍ଟ ମାସ ଅଧାଅଧି ହେଲା । ଆକାଶରେ କଳା ହାଣ୍ଡିଆ ମେଘ ପହ୍ନେଇ ଉଠିଲେ ଏ ଅଂଚଳର 'ବାଳୁତ ଓ ବୃଦ୍ଧ ବୃଷଭମାନେ ଅସମ୍ଭାଳ ହୋଇ ଉଠିବାର ଦେଖାଯାଏ; କିଂତୁ ସେ ଦୁହିଁଙ୍କ ଭିତରେ ଚାଞ୍ଚଲ୍ୟ ତଥାପି କାହିଁକି ଆସେ ନାହିଁ ? ହୁଏତ ରାତିର ନିର୍ଜନ ନିବିଡ଼ତା ଭିତରେ ଆସୁଥିବ । ସେମାନେ ଏକାନ୍ତରେ ପରସ୍ପରକୁ ନିବିଡ଼ଭାବେ ଉପଭୋଗ କରୁଥିବେ । ଦିବାଭାଗରେ କେବଳ କ୍ଲାନ୍ତ ଓ ସୁପ୍ତି । କିନ୍ତୁ ନାଲିକୁକୁରଟିର ଆବଭାବ ଦେଖି ମୋ ମନରେ ସନ୍ଦେହ ଆସେ, ବୋଧହୁଏ ସେମାନେ ଏବେବି ବିବାହ ବଂଧନରେ ବାନ୍ଧି ହୋଇ ନାହାନ୍ତି । ତଥାପି ସେମାନେ ସିନେମାର ହିରୋ ହିରୋଇନ୍‌ମାନଙ୍କ ପରି ବାକ୍‌ଦତ୍ତ ଓ ବାକ୍‌ଦତ୍ତା । କାହିଁ ମାଈ କୁକୁରଟିର ଦେହରେ ରତିତୃପ୍ତିର କୌଣସି ଆଭାସ ଦେଖାଯାଏ ନାହିଁ । ସେମାନେ ସେମିତି ପାଖକୁ ପାଖ ଲାଗି ସକାଳଟାରେ ଶୋଇଥାନ୍ତି । ଆଗ ରାସ୍ତାସାରା ଦଳଦଳ କୁକୁରଙ୍କ ଶବ୍ଦାୟିତ ଶୋଭାଯାତ୍ରା ଲାଗି ରହିଥାଏ । ଏମାନେ ସେପରି କୌଣସି ମେଳରେ ନଥା'ନ୍ତି । ସେମିତି ବିଷଣ୍ଣ, ସେମିତି ଏକାକୀ, ସ୍ଥିତିବାଦୀ ଦୁଇଟି ଚରିତ୍ର ପରି ମୋତେ ଭାବିବାକୁ ବେଶ୍ ଉପାଦାନ ଯୋଗାନ୍ତି ।

କିଂତୁ ଦିନେ ଚାରିଟି ବଳିୟାର ପୁରୁଷ କୁକୁର ହଠାତ୍ ସକାଳୁ ସକାଳୁ ଏ ଇଲାକା ଭିତରକୁ ପସି ଆଶିଲେ । ସେମାନେ ଦିଗ୍‌ବିଜୟୀ ବୀର ପରି ମନେ

ହେଉଥିଲେ । ଏକବାରେ ଉନ୍ମତ୍ତ, ଉଚ୍ଛନ୍ନ ଓ ଦୁର୍ବିନୀତ । ଯେଉଁ ଗଛ ଦେଖିଲେ ସେଥିରେ ଗୋଡ଼ଟେକି ପରିସ୍ରା କରି ବସିଲେ । ନାଚିଲେ, କୁଦିଲେ, ମାଈ କୁକୁରଟିକୁ ସେମାନଙ୍କ ଭାଷାରେ ସୁତୁରେଇ ନାନାପ୍ରକାର ଇଂଗିତ ଦେଲେ, ଆହ୍ୱାନ କଲେ । କଳାଛଉକାଟି ପ୍ରଥମେ ପ୍ରତିଶୋଧ ନେବାକୁ ଭୁକାଭୁକି କରି ତାର ପ୍ରତିବାଦ ଜଣାଇଲା । ସେମାନେ ତା' ପ୍ରତିବାଦକୁ ଖାତିର କଲେନି । ଖୁବ୍‌ଶୀଘ୍ର ସେମାନେ ମାଈ ନାଲି କୁକୁରଟିକୁ ତାଙ୍କ ଦଳ ଭିତରେ ସାମିଲ କରିଦେଲେ, ତା'ର ପ୍ରତିବାଦ ନଥିଲା, ବରଂ ଅନୁଚ୍ଚ ସ୍ୱରରେ ମାଈକୁକୁରଟି ସମ୍ମତିର ପରିଭାଷା ପ୍ରକାଶ କରୁଥିଲା । ସେମାନେ ତା'ର ସର୍ବାଙ୍ଗକୁ ଶୁଙ୍ଘି ପକେଇଲେ । ସେମାନଙ୍କ ଆଦରରେ ମାଈ ନାଲି କୁକୁରଟି ଦ୍ରବୀଭୂତ ହୋଇଯାଉଥିଲା । ବିଷଣ୍ଣ ଉଦାସୀନତାରୁ ପାଉଥିଲା ମୁକ୍ତିର ରାହା । ଛଉକା ପୁରୁଷ କୁକୁରଟି ଅନେକ ଭୁକିଲା ଓ ତାକୁ ଏ ଚାରିଜଣରୁ ଜଣେ ଆକ୍ରମଣ କରିବାକୁ ଗୋଡ଼େଇ ଆସିବାରୁ ସାହୁ ଘର ବାଡ଼ି ଭିତରକୁ ପ୍ରାଣ ବିକଳରେ ପଶିଗଲା । ବୋଧହୁଏ ଅନୁଭବ କଲା ଯୁଦ୍ଧ ନୁହେଁ ଆତ୍ମରକ୍ଷା ହିଁ ଏ ପରିସ୍ଥିତିରେ ସବୁଠାରୁ ବିଜ୍ଞତା ହେବ । ତଥାପି ଅନ୍ତରାଳରୁ ସେ ପ୍ରତିବାଦର ଲହରିତ ସ୍ୱର ଶୁଣାଉଥିଲା । ତା'ଭାଷାରେ ସେମାନଙ୍କ ସହିତ ଯିବାକୁ ନାଲି କୁକୁରଟିକୁ ବାରଣ କରୁଥିଲା । କିନ୍ତୁ ନାଲି କୁକୁର ସ୍ୱରରେ ଥିଲା କୋମଳତା ଓ ମୁକ୍ତିର ଇସାରା । ସେ ଅନ୍ୟ ଇଲାକାକୁ ଯିବ । ସେ ଅଂଚଳର ମଣିଷ ଓ ପ୍ରକୃତିକୁ ଦେଖିବ । ସବୁଦିନେ ଗୋଟିଏ ସ୍ଥାନରେ ଓ ଜଣକ ଅଧୀନରେ ପଡ଼ି ରହିବା ତା' ପାଇଁ ସ୍ୱାଦ୍ୟ ମନେ ହେଉ ନଥିଲା । ଏଥର ସେ ଦେହ ଓ ମନରେ ମୁକ୍ତ, ଆଗେଇଯିବ ଯେଉଁ ଆଡ଼କୁ ଦିଗ୍‌ବିଜୟୀମାନେ ତାକୁ ଡାକି ନେବେ । ଚାରିଚାରି ଜଣ ବଳିଷ୍ଠ ଓ ସୁନ୍ଦର କୁକୁରଙ୍କ ହେପାଜତରେ ସେ ବିଗଳିତ ହୋଇ ପଡୁଥିଲା । ସମ୍ଭବତଃ ଦୀର୍ଘକାଳ ଧରି ଏଇ ସୁବର୍ଣ୍ଣ ମୁହୂର୍ତ୍ତଟିଏ ସେ 'ଅପେକ୍ଷା କରିଥିଲା । ଆଜି ତାହା ଆକସ୍ମିକ ଭାବେ ଉପଗତ । ତଥାପି ତା' ମନରେ ଦ୍ୱନ୍ଦ୍ୱଥିଲା । ସେ ବଂଧନ ଛିନ୍ନ କରି ପାରିବ ତ ? ଦେଖିପାରିବ ଛଉକା ଆଖିର ଧାରଧାର ଲୁହଧାର ? ସେ ଯେତିକି ଯେତିକି ସେମାନଙ୍କ କର୍ତନ ମଧ୍ୟରେ ଆଗକୁ ଆଗକୁ ଅଗ୍ରସର ହେଉଥିଲା ସେତିକି ସେତିକି ଛଉକାର ବିକଳ ଆର୍ତ୍ତନାଦ ତାକୁ ଦୋହଲେଇ ଦେଉଥିଲା । ସେ ଭାବୁଥିଲା ମୁକ୍ତିର ଏଇ ଦୁର୍ଲଭ ମୁହୂର୍ତ୍ତରେ ତାକୁ କଠିନ ହେବାକୁ ହେବ । ଜୀବନପାଇଁ ଏ ନୂଆ ସମ୍ଭାବନା, ତାକୁ କ'ଣ ଏଡ଼େଇ ହୁଏ । ନାଲିଟି ସେତେବେଳକୁ ବଳିଷ୍ଠ ଚାରିକୁକୁରଙ୍କ ଗହଣରେ ବେଶ୍ କିଛି ଦୂର ଅଗ୍ରସର ହୋଇ ସାରିଥିଲା । ମୁଁ ପ୍ରଭାତ ଫେରିରେ ଆସିଲାବେଳକୁ ତାକୁ ସେମାନଙ୍କ ମେଳରେ ଆବିଷ୍କାର କରି ବିସ୍ମିତ ହେଉଥିଲି । ସେମାନେ ଆଗେ ଆଗେ ଧୀର ପଦ ପାତରେ

ପ୍ରାୟ ଦଉଡ଼ିଲା ପରି ଚାଲି ଯାଉଥିଲେ । ସମ୍ଭବତଃ ନାଲି କୁକୁରଟି ସେତେବେଳକୁ ଡୁପ୍ଲେକ୍ସ ଏରିଆ ଛାଡ଼ି ଡି.ଏ.ଭି ସ୍କୁଲର ସାଇଡ୍ ଜନଗହଳି ଶୂନ୍ୟରାସ୍ତାରେ ଆଗେଇ ଚାଲିଥାଏ ଓ ତା' ସାଙ୍ଗେ ସାଙ୍ଗେ ତାକୁ ଗେଲ କରି କରି ଚାଲିଥାନ୍ତି ଏ ଚାରି ବୀର ବଳୀୟାର ।

ସେମାନଙ୍କ ଗହଣରେ ନାଲି ମାଈ କୁକୁରଟି କେତେଦିନ ବୋଧହୁଏ, ରହିଯାଇଥିଲା ତାର ସ୍ୱାସ୍ଥ୍ୟରେ ଆସିଥିଲା ବିପୁଳ ପରିବର୍ତ୍ତନ । ନଥିଲା ଉଦାସୀନତା କିମ୍ୱା ଏକାକୀତ୍ୱର ବିଚ୍ଛିନ୍ନତା । ସେ ସନ୍ତର୍ପଣରେ ଡରି ଡରି ଫେରି ଆସିଥିଲା ତାର ପୁରାତନ ଇଲାକାକୁ ତାର ପ୍ରିୟତମ ପାଖକୁ । କିଂତୁ ମୁଁ ଲକ୍ଷ୍ୟକରୁଥିଲି ଛଉକା କୁକୁରଟି ଆଉ ତାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲା । ସେ ବେଶ୍ ବ୍ୟବଧାନ ରକ୍ଷା କରୁଥିଲା; ତାକୁ ଆଉ ଗେଲ କରିବାକୁ ତା' ଦେହଲଗ୍ନା ହୋଇ ଯାଉ ନଥିଲା କିମ୍ୱା ତା' ପଛେ ପଛେ ଗୋଡ଼ଉ ନଥିଲା । ମାଈ ନାଲି କୁକୁରଟି ମା' ହେବାର ଗୌରବରେ ଥିଲା ଉତ୍‌ଫୁଲ୍ଲିତା । ସେ କ୍ଲାନ୍ତି ଅନୁଭବ କରୁଥିଲା ଓ ଏକାକୀ ଶୋଇ ରହୁଥିଲା । ଖଣ୍ଡେ ଦୂରରେ ଶୋଇ ରହୁଥିଲା ଛଉକା ପୁରୁଷ କୁକୁର । କ୍ୱଚିତ୍ ସେମାନେ ବର୍ଷାଦିନ ସତ୍ତ୍ୱେ ଆଉ ଗୋଡ଼ିଆ ଗୋଡ଼ି ଖେଳରେ ମାତୁଥିଲେ । ବୋଧହୁଏ ସେମାନଙ୍କ ମଧ୍ୟରେ କଥାବାର୍ତ୍ତା ନଥିଲା । ନାଲିର ସମର୍ପଣସୂଚକ କୋମଳ ସ୍ୱର ତାକୁ ଆଉ ବିବ୍ରତ କରିବାର ନଥିଲା । ତା' ମନରେ ସେତେବେଳକୁ ଅନେକ ଦ୍ୱନ୍ଦ୍ୱ ଓ ସଂଘର୍ଷ । ସେ ମଧ୍ୟ ଆଉ କେଉଁ ମାଈ କୁକୁର ସାଙ୍ଗରେ ମୁକ୍ତିର ଦିଶା ଆବିଷ୍କାର କରି ଏ ଇଲାକା ଛାଡ଼ି ଚାଲିଯିବ । ମାଈ ନାଲି କୁକୁରଟି ପାଇଁ ତାର ନିଷ୍ଠା ଏବେ ଘୋର ପ୍ରତାରଣାରେ ପରିଣତ ହୋଇଛି । ସେ ସ୍ପଷ୍ଟ ଦେଖିପାରେ ମାଈ କୁକୁରଟିର ପେଟ ଫୁଲି ଉଠୁଛି; ଆଉ ରାସ୍ତାର ଈଷତ୍ ଉଷ୍ମ ପିଚୁ ଉପରେ ସବୁବେଳେ ଶୋଇ ରହିବାକୁ ସେ ଚାହୁଁଚି । କେବେ କେବେ କାହାଘରର ଅଇଁଠା ବା ବାସି ରୁଟିର ପଟେ ଦି'ପଟ ତା' ଭାଗରେ ପଡ଼ି ଯାଉଥିବା ବେଳେ ଛଉକା ସେ ଖାଦ୍ୟକୁ ଝାମ୍ପି ନେବାକୁ ଅଗ୍ରସର ହୁଏନାହିଁ । ସେ ଉଦାସୀନ ଦୂରତାରେ ଯୋଡ଼ିଯାଡ଼ି ହୋଇ ଶୋଇଥାଏ । ତା'ର ବ୍ୟର୍ଥ ପୌରୁଷକୁ ସେ ବୋଧହୁଏ ଅଭିଶାପ ଦେଉଥାଏ ।

ତାକୁ ଆବେଦନ ଜଣାଇ ନାରୀତ୍ୱକୁ ସମର୍ପଣ କରିବାକୁ ଆସିଥିଲା ଗୋଟିଏ କଳାକୁତୀ । ବହୁତ ଆକୁଳ ନିବେଦନ କଲା, ଛଉକାର ଦେହମୁଣ୍ଡ ଶୁଙ୍ଘିଗଲା, ନିଜ ଲାଙ୍ଗୁଡ଼ ହଲେଇ ସମ୍ମତି ଜଣାଇଲା । କିଂତୁ ଛଉକା ସେଥିରେ ଆଉ ପ୍ରତାରିତ ହେବାର ନଥିଲା । କଳାକୁତୀର ଦୀର୍ଘ ସାନ୍ନିଧ୍ୟକୁ ସେ ପ୍ରତ୍ୟାଖ୍ୟାନ କରିଥିଲା ତାର ପୌରୁଷର ଅହମିକାରେ । ସମ୍ଭବତଃ ଏଣିକି ତା'ର ଖାଇବା ଅନେକ ପରିମାଣରେ କମି ଯାଇଥିଲା ।

ଦେହର ହାଡ଼ ଗଣି ହୋଇଯାଉଥିଲା । ଆଖିରେ ସ୍ପଷ୍ଟ ଲକ୍ଷ୍ୟ କରି ହେଉଥିଲା ଲୁହର ଶୁଖିଲା ଧାର ।

ସମୟ ଗଡ଼ି ଚାଲିଥିଲା ତା' ନିଜସ୍ୱ ଗତିରେ । ବର୍ଷାପରେ ହେମନ୍ତର ଶୀତଳତାରେ ଘାସ ଉପରେ ଜମିଯାଉଥିଲା ଶିଶିର କଣା । ଦୂର ଦେବାଳୟରୁ ଶୁଭୁଥିଲା ପ୍ରାତଃ ଆଳତିର ଘଣ୍ଟାଧ୍ୱନି । ଭେଣ୍ଡିଂ ଯୋନ୍‌ରେ ପରିବା ବିକାଳିମାନେ ଆସ୍ତେ ଆସ୍ତେ ସେମାନଙ୍କ ପସରା ମେଲେଇ ବସୁଥିଲେ । ଓମ୍‌ଫେଡ୍ ଚାହା ଦୋକାନରେ ଧଳାକୁର୍ତ୍ତା ଓ ପାଇଜାମା ପିନ୍ଧା ଲୋକମାନେ ହାତରେ ଚା' କପେ କପେ ଧରି କଥାବାର୍ତ୍ତା ଜମେଇ ଦେଇଥିଲେ । ବଡ଼ ରାସ୍ତାରେ ସବୁଦିନପରି କଅଁଳା ଗାଈ ଓ ବୁଲାଷଣ୍ଢଙ୍କର ଭିଡ଼ ଲାଗିଯାଇଥିଲା । ଏ ରାସ୍ତାରେ ଖୁବ୍ ବଡ଼ ପାଓ୍ୱାର ହର୍ଣ୍ଣ ଦେଇ କେତୋଟି କଲେଜ ବସ, ଗୋଟିଏ ଦୁଇଟି ଟ୍ରକ୍ ଓ ୮୦୧୦ ନମ୍ବର ଟାଉନ୍ ବସ୍‌ଟି ସ୍ୱାଭାବିକ ଗତିରେ ଅଗ୍ରସର ହେଉଥିଲେ । ମୁଁ ଆଗକୁ ଆଗକୁ ଚାଲିଥିଲି ଯଦିଓ ପ୍ରାତଃ ଭ୍ରମଣର ସମୟ ଅତିକ୍ରାନ୍ତ ହୋଇଥିଲା ।

ବିପୁଳ ବିସ୍ମୟର ସହିତ ଆବିଷ୍କାର କଲି ନାଲି କୁତୀଟି ତିନୋଟି କୁନିକୁନି ଛୁଆଙ୍କୁ ଏହା ମଧ୍ୟରେ କେବେ ଜନ୍ମ ଦେଇ ସାରିଚି । ସମସ୍ତଙ୍କ ଦେହର ରଙ୍ଗ ନାଲି । କିଂତୁ ଛଉକାକୁ ଲକ୍ଷ୍ୟ କଲି ତା' ମନରେ ସରାଗ ନାହିଁ । ସେ ପୂର୍ବପରି ବିଷଣ୍ଣ ଓ ଉଦାସୀନ କିଂତୁ ମନେ ହେଉଥିଲା ଭିତରେ ଭିତରେ ସେ କ୍ରୋଧରେ ଜଳୁଚି । ଶକ୍ତିଥିଲେ ସବୁ ଭାଂଗି ପକାନ୍ତା । ନାଲିକୁତୀ ସହିତ ଏବେବି ତାର କଥାବାର୍ତ୍ତା ନଥିବା ପରି ମନେ ହେଉଥିଲା । ଛୁଆ ତିନୋଟି କୁନିକୁନି ପାଦରେ ଛଉକା ପାଖକୁ ଲାଗି ଆସୁଥିଲାବେଳେ ସେମାନଙ୍କୁ ମୁହଁରେ ଆଡ଼େଇ ଦେଇ ସେ ଅନ୍ୟତ୍ର ଉଠିଯାଉଥିଲା । କୌଣସି ଗୋଟିକର ବି ପିତୃତ୍ୱ ସ୍ୱୀକାର କରିବାକୁ ତା' ମନରେ ଆଗ୍ରହ ନଥିଲା; କାରଣ କେହି ଗୋଟିଏ ହେଲେ ବି ତା' ପରି ଛଉକା ହୋଇ ନ ଥିଲେ । ମୁଁ ବି ଅନୁଭବ କରୁଥିଲି ସେ ଛୁଆଗୁଡ଼ିକ ସେଇ ବଳିୟାରମାନଙ୍କ ସନ୍ତାନ । ସମ୍ଭବତଃ ଛଉକା ମନେମନେ ସେମାନଙ୍କ ପ୍ରତି କ୍ରୋଧରେ ଜଳି ଉଠୁଥିଲା । କିଛି ଦୁଷ୍ଟ ବୁଦ୍ଧି ତା' ମନରେ ବୋଧହୁଏ ସେତେବେଳକୁ ଉପ୍ତବୀଜ ହୋଇ ସାରିଥିଲା । ମୋରି ଆଗରେ ସେ ତିନୋଟି ଛୁଆଙ୍କ ମଧ୍ୟରୁ ଗୋଟିକର ବେକକୁ ତା' ତୀକ୍ଷଣ ଦାନ୍ତର ପନ୍‌ଝା ଭିତରେ ହଠାତ୍ କାମୁଡ଼ି ଧରିଲା ଓ ଛୁଆଟି କୁଁ କୁଁ ହେଉଥିବା ସତ୍ତ୍ୱେ ବେକକୁ ଦାନ୍ତରେ ଚିପି ମାରିଦେଲା । ଏ ଘଟଣାଟି ଏତେ କ୍ଷିପ୍ର ଗତିରେ ଘଟିଗଲା ଯେ ମୁଁ ଛୁଆଟିକୁ ଉଦ୍ଧାର କରିବାକୁ ବେଳ ପାଇ ନଥିଲି । ତାର ମୃତ ଶରୀରଟି ସେହିପରି ରାସ୍ତା ମଝିରେ ପଡ଼ି ରହିଥିଲା ଓ ଛଉକା କୁକୁରଟି ସେ ସ୍ଥାନ ଛାଡ଼ି ଦଉଡ଼ି ଦଉଡ଼ି ପଳାଉଥିଲା । ଆର ଛୁଆ ଦୁଇଟି କିଛି ଜାଣି ନ ପାରି ସେଇ ମୃତ ଶିଶୁଟି ଉପରେ

ଲଦି ହୋଇ ପଡୁଥିଲେ । ସେତେବେଳେ ସେମାନଙ୍କ ମାଆ ବୋଧହୁଏ ଖାଦ୍ୟ ଅନ୍ୱେଷଣରେ କିଛି ଦୂରକୁ ଚାଲିଯାଇଥିଲା । ମୁଁ ପ୍ରାତଃଭ୍ରମଣ ଓ ମନ୍ଦିର ଦର୍ଶନ କରି ଫେରିଲା ବେଳକୁ ଦେଖେ ମାଆ କୁକୁରଟି ମୃତ ଛୁଆଟିର ବେକରୁ ବୋହି ଆସୁଥିବା ରକ୍ତଧାରକୁ ଚାଟିବାରେ ଲାଗିଛି; ତା ଆଖିରୁ ସ୍ପଷ୍ଟ ଭାବେ କପାଳ ଦେଇ ବୋହି ଯାଉଛି ଲୁହଧାର ।

ତା' ପରଦିନ ସକାଳେ ମୁଁ ଆଉ ପ୍ରାତଃଭ୍ରମଣରେ ଯାଇ ପାରି ନଥିଲି; କୌଣସି ଜରୁରୀ କାମରେ ସମ୍ବଲପୁର ଚାଲିଯାଇଥିଲି । ସେଠି ବରଗାଁ ନିଗମାନନ୍ଦ ଆଶ୍ରମରେ ମୋର ଥିଲା ଚାରିଦିନର ରହଣି । ଫେରିଲି ଇଷ୍ଟର ସିଟିରେ । ମନ ବ୍ୟସ୍ତ ହେଉଥାଏ ସେ ଛୁଆ ଦୁହିଁଙ୍କୁ ଦେଖିବାକୁ । ଅବଶ୍ୟ ତା'ପରଦିନ ସକାଳ ପର୍ଯ୍ୟନ୍ତ ମୋତେ ଅପେକ୍ଷା କରିବାକୁ ହୋଇଥିଲା । ସକାଳେ ପ୍ରାତଃଭ୍ରମଣରେ ଯାଇ ଦେଖିଲି ଅନ୍ୟ ଦୁଇଟି ଛୁଆ ମାଆ ପାଖରେ ନାହାନ୍ତି । ମାଆ କୁକୁରଟି ସେମିତି ଦୁଃଖ ଓ ଲୁହ ଜଡ଼ସଡ଼ ହୋଇ ଶୋଇ ରହିଛି । ଛଉକା ବେଶ୍ କିଛି ବ୍ୟବଧାନରେ ରାସ୍ତା ଉପରକୁ କିଂଚିତ୍ ମାଡ଼ି ଶୋଇ ରହିଛି । ତା ମୁଣ୍ଡକୁ ପିଟି ତାକୁ ମାରି ଦେବାକୁ ମୋ ଭିତରେ କ୍ରୋଧ ସଂଚାରିତ ହେଉଥିଲା । ଛୁଆ ଦୁଇଟି କୁଆଡ଼େ ଗଲେ ପଚାରିବାକୁ ସାହୁବାବୁଙ୍କ ଘର ବାରଣ୍ଡା ଉପରକୁ ଉଠିଯାଉଁ ଯାଉଁ ଭେଟିଲି ତାଙ୍କ ବଡ଼ ବୋହୂଙ୍କୁ । କୁକୁର ଛୁଆ ମାନଙ୍କ ବିଷୟରେ ପଚାରୁ ପଚାରୁ ସେ ଯାହା କହିଲେ ମୁଁ ହଠାତ୍ ବିଶ୍ୱାସ କରି ପାରିଲି ନାହିଁ । ଗୋଟିଏ ଛୁଆ କୌଣସି ଅଜଣା ବ୍ୟକ୍ତିଙ୍କ ମଟର ସାଇକେଲ ଚକାତଳେ ପ୍ରାଣ ଦେଇଛି ଆଉ ଶେଷ ଛୁଆଟିକୁ ଛଉକା ଦାନ୍ତରେ ଚାପି କାମୁଡ଼ି ମାରି ଦେଇଛି । ଠିକ୍ ଯେଉଁପରି ସେ ପ୍ରଥମ ଛୁଆଟିର ପ୍ରାଣ ନେଇଥିଲା । ତା'ର ଅହନ୍ତା ପ୍ରକାଶିତ ହୋଇଛି ବୋଧହୁଏ । ନଇଲେ ସେଇ ଜାଗାରେ ସେ ବିଜୟଦର୍ପରେ ଶୋଇ ରହି ନଥାନ୍ତା । ମାଈ କୁକୁରଟି ସମ୍ଭବତଃ ମୂକ ପାଲଟି ଯାଇଛି କାନ୍ଦି କାନ୍ଦି । ତଥାପି ସାଙ୍ଗ ଛାଡ଼ି ଚାଲିଯାଇ ନାହିଁ । କିନ୍ତୁ ଉଭୟଙ୍କ ମଧ୍ୟରେ ପୂର୍ବଠାରୁ ଅଧିକ ବ୍ୟବଧାନ ଗଢ଼ି ଉଠିଛି । ଅନ୍ତତଃ ମାସକ ଯାକେ ଆଉ ପାଖ ପାଖ ଲଗାଲଗି ହୋଇ ଶୋଇଥିବାର ମୁଁ ସେମାନଙ୍କୁ ଦେଖି ନାହିଁ । ବେଳେବେଳେ, ମାଈ କୁକୁରଟି ଲମ୍ବା ସ୍ୱରରେ ଲହରେଇ କାନ୍ଦି ଉଠିବାର ସ୍ୱର ରାତିରେ ସମସ୍ତେ ଶୁଣନ୍ତି । ବେଶି ଶୁଣନ୍ତି ସାହୁବାବୁଙ୍କ ଘର ଲୋକେ । କୁକୁରଟି ବୋଧହୁଏ ତା ମୃତ ସନ୍ତାନ ପାଇଁ ରାତି ଅଧରେ କାନ୍ଦ ଲମ୍ବାଏ । ସେତେବେଳେ ନିରାଲମ୍ବ ହୋଇ ଆନୁପାତିକ ବ୍ୟବଧାନରେ ବୋଧହୁଏ ଶୋଇଯାଏ ବିଷାଦବାଦୀ ଛଉକା । ସକାଳକୁ ସେମାନେ ଖାଦ୍ୟ ଅନ୍ୱେଷଣରେ ବାହାରିଯାନ୍ତି । ବେଶି ଦୂର ନୁହେଁ, ସେଇ ନିରୂପିତ ଇଲାକା ଭିତରେ ତାଙ୍କର ଗତାଗତ । କିନ୍ତୁ କୌତୁକ ଖେଳରେ

ମାତିଥିବା କେହି ଦେଖନ୍ତି ନାହିଁ । ମୁଁ ଅପେକ୍ଷା କରେ ପରବର୍ତ୍ତୀ ବର୍ଷା ଋତୁକୁ । ସେତେବେଳେ ସେମାନଙ୍କର ମନସ୍ତତ୍ତ୍ୱ କ'ଣ ହୋଇଥିବ ବୁଝିବାକୁ ମୋ ମନରେ ସ୍ୱାଭାବିକ କୌତୁହଳ ଲାଗିରହେ । ମୁଁ ଛଉକାକୁ ତଥାପି କାହିଁକି ଆଦର କରେ ? ସେ କ'ଣ ସ୍ଥିତପ୍ରଜ୍ଞ ପ୍ରାଣୀଟିଏ ଯେ ବଂଚିଥାଏ ସଂକଳ୍ପ, ସହାବସ୍ଥାନ ଓ ସଂହାର ଭିତରେ । ସେ କ'ଣ ନାଲିକୁତୀକୁ ପୂର୍ବପରି ଆଉ ଭଲପାଇପାରିବ ? ଗଢ଼ିବ ତା'ର ଉଜୁଡ଼ା ସଂସାର ? କେଜାଣି ସମୟ ହିଁ ତାର ସମାଧାନ ଦେଇପାରେ । ମୁଁ ନୁହେଁ କି ଆଉ କେହି ନୁହେଁ ।



### ଦେବବ୍ରତ ମଦନରାୟ

# ସ୍ୱପ୍ନଭଙ୍ଗ

ଛପିଛପିକିଆ ଅନ୍ଧାର । ପତ୍ରରୁ ଖସିପଡୁଚି ଟୋପା ଟୋପା କାକର । ଦୂରରେ, ଅନେକ ଦୂରରେ ହେଣ୍ଟାଳୁଛି ବାଘ । ମଝିରେ ମଝିରେ ଚଢ଼େଇଙ୍କର ଭାଙ୍ଗିଯାଉଛି ନିଦ । କ'ଣ ହେଲା ଭାବି ବସା ଛାଡ଼ି ଫଡ଼୍‌ଫାଡ଼୍ ହୋଇ ଉଡ଼ି ବୁଲୁଛନ୍ତି ଆକାଶରେ । ତା'ପରେ ପୁଣି ଫେରିଆସୁଛନ୍ତି, ନିଜ ନିଜର ବସାକୁ । ମକାକ୍ଷେତର ମଞ୍ଚା ଉପରେ ଅଣ୍ଟା ସଳଖୁଛି ଯୋଗିଆ । ପିଙ୍କାରେ ନିଆଁ ଧରାଉଛି । ସକାଳୁକୁ ଅପେକ୍ଷା କରି ରହୁଚି ।

ଏତିକିବେଳେ କ୍ଷେତ ଭିତରକୁ କେହି ଜଣେ ଧସେଇ ପଶିଯିବାର ଶବ୍ଦ ତାକୁ ସଜାଗ କରିଦେଲା । ହାତରେ ଧରିଥିବା ପାଞ୍ଚହାତିଆ ଠେଙ୍ଗାଟି ସମ୍ଭାବନାହୀନ ଭାବରେ ପିଟିହେଲା । ତା' ପର ହୋ-ହଲ୍ଲା । ତା' ପାଟି ପ୍ରତିଧ୍ୱନିତ ହେଲା ପାଖ କ୍ଷେତରେ ସଜାଗଥିବା ଲୋକଟି କଣ୍ଠରେ । କେଉଁଠି କିଛି ଅଘଟଣ ଘଟିଗଲା ଯେମିତି ।

ଏ କଥା ସତ, ଯୋଗିଆ ଅଲକ୍ଷ୍ୟରେ ଅଘଟଣଟି ଘଟିଥିଲା । ଭୀତତ୍ରସ୍ତ ଏକ ଭାଲୁର ଅନୁପ୍ରବେଶରେ କ୍ଷେତର କେତୋଟି ମକାଗଛ ଧରାଶାୟୀ ହୋଇଥିଲା । ମାତ୍ର ହୋ-ହଲ୍ଲା ଯୋଗୁ ବିପଦର ସୂଚନା ପାଇ ସେ ପଛେଇ ପଛେଇ ଫେରିଆସିଲା ଏବଂ ନିଜକୁ ସୁରକ୍ଷିତ ରଖିବା ପାଇଁ ବାଟ ଖୋଜି ଖୋଜି ପହଞ୍ଚିଲା ଗୋଟେ ପାଳଗଦା ମୂଳେ । ସେଇଠି କ୍ଳାନ୍ତ ଶରୀରକୁ ଆଉଜାଇ ଦେଲା ଘଡ଼ିଏ । ଘଡ଼ିଏ ପରେ ସେ ପୁଣି ଜଙ୍ଗଲକୁ ଫେରିଯିବାର ଥିଲା । ମାତ୍ର ପାଳଗଦା ବିଛଣାଟି ତା' କ୍ଳାନ୍ତ ଶରୀରକୁ ଏତେ ଆରାମଦାୟକ ମନେହେଲା ଯେ ସକାଳ କେତେବେଳେ ଆସିଲା ତାହା ସେ ଜାଣିପାରିଲା ନାହିଁ ।

ସକାଳର ନରମ ନାଲି ଖରାରେ ସେ କଡ଼ ଲେଉଟାଇଲା । ଆଖିପତା ମେଲି ଚାହିଁଲା । ହଠାତ୍ ଚମକି ପଡ଼ି ସଳଖି ଛିଡ଼ାହେଲା । ପାଳଗଦା ଉପରେ ଏଣ୍ଡୁଅଟି ମଥା ଟୁଙ୍ଗାରି ସୂଚେଇଦେଲା ଯେ ଗାଁସାରା ସବୁ ଲୋକ ଉଠି ସାରିଲେଣି । ପାଖ ଆମ୍ବଗଛରେ ବସା ବାନ୍ଧିଥିବା ଚଢ଼େଇଟି କେତେବେଳୁ ଉଡ଼ିଗଲାଣି । ପୋକଜୋକ କେଉଁଠୁ ପାଇଲେ

ଆଣି ଖୁଆଇବ ଶାବକମାନଙ୍କୁ । ଗୋଟେ ମଧୁର ସ୍ୱରର ସଂଗୀତ ଲହରୀ ଶୁଣାଯାଉଥାଏ ରହି ରହି ସେହି ଗଛ ଡାଳ-ପତ୍ରର ଗହଳି ଭିତରୁ ।

ଭାଲୁଟି ସେଇଆଡ଼କୁ ଚାହିଁ ଆଖି ଅଧା ବୁଜିଦେଲା । ଏ ଯାଏ ବି ତା' ଆଖିପତାରେ ନିଦ ଲଦି ହୋଇଥାଏ ଯେମିତି । ଠିକ୍ ସେତିକିବେଳେ କେଉଁଠୁ ବେଙ୍ଗଟିଏ ଆସି ତା' ସାମନାରେ ବସିପଡ଼ିଲା । ଏବେ ଭାଲୁ କରିବ କ'ଣ ? ଛାଆଁକୁ ଛାଆଁ ତା' ଆଖିପତାରୁ ନିଦ ଉଭେଇଗଲା । କାରଣ ଏତେ ନିକଟରୁ ବେଙ୍ଗଟିକୁ ସେ କେବେ ଦେଖିନଥିଲା । ଲାଲ ଟହଟହ ରଙ୍ଗରେ ବେଙ୍ଗ ଭୟଙ୍କର ଦିଶୁଥାଏ ।

ହାଇ ମାରିଲା ଭାଲୁଟି । ମୁହଁ ଉପରେ ଭଣଭଣ ହେଉଥିବା ମାଛି କେତୋଟିକୁ ଉଡ଼େଇ ଦେଇ ଠିଆ ହେଲା ସେ । ଏଠୁ ଜଙ୍ଗଲ କେତେ ବାଟ ? ଗାଁ ଆରପଟରେ କ୍ଷେତ । କ୍ଷେତ ଆରପଟେ ବୁଦୁବୁଦୁକିଆ ଜଙ୍ଗଲ । ଜଙ୍ଗଲ ଯେତିକି ଆଗକୁ ବଢ଼ିବ, ସେତିକି ଗହଳ ହେବ ଧାଡ଼ି ଧାଡ଼ି ହୋଇ ଶାଳ, ଶାଗୁଆନ ଗଛ । ଶେଷରେ ପାହାଡ଼ । ପାହାଡ଼କୁ ଘେରି ରହିଥିବ ଘନ ଜଙ୍ଗଲ । ଯେଉଁଠି ବାଘଟିଏ ତା' ପରିବାର ନେଇ ରହୁଛି । ସେଠୁ ଅନେକ ଦୂରରେ ରହୁଛନ୍ତି ତା' ନିଜର ବାପ ମା' ସାଙ୍ଗସାଥୀ । ସେଇ ବାଘର ଚାଲାକିରେ ସେ ଏତେଦୂର ଧାଇଁଆସିଲା ଜୀବନ ବଞ୍ଚାଇବା ପାଇଁ । ଧାଇଁଚି ତ ଧାଇଁଚି । ଜଙ୍ଗଲ ଟପି ପହଞ୍ଚିଲା ଖାଲଢିପ ଅରମାରେ । ତା'ପରେ ଧାନ କ୍ଷେତ । ସେଠୁ ଆସି ଲୁଚିଯାଇଛି ପାଳଗଦା କଡ଼ରେ । ସେଠାରେ ଆଉ କ'ଣ ଲୁଚି ପାରିବ ? ସକାଳ ହେଲାଣି । ତାକୁ ଏଣ୍ଡୁଅ ଦେଖିସାରିଲାଣି । ସେ ଧାଇଁଯାଇ ସମସ୍ତଙ୍କୁ ଖବର ଦେଇଦବନି ତ ! ନହନହକା କଣି ଉପରେ ବସି ମୁଣ୍ଡ ଟୁଙ୍ଗାରି ସେ ଏଇ ଖବରଟିକୁ ପ୍ରଥମେ ଦେବା ପାଇଁ ଆଗ୍ରହ ପ୍ରକାଶ କରିବ ନଇଁ ପଡ଼ିଥିବା ଚାଳିଆ ଭିତରେ ଥିବା ସ୍ତ୍ରୀଲୋକଟିକୁ ନିଶ୍ଚୟ ।

ଭାଲୁଟି ଯାହା ଭାବୁଥିଲା ତାହା ହିଁ ହେଲା । ପାଳଗଦା ଉପରୁ ଓହ୍ଲାଇଯାଇ ବାଡ଼ କଡ଼େ କଡ଼େ ଏଣ୍ଡୁଅ ଚାଲିଗଲା । ଏପଟ ସେପଟକୁ ଚାହିଁ ଜହ୍ନି ଲଟାରେ ଭରାଦେଇ ଉଠିଗଲା ବାଡ଼ ଉପରକୁ । ନହନହକା କଣି ଅଗରେ ବସିଥିବା କଙ୍କିଟି ଉଡ଼ିଗଲା । ଏଣ୍ଡୁଅର ଜିଭ ଅଠା ଅଠା ଜଣାଗଲା । କଙ୍କିଟିକୁ ଧରି ନ ପାରିବାର ଅଯୋଗ୍ୟପଣକୁ ଧିକ୍କାର କରି ମୁଣ୍ଡ ହଲାଇବାରେ ଲାଗିଲା ।

ଏଣ୍ଡୁଅକୁ ଲକ୍ଷ୍ୟ କରୁଥାଏ ଭାଲୁଟି । ଏଥର ବିପଦ ତା' ଉପରକୁ ଆସିପାରେ ନିଶ୍ଚୟ । ଛଳ କଉଶଳ ଜାଣିଥିବା ପ୍ରତ୍ୟେକ ଜୀବନକୁ ସେ ଜାଣେ । ବାଘ ଯେମିତି ଶିକାର କରିବା ପୂର୍ବରୁ ମୁଣ୍ଡ ହଲାଏ । ହିଂସ୍ର ହୋଇଉଠେ । ତା' ଆଖିରୁ ନିଆଁ ବାହାରିବା ପରି ଜଣାପଡ଼େ । ସେମିତି ଉଗ୍ର ଦିଶୁଥିବା ବାଘ ପାଖରୁ ଦୂରେଇ ରହିବା

ପାଇଁ କେତେଥର ତା' ମା' ତାକୁ କହିଚି । ମାତ୍ର କ'ଣ ହେଲା ? ଲାଙ୍ଗୁଡ଼ ହଲାଉଥିବା ବିଭିନ୍ନ ଭଙ୍ଗୀରେ ନାଚୁଥିବା ବାଘକୁ ଦେଖି ତା' ପାଖକୁ ଯାଇଥିଲା । ହସିଥିଲା ଆଉ ଖୁସି ବି ହୋଇଗଲା । ସେଇ ମଉକାରେ ବାଘ ତା' ଉପରକୁ ଡେଇଁ ପଡ଼ିଥିଲା । ସତରେ କେତେ ବୋକା ସେ ! ମରଣ ପାଖକୁ କିଏ ଯାଏ ?

ଏବେ କେମିତି ଯିବ ଜଙ୍ଗଲକୁ ? ଜଙ୍ଗଲ ତ ବହୁତ ଦୂର । ଆଖି ପାଉନି କେତେ ଦୂର । ଖରା ଆହୁରି ସଫା ହେଲାଣି । ତାକୁ ଲୁଚିବାକୁ ହେବ । ରାତି ହେଲେ ସେ ଜଙ୍ଗଲକୁ ଯିବ । ଦିନରେ ମଣିଷକୁ ବି ଡର । ହାତରେ ତୀର, ଠେଙ୍ଗା ଧରିଥିବା ମଣିଷ ବାଘଠାରୁ ଆହୁରି ଭୟଙ୍କର । ତୀରଟିକୁ ଏତେ ସହଜରେ ମାରିଦେବେ ଯେ ଛାତିର କଲିଜା ଚିରିଦେବ । ଆଉ ଠେଙ୍ଗା କଥା ତ ଛାଡ଼ । ଗୋଟେ ମାଡ଼ରେ ମୁଣ୍ଡ ଢୋ । ଅଜଗର ସାପଟିକୁ ଜଙ୍ଗଲ ଭିତରେ ମାରିଦେଲେ ଦଳେ ମଣିଷ ଯେମିତି । କେତେ ବଳବାନ ନଥିଲା ସେ ! ତା'ଠୁ ବି ସେ ଦୂରରେ ରହୁଥିଲା । ସେ ଯାହାକୁ ଭିଡ଼ି ଧରୁଥିଲା, ତାହାର ହାଡ଼ ଚୂନା ହୋଇ ଯାଉଥିଲା । ମାଆ ଆଗରୁ ସେ ସାପ ପାଖକୁ ନଯିବା ପାଇଁ ସାବଧାନ କରିଥିଲା । ବାଘ, ସାପ ଆଉ ମଣିଷ ତିନିଜଣଙ୍କୁ ସେ ଶତ୍ରୁ ବୋଲି ଜାଣେ । ତା' ନରମ ମାଉଁସ ପ୍ରତି ସବୁରି ନଜର । ତା' କଲିଜାକୁ ଚିରି ଫାଳ କରିଦେବା ପାଇଁ ସମସ୍ତେ ଆଗ୍ରହୀ ।

ଝିଣ୍ଟିକାଟି କେଉଁଠି ଥିଲା କେଜାଣି, ଡେଇଁ ଆସି ଠିଆହେଲା ତା' ଆଗରେ । ବୀର ଶିକାରୀଟିଏ ଯେମିତି । ହସିଲା ଭାଲୁ । ମୁହଁ ହଲାଇ ତାକୁ ଗେଲ କରିବା ପାଇଁ ଯିବାବେଳେ ସେଇଟି ଡେଇଁ ପଡ଼ିଲା କୂଅ ନନ୍ଦ ଉପରକୁ । ହଠାତ୍ ନଜର ପଡ଼ିଲା ଭାଲୁଟିର, କେହି ଜଣେ ସ୍ତ୍ରୀଲୋକ ଠିଆ ହୋଇଚି କୂଅ ପାଖରେ । ପାଣି କାଢୁଚି ମାଠିଆରେ । ଜଙ୍ଗଲରେ ଏତେ ସଫାସୁତୁରା ସ୍ତ୍ରୀଲୋକକୁ ସେ କେବେ ଦେଖିନଥିଲା । ଢଳ ଢଳ ଆଖି, ଗୋଲାପି ଅଧର । ବାଁ ଗାଲ ଉପରେ ଗୋଟେ ତିଳ ଚିହ୍ନ । ମହୁଲଫୁଲ ରଙ୍ଗର ବେକରେ ଝୁଲୁଛି କଳା ମାଳି । ତା'ପରେ ସେ ଆଖି ବୁଜି ଦେଲା ଲାଜରେ । ଠିକ୍ ତା' ମାଆ ଛାତିର ସ୍ତନ ପରି ଦୁଇଟି ଭରା ସ୍ତନ । କାହିଁକି କେଜାଣି ସେଇ ସ୍ତନ ଦୁଇଟି ତା' ଭିତରେ ଶିହରଣ ଆଣିଦେଲା । ତାକୁ କୁତୁକୁତୁ କରିଦେଲା ସାମାନ୍ୟ । ସେ ଡେଇଁପଡ଼ିଲା ପାଳ ଗଦା କଡ଼ରେ ।

ଚମକିଲା ସ୍ୱରଟି ଢେଉପରି ମାଡ଼ିଗଲା ଅନତିଦୂରକୁ । ସେଇ ସ୍ୱର ଶୁଣି ଭାଲୁଟି ଆଦୌ ଡରିଲା ନାହିଁ, ବରଂ ଧୀରେ ଧୀରେ ସ୍ତ୍ରୀ ଲୋକ ପାଖକୁ ଗଲା । ପଛକୁ ଲେଉଟିବାର ସମ୍ଭାବନା ନଥିଲା ସ୍ତ୍ରୀ ଲୋକଟିର । ବିସ୍ମୟ ଆଉ ଭୟରେ ସ୍ଥିର ପାଲଟିଗଲା ସେ ।

ଭାଲୁଟି ଭାବିଲା, ସେଇ ସ୍ତ୍ରୀ ଲୋକ ହିଁ ତା'ର ନିରାପଦ ସ୍ଥଳ । ମାଟିକୁ ଶୁଙ୍ଘି ଶୁଙ୍ଘି ସ୍ତ୍ରୀଲୋକଟିର ଚାରିପାଖରେ ବୁଲିଲା । ତାକୁ ଯେମିତି କହିଲା, ମୁଁ ତୁମର କୌଣସି କ୍ଷତି କରିବି ନାହିଁ । ସୁନ୍ଦର ସ୍ତ୍ରୀଲୋକଙ୍କର କେହି କ'ଣ କେବେ କ୍ଷତି କରିପାରେ? ଦେଖୁନ ମୋ ହାତରେ କିଛି ନାହିଁ । ସବୁ ନଖ ଝଡ଼ିଯାଇଛି ତୁମକୁ ଦେଖିବା ପରେ । ଆଉ ଜିଭ କଥା ଛାଡ଼ । ଏ ଜିଭରେ ଖାଲି ଭାତ ଆଉ ଡାଲି ଖାଇବାକୁ ଇଚ୍ଛା ହେଉଛି । ତୁମେ ମୋତେ ରାନ୍ଧିକରି ଦେବ ତ! ସେତକ ନ କରିପାରିଲେ ମୁଁ ମନ ଦୁଃଖ କରିବିନି । ଗିନାଏ ଖିର ଦେଲେ ଚଳିଯିବ । ମୋ ମାଆର ସ୍ତନରୁ ଝରିପଡୁଥିବା ଖିର କେତେ ମିଠା ତାହା ତୁମେ ଜାଣିନ । ସେମିତି ଖିର ଦେଲେ ଚଳିବ, ଆଉ ମୁଁ ଏଠି ସେଠି ବୁଲି ମୋ ପେଟର ଭୋକ ମାରିପାରିବି ।

ବୁଲି ବୁଲି ଭାଲୁଟି ସ୍ତ୍ରୀଲୋକର ପାଦ ପାଖରେ ଶୋଇ ପଡ଼ିଲା । ପୁଣି ସେ ଅନୁନୟ କଲା, ମୋତେ ତୁମ ପାଖରେ ରଖ । ନହେଲେ ଗାଁର ଲୋକମାନେ ମୋତେ ମାରିଦେବେ । ସ୍ତ୍ରୀଲୋକଟି ତାକୁ ଚାହିଁଲା ଅସହାୟ ଦୃଷ୍ଟିରେ । କେତେ ସହଜରେ ଭାଲୁଟି ଶୋଇ ଯାଇଚି ତା' ପାଦତଳେ! ଆରେ ଏଇଟା ବୋଧେ ପୋଷା ଭାଲୁ, ନହେଲେ ତାକୁ କାହିଁକି ଆକ୍ରମଣ କଲାନାହିଁ । ଜୁଳୁ ଜୁଳୁ ଆଖିରେ ତା' ଉପରୁ ନଜର ଫେରାଇ ନେଉଥିବାବେଳେ ଘର ଭିତରୁ ଶୁଣାଗଲା, "ଆଲୋ ମା' ଲକ୍ଷ୍ମୀ, କୂଅ ପାଖରେ ଏତେ ସମୟ ହେଲା କ'ଣ କରୁଛୁ?"

ହୋସ୍ ଫେରିଆସିଲା ଲକ୍ଷ୍ମୀର । ଚିତ୍କାର କଲା, 'ବା', ଦେଖ କେମିତି ଭାଲୁଟି ମୋ ଗୋଡ଼ ତଳେ ଶୋଇଛି, ମୋର କିଛି...'

ତା' କଥା ସରିଚି କି ନାହିଁ ଘର ଭିତରୁ ଠେଙ୍ଗାଧରି ଧାଇଁ ଆସିଲା ଯୋଗିଆ । ସେ ଲକ୍ଷ୍ମୀର ବାପା । ଠେଙ୍ଗା ଉଠାଇ ଭାଲୁକୁ ମାରିଦେବା ପାଇଁ ଉଦ୍ୟମ କଲାବେଳେ ଲକ୍ଷ୍ମୀ ତାଙ୍କୁ କହିଲା, "ଶରଣ ପଶିଛି ତାକୁ ଛାଡ଼ି ଦେ ।"

"ତୁ କ'ଣ ଭାବୁଚୁ? ଭାଲୁକୁ କିଏ ଛାଡ଼ି ଦେଇପାରେ? ହିଂସ୍ରଜନ୍ତୁ ସେ । ଟିକିଏ ସୁଯୋଗ ପାଇଲେ ଡେଇଁପଡ଼ି ତଣ୍ଟି କଣା କରିଦେବ । ବାଘ ଗୋଡ଼ାଇଚି ବୋଲି ଭୟରେ କ୍ଷେତ ଡେଇଁ ଆସି ପଡ଼ିଚି ଏଠି । ଦେଖିବୁ ଆଉ କେତେ ସମୟ ପରେ ସେଇଟା ଉଠିବ ।"

ଉଠିବ ସେ । ଦେଖିବୁ ସେ ଉଠିପାରିବ ନାହିଁ । ଛୁଆଟା ଧାଇଁ ଧାଇଁ ହାଲିଆ ହୋଇପଡ଼ିଛି । ଶିକାର କ'ଣ ଜାଣିନି ନିଶ୍ଚେ । ଦେଖ, ତା' ଗୋଡ଼ରେ ନଖ ଗଜୁରିନି । ମୋର ମନେହେଉଛି, ମାଆ କ୍ଷୀର ବି ସେ ଏଯାଏ ଛାଡ଼ିନି । ଏତକ କହି ନଇଁପଡ଼ିଲା ଲକ୍ଷ୍ମୀ ଭାଲୁଟି ଉପରେ । ପାପୁଲି ବୁଲାଇ ଧୀରେ ଧୀରେ ନରମ ଦେହକୁ ଆଉଁଶିବାକୁ

ଲାଗିଲା । ଆହୁରି ସଂକୁଚିତ ହୋଇପଡ଼ିଲା ଭାଲୁଟି ପାପୁଲିର କୋମଳ ସ୍ପର୍ଶରେ । ନାରୀର ସ୍ପର୍ଶ ଏତେ କୋମଳ ବୋଲି ସେ ଆଗରୁ ଜାଣି ନଥିଲା ବୋଧେ । ଅପୂର୍ବ ଅନୁଭବରେ ସେ ବିଲେଇ ପାଲଟିଗଲା ଯେମିତି । ସତକୁ ସତ ସେ ବିଲେଇ ପାଲଟିଯାଇଥିଲା ନିଜ ଭିତରେ ।

ଲକ୍ଷ୍ମୀ ଯେତେବେଳେ ମାଠିଆ ଧରି କୂଅ ନିକଟରୁ ଘର ଆଡ଼କୁ ଆସିଲା ସେତେବେଳେ ଭାଲୁଟି ତାକୁ ଅନୁସରଣ କଲା ସୁଧାର ବିଲେଇଟି ପରି । ଏତେ ଧୀରେ ସେ ଆସିଲା ଯେ କଣି ଉପରେ ମୁଣ୍ଡ ଟୁଙ୍ଗାରୁଥିବା ଏଣ୍ଡୁଅ ବିସ୍ମିତ ହୋଇ ତାକୁ ଚାହିଁଲା । ମନକୁ ମନ ପଚାରିଲା, ଭାଲୁ କ'ଣ ବିଲେଇ ପାଲଟି ଯାଇପାରେ ?

ସେ କିଛି ବୁଝିପାରିଲା ନାହିଁ । ଭାବିଲା ଭୁଲେଇବା ଅବସ୍ଥାରେ କଙ୍କିକୁ ଅପେକ୍ଷା କରାଯାଇପାରେ । ସେ ହିଁ ଏହାର ଉତ୍ତର ଦେଇପାରିବ ।

କଙ୍କି ଉଡୁଥିଲା ଭାଲୁ ମଥା ଉପରେ ନଟୁପରି । ସେଇଁ ଆଡ଼କୁ ନ ଚାହିଁ ଭାଲୁଟି ଚାହିଁ ରହିଥାଏ ଲକ୍ଷ୍ମୀର ପାଦକୁ । କେତେ ଗୋରା ସତେ ! ପଦ୍ମଫୁଲର ରଙ୍ଗ ହେବ ସତେ ଯେମିତି । ଛଳଛଳ ପାଣିରେ ପଦ୍ମଫୁଲଟି ଦୋହଲି ଯାଉଛି ଏପାଖ ସେପାଖ ହୋଇ । ମାଠିଆରୁ ଝରିପଡୁଛି ଟୋପା ଟୋପା ପାଣି । ଓଦା ଓଦା ଦିଶୁଚି ଅଳତା ପାଦ ।

ଘର ଭିତରକୁ ଯାଇ ଲକ୍ଷ୍ମୀ ଗୋଟେ କଂସାରେ କ୍ଷୀର ଆଣି ଭାଲୁଟି ଆଗରେ ଥୋଇଲା । ଭାଲୁ ଚାରିଆଡ଼କୁ ଥରେ ଚାହିଁଲା । ତା'ପରେ ଆଖି ବୁଜି ବିଲେଇ ପରି ଖିର ପିଇବାକୁ ଲାଗିଲା ।

ହସି ଉଠିଲା ଲକ୍ଷ୍ମୀ । ତାଳିମାରି କହିଲା, "ବା ତୁ କହୁଥିଲୁ ନା ଏଇ ଭାଲୁଟା ହିଂସ୍ର ବୋଲି । ମୋତେ ମାରିଦେଇପାରେ ଯେ କୌଣସି ମୁହୂର୍ତ୍ତରେ । କାହିଁ ସେମିତି କିଛି ଜଣାଯାଉନି ତ, ବରଂ ବିଲେଇ ଛୁଆପରି କ୍ଷୀର ପିଉଚି ଆଖି ବୁଜି । ବୁଝିଲୁ, ମାଆ କ୍ଷୀର ଛାଡ଼ିନି ସେ । ତା' ଜିଭ କେତେ ନରମ ଦିଶୁଚି ଆଉ ତୁ କହୁଛୁ ସେ ମୋତେ ମାରିଦେବ ।"

କ୍ଷୀର ସରିଗଲା କଂସାରୁ । ନରମ ଜିଭ ଲମ୍ୱାଇ ଫେନ୍ଦରେ ଲାଗିଥିବା ବୁନ୍ଦାଏ କ୍ଷୀରକୁ ତଣ୍ଟି ଭିତରକୁ ଢୋକି ଦେବାବେଳେ ଭାଲୁଟି ଆଖି ମେଲିଲା । ଏଥି ସହ ଆଶ୍ୱସ୍ତ ହେଲା ଯେ ଏଠି ସେ ବେଶ ସୁରକ୍ଷିତ । ସ୍ଥାନଟି ଜଙ୍ଗଲଠାରୁ ନିରାପଦ । ନିରାପଦ ସ୍ଥାନଟିକୁ କେହି କ'ଣ ଛାଡ଼ିଦେଇ ଜଙ୍ଗଲକୁ ଫେରିବାକୁ ଇଚ୍ଛା କରେ ? ଘୁଡୁଘୁଡୁ ହେଲା ସେ କୃତଜ୍ଞତା ଜଣାଇ ।

ଲକ୍ଷ୍ମୀକୁ ଜଣାଗଲା ଭାଲୁଟି କହୁଚି, ନା ଆଉ ଜଙ୍ଗଲକୁ ଯିବିନି । ସେଠି ବାଘର ଭୟ । କିଏ କେତେ ଲୁଚିଛପି ଜିଇ ରହିବ । ଜୀବନ ବଞ୍ଚାଇବା ପାଇଁ ଧାଉଁଥିବ

ମାଇଲ୍ ମାଇଲ୍ ଧରି ଲମ୍ବିଥିବା ଜଙ୍ଗଲ । ପାଦରେ ପଶିଯାଉଥିବ କଣ୍ଟା । ନ ହେଲେ ମୁନିଆ ପଥର ଆଘାତରେ ଖଣ୍ଡିଆ ହେଉଥିବ ପାଦ । ବେଳେବେଳେ ଆଞ୍ଚୁଡ଼ି ହେବାର ସମ୍ଭାବନା ଥିବ ଦେହ । ମୋ ନରମ ଦେହକୁ ଆଉ କେତେ କଷ୍ଟ ଯନ୍ତ୍ରଣା ଭୋଗିବାକୁ ଦେବି । ତୁମ ପାଖରେ ରହିବି ଏଥର । ଆଉ କୁଆଡ଼େ ଯିବିନାହିଁ । କୁଆଡ଼େ ବି ଯିବିନାହିଁ ।

ସତକୁ ସତ ଭାଲୁଟି ସେଇଠି ରହିଗଲା । ଚାଳିଆ, ପାଲଗଦା, କୂଅମୂଳ ନହେଲେ ଝଙ୍କାଳିଆ ଗଛର ଛାଇରେ ତାକୁ ଘୂରିବୁଲିବାର ଗାଁ ଲୋକ ଦେଖିଲେ । କେହି ଜଣେ ତା’ ଠାରୁ ହିଂସ୍ର ଭାବର ଗନ୍ଧ ବି ପାଇଲେନି । ଅତି ସୁଧାର ପୋଷା ବିଲେଇ ପରି ତା’ର ଭାବଭଙ୍ଗୀ ସମସ୍ତଙ୍କ ମନରେ କୌତୂହଳ ସୃଷ୍ଟି କଲା । ତା’ ପାଖକୁ ଆସିଲେ । ହାତ ହଲାଇ, ମୁହଁ ତେଢ଼ାକରି ତା’ ଆଗରେ ନାଚିଲେ । ଭାଲୁଟି ଖୁସି ହେଲା ଆଉ ନାଚିଲା ବି । ମାତ୍ର ତା’ ଖୁସିର କେନ୍ଦ୍ରବିନ୍ଦୁ କୌଣସି ଗାଁଲୋକ ନୁହେଁ, ବରଂ କୂଅରୁ ପାଣି କାଢୁଥିବା, ଖଳାରେ ମକା ଅମଳ କରୁଥିବା, ମହୁଲଫୁଲ ଶୁଖାଉଥିବା ଲକ୍ଷ୍ମୀ ବୋଲି କାହାକୁ ସେ କହିପାରିଲା ନାହିଁ । ବୁଝାଇ ପାରିଲା ନାହିଁ ଶାଳବଣରେ ହଳଦୀ ଲଗାଇ ମହକୁଥିବା ସ୍ତ୍ରୀଲୋକର ମାୟାରେ ସେ ପଡ଼ିଯାଇଛି ବୋଲି । କେମିତି ଅବା ସେ ଏଇ କଥା କହିଥାନ୍ତା ! କେହି କ’ଣ ନିଜ ମନ ଗହୀରର କଥା କହିପାରେ । ସେ ପଶୁ ହେଲେ କ’ଣ ହେଲା, ତା’ର ତ ହୃଦୟଟିଏ ଅଛି । ଯେଉଁ ହୃଦୟକୁ ଫାଳ ଫାଳ କରିଦେବ  । ପାଇଁ କେହି ଶିକାରୀ ନ ହେଲେ ବାଘ ଜଗି ବସିଥାଏ । ସେ ଅସତର୍କ ହୋଇଗଲେ କଥା ସରିଗଲା । ଜୀବନଟା କେତେ ସହଜରେ ଚାଲିଯିବାର ସମ୍ଭାବନାକୁ କେହି କ’ଣ ଅସ୍ୱୀକାର କରିପାରିବ ? କେହି ନୁହେଁ । ଜୀବନ ଅଛି ତ ତା’ ଭିତରେ ଭଲ ପାଇବାର ମହକଟି ମହକି ଉଠୁଚି । ଭଲ ପାଇବାଟି କେତେଜଣଙ୍କ ଭାଗ୍ୟରେ ଥାଏ ! ଜଙ୍ଗଲସାରା ବୁଲିଲେ ବି ତା’ର ସାଥି ହେବାପାଇଁ ଆଉ ଗୋଟିଏ ଭାଲୁ ମିଳିବା ସହଜ ନୁହେଁ । ଏବେ ତ ଶିକାରୀ ବେଶ ଚାଲାକ ହୋଇଗଲେଣି । ନାକରେ ରଶି ଲଗାଇ ନଚାଇବାଠାରୁ ଛାଲ ଆଉ ନଖରୁ ବେଶୀ ପଇସା ମିଳୁଛି ବୋଲି ସେ ଯାହାକୁ ଧରୁଛନ୍ତି ତାକୁ ସଙ୍ଗେ ସଙ୍ଗେ ମାରିଦେଉଛନ୍ତି । ଜଙ୍ଗଲ ବିଭାଗ ବି ହଇରାଣ ହରକତ କରୁଚି ଯିଏ ଭାଲୁକୁ ପୋଷା ମନେଇ ନଚାଉଚି, ଖେଳ ଦେଖଉଚି ପେଟ ପୋଷିବା ପାଇଁ । ସତରେ, ପେଟ ପାଇଁ ସବୁ ନାଟ ।

ନାଟ କଥା ମନେ ପଡ଼ିବାରୁ ସେ ଘେରାଏ ବୁଲିଗଲା । ଆଉ ମୁଣ୍ଡ ହଲାଇ ନାଚିଲା । ଭାଲୁର ଏପରି ଅଙ୍ଗଭଙ୍ଗୀ ସମସ୍ତଙ୍କୁ ଖୁସିଦେଲା । ଛୋଟ ଛୋଟ ପିଲାମାନେ ତାଳିମାରି  ନାଚିଲେ ।

କାହାରି ଭୟ ରହିଲା ନାହିଁ ଭାଲୁ ପ୍ରତି । ଭାଲୁଟି ଚଳପ୍ରଚଳ ହେଲା ବିଲେଇ ପରି । ବେଳେବେଳେ ଜଙ୍ଗଲ ଭିତରକୁ ବି ସେ ପଳାଏ । ଆଉ ଫେରେ ଦିନେ ଦି' ଦିନ ପରେ । ତା' ଅନୁପସ୍ଥିତିରେ ଲକ୍ଷ୍ମୀ ବିଚଳିତ ହୁଏ । କୁଆଡ଼େ ଯାଇଛି ବୋଲି ଖେଦିଯାଏ ଅରମା, ଜଙ୍ଗଲ । ତାକୁ ନ ପାଇଲେ ମନ ଶୁଖାଇ ପିଣ୍ଡାରେ ବସେ । ନହେଲେ ଖଳାରେ ଚାହିଁ ରହେ ଦୂରଂତ କ୍ଷେତ ଆଡ଼େ ।

ଫେରେ ଭାଲୁ । ସେ ଜଙ୍ଗଲରେ ବେଶୀ ସମୟ ରହିପାରେ ନାହିଁ ! ଲକ୍ଷ୍ମୀର ଛଳ ଛଳ ରୂପ ତାକୁ ଆକର୍ଷିତ କରେ । ଶିହରଣ ସୃଷ୍ଟି କରେ । ତା' କୋମଳ ପାପୁଲିର ସ୍ପର୍ଶ ତାକୁ ଆନମନା କରେ ।

ଏକଥା ଜାଣିପାରେନା ଲକ୍ଷ୍ମୀ । ଭାଲୁଟି ଫେରିବାର ଦେଖି ଖୁସିରେ ଉଛୁଳି ପଡ଼େ ସେ । ତାକୁ ତା' ଛାତି ଉପରକୁ ସେ ଟାଣି ଆଣେ, ଗେଲ କରେ । ଛୋଟ ପିଲାକୁ ଗେଲ କଲା ପରି । ଭାଲୁ ଭିତରେ ଶିର୍‌ଶିର୍ ହୋଇ ଉଠେ । ଧମନୀ ଭିତରେ ରକ୍ତ ଧାରର ବେଗ ବୃଦ୍ଧି ପାଏ । ହୃତପିଣ୍ଡର କଥା ଛାଡ଼ । ସେ କେତେ ଜୋର୍‌ରେ ଧକଧକ ହୁଏ ତାହା ସେ ଜାଣିପାରେନା । ମାତ୍ର ଏତିକି ଜାଣେ, ଲକ୍ଷ୍ମୀର ଭରା ଛାତିଟି ବେଶ୍ କୋମଳ । ତା' ପାଇଁ ଭଲ ପାଇବାର ସୁବର୍ଣ୍ଣପୁର ।

ଲାଜ ଲାଗେ ଭାଲୁକୁ । ଚୁପ୍‌ଚାପ୍ ଆଖିବୁଜି ଟିକିଏ ଢୁଳେଇପଡ଼େ ସେଇ କୋମଳଭରା ଛାତି ଉପରେ । ମନେପକାଇଲେ ବି ସେତେବେଳେ କିଛି ତା'ର ମନେପଡ଼େ ନାହିଁ । ଜଙ୍ଗଲ କଥା ଛାଡ଼ । ନିଜ ମାଆ କଥା ବି ତା'ର ମନେପଡ଼େନି । ମନେ ନ ପଡ଼ିବା କଥାଟି ଯେ ଅତି ସ୍ୱାଭାବିକ, ତାହା ଜାଣି ପାରେନି ଭାଲୁଟି ।

ଲକ୍ଷ୍ମୀ ଆଉ ଭାଲୁ ଭିତରେ ଏଇ ଖେଳକୁ ଯୋଗିଆ ସହଜରେ ନିଏ ନାହିଁ । ହିଂସ୍ର ଜନ୍ତୁ । କେତେବେଳେ କେଉଁ ଅଘଟଣ ଘଟିବ ତାହା କିଏ କହିବ ! ଟିକିଏ ଅସାବଧାନ ହେଲେ ଭାଲୁ ତଣ୍ଟି କଣା କରି ମାରିଦେବ । ତା' ସଙ୍ଗରେ କି ଖେଳ ! ଭାଲୁ ସାଙ୍ଗରେ କେହି କ'ଣ ଖେଳିପାରେ ? ନାକରେ ଦଉଡ଼ି ବାନ୍ଧି ତାକୁ ଜବତ କରାଯାଇପାରେ । ଯେତେ ନିରାପଦ ଦୂରତାରେ ରହି ତା'ଠାରୁ ନିଜକୁ ରକ୍ଷା କରିବା ବୁଦ୍ଧିମାନର କାର୍ଯ୍ୟ ହୋଇପାରେ । ଅଥଚ କିଛି ବୁଝୁନାହିଁ ଲକ୍ଷ୍ମୀ । ଛୋଟ ପିଲାପରି ତାକୁ ଗେଲ କରୁଛି । ଛାତିରେ ଜାକି ଧରୁଛି । ପରମା ଆସିଲେ କ'ଣ ହେବ ।

ପରମା ହେଉଛି ଲକ୍ଷ୍ମୀର ସ୍ୱାମୀ । ଦାଦନ ଖଟିବାକୁ ଯାଇଛି । ଆର ବର୍ଷରୁ ଗଲାଣି ଯେ ଆଜିଯାଏ ଆସିନି । ଦି'ତିନି ମାସରେ ଥରେ ଗାଁକୁ ଆସୁଥିବା ଲୋକଙ୍କ ହାତରେ ଅଳ୍ପ କେଇଟା ଟଙ୍କା ପଠାଇଦେଇ ସେଠି ବସିରହିଛି । କି କାମ କରୁଛି କେଜାଣି ? କିଏ କହୁଥିଲା ଇଟା ଭାଟିରେ କାମ କରୁଛି ତ ଆଉ କିଏ କହିଥିଲା ସେ ଟ୍ରକ୍

ଫ୍ୟାକ୍ଟିରେ କାମ କରୁଛି । ଯେଉଁଠି କାମ କରୁ ସେ, କିନ୍ତୁ ନିୟମିତ ଟଙ୍କା ପଠାଉଥିବା ଯୋଗୁ ଯୋଗିଆ ଖୁସି । ବଢ଼ିଲା ଝିଅକୁ କିଏ ଘରେ ରଖି ପୋଷିବ । କ୍ଷେତ କଥା ଛାଡ଼ । ଆଗ ଭଳିଆ ମାଟି ମାଆ ଆଉ ଶସ୍ୟ ଦେଉନି । ଯେତେ ଖଟିଲେ ବି କ୍ଷେତରୁ ପେଟ ପୋଷା ହୋଇପାରୁନି । ଏଥିସହ କେତେ କଟକଣା ହେଲାଣି । ଜଙ୍ଗଲରୁ କାଠ କାଟି ବିକିବା ବି ସହଜ ନୁହେଁ । ବାବୁମାନଙ୍କ ନଜର ପଡ଼ିଲେ କଥା ସରିଲା । ମାଟିରେ ନାକ ନ ଘଷିବା ଯାଏ ସେମାନେ ଛାଡ଼ିବେ ନାହିଁ । ବେଳେବେଳେ ମାଡ଼ ଖାଇବାକୁ ହୁଏ । ମାଡ଼ଦେଲା ପରେ ବି ସେ କୁରାଢ଼ି ଆଉ କାଠକୁ ଜବତ କରି ନିଅନ୍ତି; ବଣ କୁକୁଡ଼ା ଦେଲେ ଛାଡ଼ ମିଳେ ଅତି କଷ୍ଟରେ ।

ଦିନେ ବେଳ ରତରତ ବେଳେ ଯୋଗିଆ କହିଲା, "ମା', ପରମା ଆସିବ ବୋଲି ଖବର ଦେଇଛି । ଡଙ୍ଗରରେ ଦେଖା ହୋଇଥିଲା ଆର ଗାଁର ସୁକୁଟା । ସେଇ ମୋତେ କହିଲା ।"

"ତୁ କହିଲୁନି ମୋ ପାଇଁ ଆଣିଥାନ୍ତା ଟିକିଲି, ତେଲ ଆଉ ଗୋଟେ ନୂଆ ଲୁଗା । ତୋ ପାଇଁ ବି । ଟ୍ରଙ୍କ ଫାକ୍ଟ୍ରିରେ କାମ କରୁଛି ପରା । ସେଇ ଟ୍ରଙ୍କରେ ଏ ସବୁକୁ ପୂରାଇ ଆଣିଥାନ୍ତା । ତା' ଭିତରେ ମୁଁ ସବୁ ସାଇତି ରଖିଥାନ୍ତି । ମୋ' ରିବନକୁ ମୂଷା କାଟି ପକାଉଛି । ଆଉ ମୂଷା..."

ହସିଲା ଲକ୍ଷ୍ମୀ କଥାରେ ଯୋଗିଆ । ବୟସ ହୋଇଥିଲେ ବି ଲକ୍ଷ୍ମୀର କଥା ପିଲାଳିଆ । ହସି ହସି କହିଲା, "ସବୁ କହିଚି । ଆଲୋ ସବୁ ତାକୁ କହିଚି ।"

ଦି' ସପ୍ତାହରେ ପରମା ଆସି ଘରେ ପହଞ୍ଚିଲା । ପୁଷ ମାସ । ଶାଳ ଗଛରେ ଫୁଲ ଲଦି ହୋଇଥାଏ । ମହୁଲ ଫୁଲ ମସିଣାରେ ଶୁଖୁଥାଏ । ବାଡ଼ କଡ଼ରେ କେନ୍ଦୁଗଛ ପତ୍ରରେ ଢାଙ୍କି ହୋଇ ଠିଆ ହୋଇଥାଏ । ବରକୋଳି ଗଛର ଓଠରେ ଥାଏ ଚୁପିଚୁପି ହସ ।

କେଉଁଠୁ ମିଠା ଗୀତଟିଏ ଭାସି ଆସିଲା । ପରମା ଜାଣିପାରିଲା ଏଇ ଗୀତଟି ଲକ୍ଷ୍ମୀର ହୃଦୟ ଭିତରୁ ହିଁ ଆସିଛି । ସେ କହୁଚି, ଚାଲ ଯିବା ଜଙ୍ଗଲକୁ । ସେଠି ନାଚିବା ଆଉ ଗାଇବା । ଆମ ଦୁହିଁଙ୍କୁ ଦେଖିବାକୁ କେହି ନଥିବେ ସେଠି । ଟ୍ରଙ୍କରୁ କାଢ଼ିଲା ପରମା; ଟିକିଲି, ପାନିଆ, ରିବନ, ତେଲ ଆଉ ଲୁଗା । ନାରଙ୍ଗୀ ରଙ୍ଗର ଲୁଗା । ଠିକ୍ ପାଚିଲା କେନ୍ଦୁର ରଙ୍ଗ ଯେମିତି । ନାଚି ଉଠିଲା ଲକ୍ଷ୍ମୀ ତା' ମନ ପସନ୍ଦର ଚିଜ ସବୁ ଆଣିଛି ପରମା । କୁଣ୍ଢାଇ ଧରି ଚୁମା ଉପରେ ଚୁମା ଦେଇଚାଲିଲା ତାକୁ । ଏତେ ଭଲ ପାଇବାକୁ ଯିଏ ଧରିରଖିଚି ଏତେ ଦିନ ଧରି ତାକୁ ତା'ର ପ୍ରତିଦାନ ମିଳିବା ଉଚିତ୍ । ପ୍ରକୃତି ତ ଏଇ କଥା ଶିଖାଇଛି । ନହେଲେ ଧାର ଧାର ବର୍ଷା ଝରିପଡ଼ନ୍ତା ନାହିଁ ମାଟି ମାଆର ଛାତିରେ । ଆଉ ମାଟି ମାଆର ଛାତିରୁ ଉପୁଜି ନଥାନ୍ତା ଶସ୍ୟ । ସେହି ଶସ୍ୟ ହିଁ ଆମକୁ ବଞ୍ଚାଇ ରଖେ । ସେଥିପାଇଁ ଆମେ ପୂଜା କରୁ ମାଟି ମାଆକୁ ।

ଠିକ୍ ସେତିକିବେଳେ କେଉଁଠି ଥିଲା ଭାଲୁଟି ଆସି ପହଞ୍ଚିଲା ଜଙ୍ଗଲ ଆଡୁ । ତାକୁ ଦେଖି ଲକ୍ଷ୍ମୀର ବନ୍ଧନ କୋହଳ ହେଲା । ସେ ପରମାକୁ ଛାଡ଼ିଦେଇ ତା' ଦେହକୁ ଆଉଁଶି ଦେଲା । ଅତି ସରାଗରେ ପଚାରିଲା, "କୁଆଡ଼େ ଯାଇଥିଲୁ ? ଖାଇଚୁ ନା ନାହିଁ । ଉଇ ଲୋଭରେ ଜଙ୍ଗଲକୁ ପଳାଉଛୁ । ଆ, ଆ, ତୋ ପାଇଁ ମହୁଲ ପିଠା କରି ରଖିଛି ।"

ବୁଝିପାରିଲା ନାହିଁ କିଛି ହେଲେ ପରମା ।

ତା' ଆଖି ଆଗରେ ଏଇ ଦୃଶ୍ୟଟି ବେଶ୍ ଅସ୍ୱାଭାବିକ ଜଣାଗଲା । ସେ ନିଜ ଆଖିକୁ ବିଶ୍ୱାସ କରିପାରିଲା ନାହିଁ । ଯାହା ଦେଖୁଚି, ତାହା ସତ କି ନୁହେଁ ଆଖି ମଳି ପୁଣି ଚାହିଁଲା ।

ଏହି ସମୟରେ ଯୋଗିଆ ତା' ପାଖକୁ ଲାଗି ଆସିଲା । ଅତି ନିମ୍ନ ସ୍ୱରରେ କହିଲା, "ଲକ୍ଷ୍ମୀକୁ କେତେଥର କହିଲିଣି ସେଇଟା ହିଂସ୍ରଜନ୍ତୁ । ତାକୁ ପାଖରୁ ଦୂରେଇ ଦେ' । ମୋ କଥା ସେ କ'ଣ ଶୁଣୁଛି ।"

ପରମା ଦେହ ଝାଳରେ ତିନ୍ତିଗଲା । ଭୟରେ ଜଡ଼ସଡ଼ ହୋଇ ସେ ସ୍ଥାଣୁ ପାଲଟିଗଲା । ଓଠ ଖୋଲିଲା ନାହିଁ । ଦାନ୍ତ ଠକ ଠକ୍ ହେବାର ଯାହା ତାକୁ ଜଣାଗଲା । ପାଦତଳ ମାଟି ଧସକି ପଡ଼ିବା ଅନୁଭବ ତାକୁ ଥରାଇଦେଲା ।

ସେ ଆଉ ଘର ଭିତରକୁ ଗଲା ନାହିଁ । ପିଣ୍ଡାକାନ୍ଥକୁ ଆଉଜି ହୋଇ ବସିଲା । ଲକ୍ଷ୍ମୀ ଯେତେ ବୁଝାଇଲେ ବି ସେ ବୁଝିଲା ନାହିଁ । ଭାଲୁଟି କାହାରି କ୍ଷତି କରିନାହିଁ ଆସିବା ଦିନଠୁ କହି ତା' ମନରେ ସାହସ ଭରିବାରେ ବୃଥା ହେଲା ସେ ।

ରାତିରେ ପରମା ବସିରହିଲା ସେମିତି ପିଣ୍ଡାରେ । ଶାଳବଣ ଆଡ଼ୁ ଅଜଣା ବଣୁଆ ଫୁଲର ମହକ ଭାସିଆସିଲେ ବି ଘର ଭିତରେ ଥିବା ଭାଲୁ ଦେହର ଗନ୍ଧ ତାକୁ ବିଚଳିତ କରିଦେଲା । କ'ଣ କରିବ ସେ ? ମାତ୍ର ଭାଲୁକୁ ଧରି ଆନନ୍ଦରେ ଶୋଇପଡ଼ିଲା ଲକ୍ଷ୍ମୀ । ପିଲାକୁ ଧରି ଶୋଇଲା ପରି । ତା' ଛାତିରେ ମୁହଁ ଗୁଞ୍ଜି ବି ଶୋଇପଡ଼ିଲା ଭାଲୁ । କୋମଳ ନରମ ଛାତିର ସ୍ପର୍ଶରେ କିଏ ବା ଆନନ୍ଦରେ ଶୋଇ ନ ପାରିବ ।

କାହାକୁ କିଛି ନ କହି ହୁଦସ କରି ପରମା ଅନ୍ଧାରରେ ଚାଲିଗଲା । କୁଆଡ଼େ ଗଲା ତାହା କେହି ଜାଣିପାରିଲେ ନାହିଁ । ଅନ୍ଧାର ରାତିରେ ଖାଲି ଶୁଣା ଯାଉଥାଏ ପତ୍ରର ମର୍ମର ଶବ୍ଦ । ବେଳେବେଳେ କେଉଁ ନିଦବାଉଳା ଚଢ଼େଇର ସ୍ୱର ।

ଅଧାରାତି ବେଳକୁ ଫେରିଲା ପରମା । ତା' ସାଥିରେ ଥିଲେ ଜଙ୍ଗଲ ବିଭାଗର କେତେଜଣ କର୍ମଚାରୀ । ସମସ୍ତଙ୍କ ହାତରେ ଥାଏ ଭାଲୁକୁ ଧରିବା ପାଇଁ ବିଭିନ୍ନ ପ୍ରକାର ସରଞ୍ଜାମ ।

ଲକ୍ଷ୍ମୀ ଆଖିପତାରେ ଭରା ନିଦ ।

ଭାଲୁ ଆଖିପତାରେ ବି ଭରା ନିଦ ।

ସେ କିଛି ଜାଣିବା ପୂର୍ବରୁ ଭାଲୁଟି ଜାଲ ଦଉଡ଼ି ଭିତରେ ବନ୍ଧା ହୋଇ ସାରିଥାଏ । ତାକୁ ବାନ୍ଧିବା ବେଳେ ଜଙ୍ଗଲ ବିଭାଗର କର୍ମଚାରୀମାନେ ଅନୁଭବ କଲେ ଯେ ଭାଲୁଟି ତା'ର ହିଂସ୍ର ସ୍ୱଭାବକୁ ଭୁଲିଯାଇଛି । ନହେଲେ ବିନା ପ୍ରତିରୋଧରେ ଛାଆଁକୁ ଛାଆଁ ସେ କେମିତି ବନ୍ଧା ହୋଇ ଯାଇଥାନ୍ତା ଜାଲ ଆଉ ଦଉଡ଼ିରେ ।

ମାତ୍ର ତାହା ସତ କଥା ନୁହେଁ । ଭାଲୁଟି ସ୍ୱପ୍ନ ଦେଖୁଥିଲା । ଲକ୍ଷ୍ମୀ ତାକୁ କୋଳରେ ଧରି ଚୁମା ଦେଉଛି । ତାକୁ ଆହୁରି ନିବିଡ଼ ଭାବରେ ଆଲିଙ୍ଗନ କରୁଛି । ଏଇପରି ମୁହୂର୍ତ୍ତରେ କେହି କ'ଣ ପ୍ରତିବାଦ କରେ ନା ପ୍ରତିରୋଧ କରେ । ନାରୀର ସ୍ପର୍ଶ କେତେ ମିଠା ତାହା ସେ ହିଁ କେବଳ ଜାଣେ । ତା' ଛଡ଼ା ଆଉ କେହି ଜାଣନ୍ତି ନାହିଁ ।

ଫର୍ଚ୍ଚା ହେଲା ପରେ ନିଦ ଭାଙ୍ଗିଲା ଲକ୍ଷ୍ମୀର । ଦରମଉଳା ଶାଳଫୁଲ କେଇଟିକୁ ହାତରେ ଆଡ଼େଇ ଦେଲାବେଳେ ଦେଖିଲା, ଭାଲୁଟି ପାଖରେ ନାହିଁ । ମନେ ମନେ ଭାବିଲା, ହଁ ଖଳାରେ ବୁଲୁଥିବ, ଉଇ ଖାଇବା ଲୋଭରେ । ସତରେ ସେଇଟା ପେଟୁଟିଏ । ଯେତେ ଖାଇଲେ ବି ତା' ପେଟ ପୂରୁ ନାହିଁ ।

ବାହାରକୁ ଉଠିଆସି ଯେଉଁ ଦୃଶ୍ୟ ଦେଖିଲା, ସେଥିରେ ସେ ଚମକି ପଡ଼ିଲା । ଜାଲ ରଶିରେ ବନ୍ଧା ହୋଇ ଗୋଟେ ମଣିଷ ଭଳି ଜୀବ ପଡ଼ିରହିଛି କାକୁସ୍ଥ ହୋଇ । ତେବେ ଭାଲୁ କୁଆଡ଼େ ଗଲା ?

"କାହାକୁ ଖୋଜୁଛୁ ଆଲୋ ! ଦେଖ୍, ଏଇ ତୋ ଭାଲୁ । ଗାଁ ସାରା ଲୋକ ତା' ଦେହରୁ ସବୁ ଲୋମ ଉପାଡ଼ି ନେଇଛନ୍ତି । ଆଉ ନଖ କଥା ଛାଡ଼୍ । ତୁ ଜାଣିନୁ, କେତେ ଛଳରେ ସେ ତା' ନଖଗୁଡ଼ିକୁ ଲୁଚାଇ ନଥିଲା ସତେ ! ସେଗୁଡ଼ାକୁ ଏଇ ମାଟିଆ ପୋଷାକପିନ୍ଧା ବାବୁମାନେ ତାଡ଼ି ନେଇଛନ୍ତି । ଭାଲୁ ନଖକୁ ଛାତିରେ ମାଳ କରି ପିନ୍ଧିଲେ ଭୂତ ପ୍ରେତ ଆଉ ପାଖକୁ ଆସିବେନି । ସେମାନେ ଜଙ୍ଗଲରେ ବୁଲୁଛନ୍ତି ତ !

ଚୁପି ଚୁପି ହସିଲା ପରମା । ଗୋଟେ ଗଡ଼ ଜିତିଥାଏ ଯେମିତି ।

ଲକ୍ଷ୍ମୀ ଥରୁଟେ ସେଇ ମଣିଷ ଭଳି ଜୀବ ଆଡ଼େ ଚାହିଁ ଘର ଭିତରକୁ ଚାଲିଗଲା । କାନ୍ଥକୁ ଆଉଜି ପଡ଼ି ଅତି ନିମ୍ନସ୍ୱରରେ ମନକୁ ମନ କହିଲା, "ଛିଃ, କି ଲାଜ କଥା ହେଲା ।"

ଖସି ପଡ଼ିଥିବା ଲୁଗାକୁ ଛାତି ଉପରେ ଜଡ଼ାଇ ଧରି ନଖରେ ମାଟିକୁ ସେ ଚିରିବାରେ ଲାଗିଲା । କ୍ରୋଧରେ କି ଭଲ ପାଇବାର ଉଚ୍ଛ୍ୱାସରେ ତାହା କେହି ଜାଣିପାରିଲେ ନାହିଁ । ଜଙ୍ଗଲ ଆଡୁ ଭାସିଆସିଲା ଅଜଣା ବଣୁଆ ଫୁଲର ମହକ ।



## ପରେଶ କୁମାର ପଟ୍ଟନାୟକ

# ମୁଖ୍ୟମନ୍ତ୍ରୀଙ୍କ କୁକୁର

ମାନ୍ୟବର ମୁଖ୍ୟମନ୍ତ୍ରୀ ପ୍ରତାପ ସିଂଙ୍କର ଗୋଟେ କୁକୁର ଥିଲା । ନାମ ପବନ । ଯେତେବେଳେ ଖବରକାଗଜର ସାମ୍ବାଦିକମାନଙ୍କୁ ଯଥେଷ୍ଟ ପରିମାଣର ସମ୍ବାଦ ମିଳୁ ନ ଥିଲା, କିନ୍ତୁ ଖବରକାଗଜର ପୃଷ୍ଠା ପୂରଣ ହେବା ନିହାତି ଜରୁରୀ ହୋଇପଡୁଥିଲା, ସେତେବେଳେ ସେମାନେ ମୁଖ୍ୟମନ୍ତ୍ରୀଙ୍କ କୁକୁର ସମ୍ପର୍କରେ ନାନା ରୋଚକ କାହାଣୀ ପ୍ରକାଶ କରୁଥିଲେ । କହିବା ବାହୁଲ୍ୟ ମୁଖ୍ୟମନ୍ତ୍ରୀଙ୍କ କୁକୁର ଓ ତାଙ୍କ କୁକୁରର ବିଭିନ୍ନ ଭଙ୍ଗୀର ଫଟୋ, କାର୍ଟୁନ୍ ବିଭିନ୍ନ ଖବରକାଗଜର ପୃଷ୍ଠା ମଣ୍ଡନ କରୁଥିଲା । ମୁଖ୍ୟମନ୍ତ୍ରୀଙ୍କ କୁକୁର ସାରା ରାଜ୍ୟରେ ଏକ ପରିଚିତ ନାମ ଥିଲା ଓ ରାଜନୀତିରେ ଅତ୍ୟଧିକ ଆଗ୍ରହ ରଖୁଥିବା ସଚେତନ ଜନସାଧାରଣ ଅବସର ସମୟରେ ଚା'ଖଟିରେ ତା' ସମ୍ପର୍କରେ ଆଲୋଚନା କରୁଥିଲେ ।

ଗୋଟିଏ ଖବରକାଗଜରେ ଥରେ ପ୍ରକାଶ ପାଇଥିଲା ଯେ ମୁଖ୍ୟମନ୍ତ୍ରୀ କୋଉଠି ମନ୍ତ୍ରିମଣ୍ଡଳ ସଂପ୍ରସାରଣ କାଳରେ ତାଙ୍କ କୁକୁରର ମତାମତକୁ ସର୍ବାଧିକ ଗୁରୁତ୍ୱ ଦେଇଥିଲେ । ସେଇ ମତାମତର ପ୍ରଣାଳୀ ଏହି ରକମ ନିର୍ଦ୍ଦିଷ୍ଟ କରାଯାଇଥିଲା । ମୁଖ୍ୟମନ୍ତ୍ରୀ ତାଙ୍କ ଭାବୀ ମନ୍ତ୍ରିମଣ୍ଡଳର ସଦସ୍ୟମାନଙ୍କ ନାମ ଗୋଟି ଗୋଟି କରି କୁକୁର ସାମ୍ନାରେ ପଢ଼ିଥିଲେ । ଯେଉଁମାନଙ୍କ ନାମ ଉଚ୍ଚାରଣ କାଳରେ କୁକୁରଟି ଅସନ୍ତୋଷସୂଚକ ଭୁକିଥିଲା, ସେମାନଙ୍କୁ ଅଚିରେ ସମ୍ଭାବ୍ୟ ମନ୍ତ୍ରୀ ତାଲିକାରୁ ବାଦ୍ ଦିଆଯାଇଥିଲା ।

କେବେ ଏହା ଏକ ଅବିଶ୍ୱାସ୍ୟ ସତ୍ୟ ଥିଲା ଯେ ରାଜ୍ୟର ସବୁ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି କୁକୁରର ସମ୍ମତି କ୍ରମେ ନିଆଯାଉଥିଲା । ମୁଖ୍ୟମନ୍ତ୍ରୀ ସବୁ ବିବାଦୀୟ ନିଷ୍ପତ୍ତି କୁକୁର ସାମ୍ନାରେ ସୂଚାଉଥିଲେ ଓ ଯେଉଁ ନିଷ୍ପତ୍ତିରେ କୁକୁର ମୁଣ୍ଡ ଟୁଙ୍ଗାରୁଥିଲା ତାହା ଗ୍ରହଣ କରାଯାଉଥିଲା । ଆଶ୍ଚର୍ଯ୍ୟଜନକ ଭାବରେ ସେ ନିଷ୍ପତ୍ତି ସବୁ ଫଳପ୍ରଦ ଓ ଉଚିତ ବୋଲି ପରବର୍ତ୍ତୀ କାଳରେ ପ୍ରମାଣିତ ହେଉଥିଲା ।

କୁକୁରଟି ମୁଖ୍ୟମନ୍ତ୍ରୀଙ୍କ ବାସଭବନ ସାମ୍ନା ଲନ୍‌ରେ ସ୍ୱାଧୀନ ଭାବରେ ବୁଲୁଥିଲା ଓ ଶାସକ ଦଳର କର୍ମୀମାନେ ସେଠାକୁ ଆସିଲେ ମୁଖ୍ୟମନ୍ତ୍ରୀଙ୍କ ସହିତ ସାକ୍ଷାତ ସଂଗେ

ସଂଗେ କୁକୁରଟିକୁ ମଧ୍ୟ ମୃଦୁ ହସ ଉପହାର ଦେବାକୁ ଭୁଲୁ ନ ଥିଲେ । ଉଦ୍ଦେଶ୍ୟ କୁକୁର ମହାଶୟ କାଳେ ସେମାନଙ୍କ ନାମ କୌଣସି ପଦ ପଦବୀ ପାଇଁ ସୁପାରିଶ କରିଦେବେ । କଥିତ ଅଛି ଜଣେ ବିଧାୟକ କୁକୁର ପାଦ ତଳେ ପାଞ୍ଚ ଥର ମୁଣ୍ଡିଆ ମାରିବା ପରେ କୋଉଠି ମନ୍ତ୍ରୀ ହୋଇପାରିଥିଲେ । ଚା'ଖଟିରେ ଆଲୋଚନା ହଉଥିଲା, ମୁଖ୍ୟମନ୍ତ୍ରୀ କାଳେ କୁକୁରଟିର ଜନ୍ମଦିନ ଏକ ପଞ୍ଚତାରକା ହୋଟେଲ୍‌ରେ ପାଳନ କରିଥିଲେ ଓ ସେଥିପାଇଁ ଲକ୍ଷାଧିକ ଟଙ୍କା ରାଜକୋଷରୁ ଖର୍ଚ୍ଚ କରାଯାଇଥିଲା । ଚା' ଖଟିର ମୁଗ୍ଧ ଶ୍ରୋତାମାନେ ଆଶା କରିଥିଲେ ଆଗାମୀ କୌଣସି ଦିନରେ ସମ୍ବାଦପତ୍ରରେ କୁକୁରଟି କେକ୍ କାଟୁଥିବାର କିମ୍ବା ବାର୍ଥ ଡ଼େ ଉତ୍ସବରେ ଟୋପି ପିନ୍ଧି ନାଚୁଥିବାର ଅଭିନବ ଦୃଶ୍ୟ ସମ୍ବଳିତ ଫଟୋ ପ୍ରକାଶ ପାଇବ । ମାତ୍ର ତାହା ପ୍ରକାଶ ପାଇ ନ ଥିଲା । ଖଳପ୍ରକୃତିର ଲୋକେ କହୁଥିଲେ ଫଟୋଟି ପ୍ରକାଶ ନ କରିବା ପାଇଁ ସମ୍ବାଦପତ୍ରମାନଙ୍କୁ ବ୍ୟାପକ ବିଜ୍ଞାପନ ଦିଆଯାଇଥିଲା । ଯୋଉଥିରୁ ଅନେକ ବିଜ୍ଞାପନ ତିରିଶ ବର୍ଷ ତଳର, ଯେଉଁଥିରେ କୁହାଯାଇଥିଲା "ତିନୋଟି ସନ୍ତାନ ଯଥେଷ୍ଟ ।"

ଚା' ଖଟିରେ ପୁଣି ଦିନେ ଆଲୋଚନା ହୋଇଥିଲା ଯେ ମୁଖ୍ୟମନ୍ତ୍ରୀ ଆପଣା କୁକୁରଟିର ବିବାହାଦି କାର୍ଯ୍ୟ ଅଚିରେ ସମାପନ କରିବାକୁ ଚାହାନ୍ତି ଓ ସେଥିପାଇଁ ଏକ କୁମାରୀ କୁକୁରୀର ସନ୍ଧାନରେ ଅଛନ୍ତି । ଉପଯୁକ୍ତ ପାତ୍ରୀର ସନ୍ଧାନ ଦେଇଥିବା ଘଟସୂତ୍ରକାରୀଙ୍କୁ ଏକ ଲକ୍ଷ ଟଙ୍କା ପୁରସ୍କାର ଦିଆଯିବାର କାର୍ଯ୍ୟକ୍ରମ ରହିଛି । ସମ୍ବାଦ ଶ୍ରବଣାନ୍ତେ କିଛି ଉଦ୍ୟମୀ ଯୁବକ କୁକୁରୀ ପାତ୍ରୀ ସନ୍ଧାନରେ ବାହାରି ଯାଇଥିବାର ଓ ପାତ୍ରୀର କୌମାର୍ଯ୍ୟ ସମ୍ପର୍କୀୟ ପ୍ରମାଣପତ୍ର ପଶୁଡାକ୍ତରଙ୍କଠାରୁ ସଂଗ୍ରହ କରିବାର ଉଦ୍ୟମରେ ମାତି ଯାଇଥିବାର ସୂଚନା ମିଳିଥିଲା ।

ରାଜ୍ୟର ଏକ ବିଶିଷ୍ଟ ସମାଲୋଚନାମୂଳକ ପତ୍ରିକା, ଯାହାର ମୁଖ୍ୟ ପୃଷ୍ଠାରେ କେବଳ ବ୍ୟଙ୍ଗଚିତ୍ର ଓ ବ୍ୟଙ୍ଗ କଥନିକା ପ୍ରକାଶ ପାଇଥାଏ, ତା'ର ଚଳନ୍ତି ସଂଖ୍ୟାରେ 'ମୁଖ୍ୟମନ୍ତ୍ରୀଙ୍କ ପରେ କିଏ?' ଶୀର୍ଷକରେ ଏକ ମହାର୍ଘ୍ୟ ସିଂହାସନରେ କୁକୁରଟିଏ ବସିଥିବାର କାର୍ଟୁନ୍ ପ୍ରକାଶ କରିଥିଲେ ଓ କୁକୁର ପାଦ ପାଖରେ 'ପବନ' ବୋଲି ଲେଖି ଦେଇଥିଲେ । ପତ୍ରିକାଟିର ବିକ୍ରି ଅସମ୍ଭବ ଭାବରେ ବଢ଼ି ଯାଇଥିଲା ଓ ତାହା ପତ୍ରିକାର ଜୀବଦ୍ଦଶାରେ ଏକ ରେକର୍ଡ଼ ବୋଲି ଜଣାପଡ଼ିଥିଲା ।

ଜଣେ ଅତ୍ୟନ୍ତ କଳ୍ପନାବିଳାସୀ କବି କୁକୁର ପବନର ଜୀବନଯାପନକୁ ଲକ୍ଷ୍ୟକରି ଏକ କାହାଣୀ ପ୍ରକାଶ କରିଥିଲେ, ଯେଉଁଥିରେ ସେ ଲେଖିଥିଲେ ଯେ ପବନର ଚାଲି ସିଂହ ପରି, ଭୁକିବା ବ୍ୟାଘ୍ର ପରି, ବସିବା ହାତୀପରି ତଥା ଚାହାଣି କମ୍ପ୍ୟୁଟର ପରି । ତାକୁ ଚାହିଁ ଚାହିଁ ମୁଖ୍ୟମନ୍ତ୍ରୀଙ୍କ ବଗିଚା ବାହାରେ ଶତଶତ ବୁଲା କୁକୁର କପାଳରେ

ଗୋଡ଼ମାରି (ସେମାନଙ୍କର କର ନ ଥିବାରୁ ବାଧ୍ୟହୋଇ) ରୋଦନ କରୁଅଛନ୍ତି କି, କେଉଁ ଶୁଭ ବେଳାରେ ଜନ୍ମହୋଇ ବାବୁ ପବନ ଏତେ ପ୍ରାଚୁର୍ଯ୍ୟ ଭୋଗୁଛନ୍ତି ଓ କୋଉ କାଳବେଳାରେ ଜନ୍ମି ଆମେ ଅଇଁଠାପତ୍ର ଚାଟୁଛୁ।

ଏଇପରି ଭାବରେ ବିଭିନ୍ନ ସମୟରେ ଖବରକାଗଜ, ଚା' ଦୋକାନ, ବିଭିନ୍ନ ଦପ୍ତରର ଅବସରଗୃହ ଇତ୍ୟାଦିରେ ଚର୍ଚ୍ଚାର ପରିଧି ମଧ୍ୟରେ ରହି ଆସିଥିବା ମୁଖ୍ୟମନ୍ତ୍ରୀଙ୍କ କୁକୁର ପବନ ତା'ର ରାଜକୀୟ ଜୀବନ ବିତାଉଥିବାବେଳେ ଅଘଟଣଟିଏ ଘଟିବାକୁ ଆରମ୍ଭ କଲା ଓ ତାହା ହିଁ ଆମ କାହାଣୀର ବିଷୟବସ୍ତୁ।

ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟିକୁ ଆସିଥିଲା ଗୋଟେ ପତ୍ର, ଯେଉଁଥିରେ ପତ୍ରପ୍ରେରକ ଲେଖିଥିଲେ, 'ମହାଶୟ, ଏହା ମୋର ପଞ୍ଚମ ତଥା ଶେଷ ପତ୍ର। ଯଦି ଆପଣ ଏହା ଉପରେ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ ନ କରନ୍ତି, ବାଧ୍ୟ ହୋଇ ମୁଁ ମୋର ଅନ୍ତିମ କାର୍ଯ୍ୟପନ୍ଥା ଗ୍ରହଣ କରିବି।'

ପତ୍ରପ୍ରେରକ ଯା' ପୂର୍ବରୁ ଚାରୋଟି ପତ୍ର ଦେଇଥିଲେ। ମାତ୍ର ମୁଖ୍ୟମନ୍ତ୍ରୀଙ୍କ ସଚିବ ତାହା କୌଣସି ପାଗଳର ପ୍ରଳାପ ମନେକରି, ଚିରି ସାରି ଡଷ୍ଟବିନ୍‌କୁ ନିକ୍ଷେପ କରିଥିଲେ। ମୁଖ୍ୟମନ୍ତ୍ରୀଙ୍କ ଦପ୍ତରକୁ ଆସୁଥିବା ପତ୍ରର ଅର୍ଦ୍ଧାଧିକ ଏହିପରି ପ୍ରଳାପପୂର୍ଣ୍ଣ ଥିଲା। ତେଣୁ ଅଧିକାରୀ ଜଣକ ଏପରି ଅନାବଶ୍ୟକ ପତ୍ରକୁ ନଷ୍ଟ କରି ନିଜର ପ୍ରଶାସନିକ ଦକ୍ଷତାର ପରିଚୟ ପ୍ରଦାନପୂର୍ବକ ଦୁଇଟି ପ୍ରମୋସନ୍ ପାଇ ପାରିଥିଲେ।

ମାତ୍ର ଦୁର୍ଭାଗ୍ୟକୁ ସେ ଛୁଟିରେ ଥିଲେ ଓ ହତଭାଗା ଯୁବକଟିର ପଞ୍ଚମ ପତ୍ରଟି ମୁଖ୍ୟମନ୍ତ୍ରୀଙ୍କ ସାମ୍ନାରେ ଯାଇ ପହଞ୍ଚିଲା। ମାନ୍ୟବର ମୁଖ୍ୟମନ୍ତ୍ରୀ ଚିଠିଟିକୁ ଆମୂଳଚୂଳ ପାଠକଲେ (ସେତେବେଳେ ସେ ଟିକେ ରିଲାକ୍ସ୍‌ଡ୍ ମୁଡ୍‌ରେ ଥିଲେ) ଓ ଚମକି ପଡ଼ିଲେ।

ପତ୍ରପ୍ରେରକ ଲେଖିଥିଲେ– 'ମୋର ପିତୃଦତ୍ତ ନାମ ପବନ ଏବଂ ଏହି ନାମରେ ମୁଁ ହାଇସ୍କୁଲ ତଥା ମହାବିଦ୍ୟାଳୟରୁ ଶିକ୍ଷାଗତ ପ୍ରମାଣପତ୍ର ହାସଲ କରିଛି। ମାତ୍ର ଏହି ନାମଟି ଆପଣଙ୍କ କୁକୁର ନାମ ହୋଇଥିବାରୁ, ଆମ୍ଭର ଗ୍ରାମବାସୀ ମୋତେ "ମୁଖ୍ୟମନ୍ତ୍ରୀଙ୍କ କୁକୁର" ବୋଲି ଡାକୁଛନ୍ତି। ତେଣୁ ମୁଁ ଘୋର ମାନସିକ ଅଶାନ୍ତି ମଧ୍ୟରେ କାଳାତିପାତ କରୁଅଛି। ମୋର ଆଉ ସମ୍ମାନ ବୋଲି କିଛି ନାହିଁ। ଏହିପରି ସମ୍ମାନହୀନ ଜୀବନ ଅପେକ୍ଷା ମୃତ୍ୟୁ ଅଧିକ ଶ୍ରେୟସ୍କର ବୋଲି ମୁଁ ମନେ କରୁଛି।

ମୋର ବିନୀତ ନିବେଦନ ଆପଣ ଯଥାଶୀଘ୍ର ନିଜର କୁକୁର ନାମ ପରିବର୍ତ୍ତନ କରନ୍ତୁ ଏବଂ ସାଧାରଣ ନାଗରିକର ସମ୍ମାନ ରକ୍ଷାରେ ସହାୟକ ହୁଅନ୍ତୁ। ନୋହିଲେ ମୁଁ ଆପଣଙ୍କ ବାସଭବନ ସମ୍ମୁଖରେ ଆତ୍ମାହୁତି ଦେବାକୁ ବାଧ୍ୟ ହେବି।'

ମୁଖ୍ୟମନ୍ତ୍ରୀ ପତ୍ରଟିକୁ ଏକାଧିକବାର ପାଠ କଲେ ଓ ଚିନ୍ତିତ ଦିଶିଲେ।

ସେ ଚିଠିଟିକୁ ନିଜ ପାଖରେ ରଖିଲେ ଓ ତାଙ୍କ ସଚିବ କାର୍ଯ୍ୟରେ ଯୋଗ ଦିଅନ୍ତେ ତାଙ୍କୁ ପଚାରିଲେ ।

ପଚାରିଥିଲେ– ଆପଣ ଏହି ପତ୍ରଟିକୁ ପଢ଼ିଛନ୍ତି ?

ସଚିବ ଚିଠି ଉପରେ ନିଜର ଦୃଷ୍ଟି ପହଁରାଇ ଆଣିଲେ ଓ ଚମକିପଡ଼ିଲେ ।

କହିଲେ– ଏ ପତ୍ର ଆପଣଙ୍କ ହାତକୁ କିପରି ଆସିଲା ? ଏଇଟା କୌଣସି ପାଗଳର ପ୍ରଳାପ । ଆପଣ ତାକୁ ଗୁରୁତ୍ୱ ଦିଅନ୍ତୁ ନାହିଁ । ଏଭଳି ପତ୍ରସବୁ ମୁଁ ଆପଣଙ୍କ ଟେବୁଲ୍‌କୁ ଆସିବାକୁ ଦିଏ ନାହିଁ । ଏଇଟା କେମିତି କେଜାଣି ଖସିଯାଇଛି । ବରଂ ଏ ପ୍ରକାର ଅବହେଳା ପାଇଁ ମୁଁ କ୍ଷମା ପ୍ରାର୍ଥନା କରୁଛି ।

ମୁଖ୍ୟମନ୍ତ୍ରୀ ତଥାପି ଚିନ୍ତିତ ଥିଲେ ।

କହିଲେ– ଆପଣ ଚିଠିଟାକୁ ବୁଝିନାହାନ୍ତି ଦେଖୁଛି । କଥାଟା ସିରିୟସ୍ ଅଛି । ଲୋକଟା କୌଣସି ଡ୍ରାଷ୍ଟିକ୍ ଷ୍ଟେପ୍ ନେଇଯିବା ଅସମ୍ଭବ ନୁହେଁ ।

ଏଥରକ ସଚିବଙ୍କ ସ୍ୱର ଓ ମୁଖଭଙ୍ଗୀ ବଦଳିଗଲା ।

କହିଲେ, 'ହେଇପାରେ ସାର୍ ! ଆପଣ ଯାହା ଅନୁମାନ କରୁଛନ୍ତି, ତାହା ସତ ବି ହୋଇପାରେ । ଆଜିକାଲି ଲୋକମାନଙ୍କ ଉପରେ ଆଉ ଭରସା ନାହିଁ । ସେମାନେ ଯେକୌଣସି ସାମାନ୍ୟ କଥା ପାଇଁ ଶେଷରାସ୍ତା ବାଛି ନେଉଛନ୍ତି ।

ମୁଖ୍ୟମନ୍ତ୍ରୀ ହାଲ୍‌କା ଦିଶିଲେ ।

କହିଲେ, ସେଇଥିପାଇଁ ତ କହୁଛି ଏ କେସ୍‌ଟା ସିରିୟସ୍ ଅଛି ।

ସଚିବ ପଚାରିଲେ – ତେବେ କ'ଣ କରିବା ବୋଲି ବିଚାର କରୁଛନ୍ତି ସାର୍ !

ମୁଖ୍ୟମନ୍ତ୍ରୀ କହିଲେ – ଆପଣ ଏ ଲୋକଟାକୁ ଠାବ କରନ୍ତୁ । ମୁଁ ତା' ସହିତ ସିଧାସଳଖ କଥାବାର୍ତ୍ତା କରିବାକୁ ଚାହେଁ ।

ଲୋକଟିକୁ ଠାବ କରିବା ପାଇଁ ବିଶେଷ ଅସୁବିଧା ହେଲାନାହିଁ । ସେ ପତ୍ରରେ ତା'ର ସବିଶେଷ ଠିକଣା ଦେଇଥିଲା । ସଚିବ ସିଧାସଳଖ ତା'ପାଖରେ ପହଞ୍ଚିଲେ ଓ ମୁଖ୍ୟମନ୍ତ୍ରୀଙ୍କ ବାର୍ତ୍ତା ଜଣାଇଲେ । ସାକ୍ଷାତ୍‌କାରର ସମୟ ନିର୍ଘଣ୍ଟ ବି ସ୍ଥିର କରିନେଲେ ।

ଏକ ଛୁଟି ଦିନରେ ଲୋକଟିକୁ ମୁଖ୍ୟମନ୍ତ୍ରୀ ନିଜ ବାସଭବନରେ ଭେଟିଲେ ।

ଲୋକଟି ପତ୍ରରେ ଯାହା ଯାହା ଲେଖିଥିଲା, ସେ ସବୁକଥା ପୁଣିଥରେ ମୂଳରୁ କହିଲା ଓ କହିବା ଭିତରେ ସେ ଆପଣାର ବ୍ୟକ୍ତିଗତ ଦୁଃଖ କାହାଣୀ କିଛି କିଛି ମଧ୍ୟ ଯୋଡ଼ିଲା ।

ମୁଖ୍ୟମନ୍ତ୍ରୀ ତା'ର କଥା ବେଶି ଲମ୍ବା ହେଇଯାଉଥିବାର ଦେଖି ଅଶ୍ୱସ୍ତି ଅନୁଭବ କଲେ ଓ କଥା ମଝିରେ ବାଧାଦେଲେ ।

ପଚାରିଲେ– ଏବେ ତୁମେ କ'ଣ ଚାହୁଁଛ ?

ଲୋକଟି କହିଲା – ସେ କଥା ତ ମୁଁ ଜଣେଇ ସାରିଛି ଆଜ୍ଞା ! ଆପଣ କୁକୁରର ନାମ ବଦଳାଇ ଦିଅନ୍ତୁ ।

ମୁଖ୍ୟମନ୍ତ୍ରୀ କହିଲେ– ତାହା ସମ୍ଭବ ନୁହେଁ । ଆପଣ ନିଜର ନାମ ବଦଳାଇ ଦେଉନାହାନ୍ତି କାହିଁକି ?

ଲୋକଟି କହିଲା– ମୁଁ ମୋର ନାମ ବଦଳାଇ ପାରିବି ନାହିଁ ସାର୍ ! ଏବେ ତ ଲୋକମାନେ ମୋତେ ମୁଖ୍ୟମନ୍ତ୍ରୀଙ୍କ କୁକୁର ଡାକୁଛନ୍ତି । ନାମ ବଦଳାଇଲେ ସେମାନେ ମୋତେ ନାଁ ବଦଳା କୁକୁର ବୋଲି ଡାକିବେ ।

ମୁଖ୍ୟମନ୍ତ୍ରୀ କହିଲେ– ଏ ବାବଦରେ ମୋର ବି ସମସ୍ୟା ଅଛି । ମୋର କୁକୁରଟି ବି ଅଦ୍ଭୁତ । ତାକୁ ଆଉ ଯେ କୌଣସି ନାମରେ ଡାକିଲେ ସେ ଶୁଣିବାକୁ ପ୍ରସ୍ତୁତ ନୁହେଁ । କହିବାକୁ ଗଲେ ତା' ନିଜ ନାମଟା ସେ ନିଜେ ହିଁ ପସନ୍ଦ କରି ଦେଇଛି । ମୁଁ ସାରା ଡିକ୍ସନାରୀ ତା' ସାମ୍ନାରେ ଡାକି ସାରିଲିଣି, କିନ୍ତୁ ସେ ଶୁଣିବାକୁ ରାଜି ନୁହେଁ । ପବନ ନାମ ଛଡ଼ା ଅନ୍ୟ କୌଣସି ନାମ ଡାକିଲେ ସେ ପ୍ରତିକ୍ରିୟାଶୀଳ ହୋଇପଡୁଛି । ଦାନ୍ତ ରଗଡୁଛି । ଉତ୍‌କ୍ଷିପ୍ତ ମନେ ହେଉଛି । ସର୍ବୋପରି ମୋର ଡିସିସନ୍ ମେକିଙ୍ଗରେ ସହାୟତା କରୁନାହିଁ ।

ଲୋକଟି କହିଲା– ତେବେ ଆପଣଙ୍କ ଦୃଷ୍ଟିରେ ମଣିଷର ମୂଲ୍ୟ କମ୍ ଅଛି । କୁକୁର ମୂଲ୍ୟ ଅଧିକ ।

ମୁଖ୍ୟମନ୍ତ୍ରୀ କହିଲେ– ନା ! ନା ! ତା' ନୁହେଁ । ଏ ରାଜ୍ୟର ସମସ୍ତ ମଣିଷଙ୍କୁ ମୂଲ୍ୟ ଦିଏ ବୋଲି ମୁଁ ରାଜନୀତିରେ ତିଷ୍ଠିଚି । ଆପଣଙ୍କ ଅଭିଯୋଗର ଢେର ମୂଲ୍ୟ ଅଛି ବୋଲି ତ ମୁଁ ଆପଣଙ୍କୁ ଡକେଇଛି । ଏ ସମସ୍ୟାର ଗୋଟେ ସମାଧାନ କରି ଦେବାକୁ ଚାହୁଁଛି ।

ଲୋକଟି କହିଲା– ଏବେ ଆଉ କି ସମାଧାନ ହେବ ? ମୁଁ ତ ନାମ ପରିବର୍ତ୍ତନ ପାଇଁ ରାଜି ନୁହେଁ । ଆପଣଙ୍କ କୁକୁର ମଧ୍ୟ ଅନ୍ୟ କୌଣସି ନାମ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ । ସମାଧାନ ହେବ କିପରି ?

ମୁଖ୍ୟମନ୍ତ୍ରୀ କହିଲେ– ମୁଁ ଆପଣଙ୍କୁ କ୍ଷତିପୂରଣ ଦେଇ ଦେବାକୁ ଚାହୁଁଛି । ଏଇ ଯେମିତି ଆପଣଙ୍କୁ କିଛି ଟଙ୍କା ଦିଆଯିବ ଓ ଆପଣ ଏ ଅପମାନକୁ ଭୁଲିଯିବେ । ଆପଣ ଏବେ ସୁଦ୍ଧା ବେକାର ଅଛନ୍ତି । ମୁଁ ଖୁବ୍ ବେଶିରେ ଆପଣଙ୍କୁ ଗୋଟେ ସରକାରୀ ଚାକିରିଟେ ଦେଇପାରେ । କିନ୍ତୁ ଆପଣ ଆଉ ମୋ କୁକୁରର ନାମ ପରିବର୍ତ୍ତନ ପାଇଁ ଦାବି କରନ୍ତୁ ନାହିଁ ।

ଠିକ୍ ଏମିତିବେଳେ ଆଲୋଚନା ଭିତରକୁ ଅନୁପ୍ରବେଶ କଲେ ମୁଖ୍ୟମନ୍ତ୍ରୀଙ୍କ ସଚିବ ।

ସେ କହିଲେ– ସାର୍! ଏ ପ୍ୟାକେଜଟା ସଫଳ ହେବାର ଆଶା ବହୁତ କମ୍ । କାରଣ ଗୋଯେନ୍ଦା ବିଭାଗକୁ ମୁଁ ଗୋଟେ ସର୍ଭେ ପାଇଁ କହିଥିଲି । ସେମାନେ ଜଣେଇଛନ୍ତି ଯେ ଆମ ରାଜ୍ୟରେ ମୋଟ ପନ୍ଦର ହଜାର ତିନିଶ ଏକତ୍ରିଶ ଜଣ ପବନ ନାମଧାରୀ ଲୋକ ଅଛନ୍ତି । ଏକଥାଟି ବାହାରେ ପ୍ରଘଟ ହୋଇଗଲେ ଏମାନେ ସମସ୍ତେ ଯଦି କ୍ଷତିପୂରଣ ବା ଚାକିରି ମାଗିବେ, ତେବେ ତାହା ପୂରଣ କରିବା ଆମ ପକ୍ଷରେ ଅସମ୍ଭବ ହୋଇ ପଡ଼ିବ ।

ମୁଖ୍ୟମନ୍ତ୍ରୀ ଖୁବ୍ ଅସହାୟ ଦିଶିଲେ ।

ପଚାରିଲେ– ତେବେ କ'ଣ କରିବା କୁହନ୍ତୁ ।

ଶେଷ ଆଡ଼କୁ ତାଙ୍କ ସ୍ୱରଟା ବେଶ୍ କରୁଣ ଶୁଣାଯାଉଥିଲା ।

ସଚିବଙ୍କ ପାଖରେ ଆଶୁ ଉତ୍ତର ମହଜୁଦ ଥିଲା । ସେ ପରାମର୍ଶ ଦେଲେ, ସାର୍! ବ୍ୟସ୍ତ ହୁଅନ୍ତୁ ନାହିଁ । ଏ ସମ୍ପର୍କରେ ବରଂ ଏକ ଏକ୍ସପର୍ଟ କମିଟି ବସେଇବା । ଏବଂ ଏକମାସ ଭିତରେ ତାଙ୍କୁ ରିପୋର୍ଟ ଦେବାକୁ କହିବା । ରିପୋର୍ଟ ମିଳିବା ପରେ ଯାଇ ଯାହା ପଦକ୍ଷେପ ନିଆଯିବ । ଏ ବାବୁଙ୍କୁ ଏକମାସ ଅପେକ୍ଷା କରିବାକୁ କୁହାଯାଉ ।

ଆଲୋଚନା ଏହି ରକମ ଅମୀମାଂସିତ ଭାବରେ ଶେଷ ହେଲା ।

ମୁଖ୍ୟମନ୍ତ୍ରୀ ସଚିବଙ୍କୁ ତାଗିଦ କଲାଭଳି କହିଥିଲେ– ଆପଣ ଯୋଉ କମିଟି ବସାଉଛନ୍ତି, ବସାନ୍ତୁ । ଏସବୁ ନିହାତି ଗୋପନରେ ହେବା ଚାହି । ଯଦି ସାମ୍ବାଦିକମାନଙ୍କ ଦୃଷ୍ଟିକୁ ଆସିଗଲା, ସେମାନେ ନାନା ବାଜେ କଥା ଲେଖି ଜନମାନସକୁ ବିଭ୍ରାନ୍ତ କରିଦେବେ ।

ସଚିବ କହିଲେ– ଅତ୍ୟନ୍ତ ଗୋପନରେ ଏ କାର୍ଯ୍ୟ ହେବ ସାର୍! ଆପଣ ନିଶ୍ଚିନ୍ତ ରହନ୍ତୁ!

ଦୁଇଦିନ ବାଦ୍ ଗୋଯେନ୍ଦା ବିଭାଗର ମୁଖ୍ୟ ଗୋଟେ ଗୁପ୍ତ ରିପୋର୍ଟ ପେଶ୍ କଲେ ମୁଖ୍ୟମନ୍ତ୍ରୀଙ୍କ ସାମ୍ନାରେ ।

କହିଲେ– ସାର୍! ରିପୋର୍ଟ ମିଳିଛି ଯେ ରାଜ୍ୟରେ ବହୁ ଯୁବକ ନିଜର ନାମ ପରିବର୍ତ୍ତନ କରି ପବନ ରଖୁଛନ୍ତି । ଏ ସମ୍ପର୍କରେ ବିଭିନ୍ନ କୋର୍ଟରେ ଆଫିଡେଭିଟ୍ କାମ ଚାଲିଛି ।

ମୁଖ୍ୟମନ୍ତ୍ରୀ ଅବୁଝା ଦୃଷ୍ଟିରେ ଚାହିଁଲେ ।

ପଚାରିଲେ– କ'ଣ ହେଇପାରେ ସେମାନଙ୍କର ଉଦ୍ଦେଶ୍ୟ ?

ଗୋୟେନ୍ଦା ବିଭାଗ ମୁଖ୍ୟ ଜଣାଇଲେ– ସେ କଥା ତ ଜଣା ପଡ଼ିନାହିଁ ସାର୍ ! ତେବେ ଏହା ଏକ ବୃହତ୍ତର ଷଡ଼ଯନ୍ତ୍ରର କ୍ଷୁଦ୍ରତମ ଅଂଶବିଶେଷ ହୋଇପାରେ ।

ମୁଖ୍ୟମନ୍ତ୍ରୀ ପଚାରିଲେ– କି ପ୍ରକାର ଷଡ଼ଯନ୍ତ୍ର ?

ତାହା ତ ଜଣାପଡ଼ିନାହିଁ ସାର୍ ! ତେବେ ତା'ର ଅନୁସନ୍ଧାନ ପାଇଁ ଆମର ବଛା ବଛା ଅଫିସର ମୁତୟନ ହୋଇଅଛନ୍ତି ।

ତେବେ ସଚିବ ଯେଉଁ ପ୍ରସ୍ତାବ ଦେଇଥିଲେ, ତାକୁ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ଅତ୍ୟନ୍ତ ଗୋପନରେ ସେ ଗୋଟେ କମିଟି ଗଠନ କରିଥିଲେ । ସେଥିରେ ସଦସ୍ୟ ଥିଲେ ଜଣେ ଅବସରପ୍ରାପ୍ତ ବିଚାରପତି, ଘଟଣାର ଆଇନଗତ ଦିଗ ତର୍ଜମା କରିବା ପାଇଁ, ଜଣେ ମନସ୍ତତ୍ୱବିତ୍, ଯେହେତୁ ଘଟଣାରେ ଜଣେ ସାଧାରଣ ମଣିଷର ମନ ବ୍ୟାହତ ହୋଇଛି । ଜଣେ ପଶୁ ବିଶେଷଜ୍ଞ ଯେହେତୁ ଗୋଟେ ପଶୁର ଭୂମିକା ରହିଛି । ଜଣେ ବୃଦ୍ଧ ରାଜନୀତିଜ୍ଞ, ଯିଏ ଏବେ ସକ୍ରିୟ ଥିବାର ଦାବି କରୁଥିଲେ ମଧ୍ୟ ଜନତା ତାଙ୍କୁ ଭୁଲି ସାରିଥିଲେ । ସେ ଘଟଣାର ସମସ୍ତ ଦିଗର ତର୍ଜମା କରିବା ପାଇଁ ନିଯୁକ୍ତ କମିଟି ଉପଯୁକ୍ତ ଟି.ଏ ଡି.ଏ ନେଇ ଏକ ପଞ୍ଚତାରକା ହୋଟେଲର ଶୀତତାପ ନିୟନ୍ତ୍ରିତ ପ୍ରକୋଷ୍ଠରେ ବସି ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ସମାପନାନ୍ତେ ନିଜର ସାତ ପୃଷ୍ଠା ବ୍ୟାପୀ ମତାମତ ଏକମାସ ମଧ୍ୟରେ ପେଶ୍ କରିଥିଲେ ।

ସେମାନଙ୍କ ମତର ସାରମର୍ମ ଥିଲା, କୁକୁରର ନାମ ପରିବର୍ତ୍ତନ କରିବା ସବୁଠୁ ସମୀଚୀନ ପ୍ରସ୍ତାବ । ଯଦି କୁକୁର ଅନ୍ୟ କୌଣସି ନାମ ଗ୍ରହଣ କରିବାକୁ ଅମଙ୍ଗ ହେଉଛି, ତାକୁ ବିଶିଷ୍ଟ ପଶୁ ମନୋବୈଜ୍ଞାନିକଙ୍କ ତତ୍ତ୍ୱାବଧାନରେ ମାନସିକ ଚିକିତ୍ସା କରାଯାଉ ।

ମୁଖ୍ୟମନ୍ତ୍ରୀ ରିପୋର୍ଟଟିକୁ ପଢ଼ି ଫାଇଲ୍ ତଳେ ଚାପି ଦେଇଥିଲେ । ଏବଂ ତାହା ଅନ୍ୟାନ୍ୟ ଅନେକ ଚାପି ହୋଇପଡ଼ିଥିବା ଫାଇଲ୍ ଭଳି ଭଳି ନିଷ୍କ୍ରିୟ ହୋଇଯିବ ବୋଲି ଆଶା ରଖିଥିଲେ । ମାତ୍ର ତାହା ହେଲାନାହିଁ । ଅଚାନକ ଗୋୟେନ୍ଦା ବିଭାଗ ପୁଣି ଏକ ଚାଞ୍ଚଲ୍ୟକର ଖବର ଦେଲେ ଏବଂ ତାହା ହେଲା ଏଇ ଘଟଣାକୁ ନେଇ ଆତ୍ମାହୁତି ଧମକ ଦେଇଥିବା ଶ୍ରୀମାନ ପବନ ଦାସ ବିରୋଧୀଦଳ ନେତାଙ୍କ ସହ ସାମିଲ୍ ହୋଇଯାଇଛନ୍ତି ।

ମୁଖ୍ୟମନ୍ତ୍ରୀ ପଚାରିଲେ– ସେମାନେ କ'ଣ କରିବେ ବୋଲି ବିଚାରୁଛନ୍ତି ।

ଗୋୟେନ୍ଦା ବିଭାଗ ମୁଖ୍ୟ କହିଲେ– ଏଇ ଘଟଣାକୁ ଇସ୍ୟୁକରି ସେମାନେ ଆନ୍ଦୋଳନ ଆରମ୍ଭ କରିଦେଇପାରନ୍ତି ।

ମୁଖ୍ୟମନ୍ତ୍ରୀ ପଚାରିଲେ– କାହିଁକି ? ରାଜ୍ୟରେ କ'ଣ ଇସ୍ୟୁର ଅଭାବ ହୋଇଛି ଯେ ଏଇ ସାମାନ୍ୟ କଥାକୁ ନେଇ ଆନ୍ଦୋଳନ ହେବ ?

ଗୋୟେନ୍ଦା ମୁଖ୍ୟ କହିଲେ– ସାର୍! ରାଜ୍ୟରେ ବନ୍ୟା, ବାତ୍ୟା, ମରୁଡ଼ି, ଦାରିଦ୍ର୍ୟ, ଦୁର୍ନୀତି ଭଳି ସବୁ ଇସ୍ୟୁ ଭରି ରହିଛି । ମାତ୍ର ଏସବୁ ଏତେ ଦିହଘଷରା ହେଇଗଲାଣି ଯେ ସାଧାରଣ ଜନତା ଆନ୍ଦୋଳନ ଡାକରାକୁ ଆଡ଼ ଆଖିରେ ଚାହୁଁନାହାନ୍ତି । ଲୋକଙ୍କର ଲୋଡ଼ା ନୂଆ ଗୋଟେ ଇସ୍ୟୁ । ଯାହା ମନେ ହେଉଛି ଏଇ ଇସ୍ୟୁଟା ବେଶ୍ ଅଭିନବ ଅଛି ଓ ଲୋକେ ଆକୃଷ୍ଟ ହୋଇପାରନ୍ତି ।

ମୁଖ୍ୟମନ୍ତ୍ରୀ ଭାଙ୍ଗିପଡ଼ିଲେ ।

ସେ ଏତେ ଶୀଘ୍ର ଭାଙ୍ଗି ପଡ଼ନ୍ତି ନାହିଁ । ରାଜ୍ୟରେ ଅନେକ କଥା ଆସିଛି, ବାତ୍ୟା ଆସିଛି, ମରୁଡ଼ି ଆସିଛି, ସେ ଭାଙ୍ଗି ପଡ଼ିନାହାନ୍ତି । ତାଙ୍କ ସରକାର ସଂଖ୍ୟାଲଘୁ ହୋଇଯାଇଛି । ସେ ଭାଙ୍ଗିପଡ଼ିନାହାନ୍ତି । ତାଙ୍କ ମନ୍ତ୍ରିମଣ୍ଡଳର ଅର୍ଦ୍ଧେକ ସଦସ୍ୟ ଦୁର୍ନୀତି ଅଭିଯୋଗରେ ଭିଜିଲାନ୍ସ ଜାଲରେ ପଡ଼ିଛନ୍ତି, ସେ ଭାଙ୍ଗିପଡ଼ି ନାହାନ୍ତି । ରାଜ୍ୟରେ ଅନେକ ଆନ୍ଦୋଳନ ମୁଣ୍ଡଟେକିଛି ସେ ଭାଙ୍ଗିପଡ଼ି ନାହାନ୍ତି । କିନ୍ତୁ ଏବେ କାହିଁକି କେଜାଣି ତାଙ୍କୁ ଭାରି ଡର ଲାଗିଲା ।

ସେ ବେଶ୍ ଭାରି ଗଳାରେ କହିଲେ– କ'ଣ କରିବା ବୋଲି କହୁଛନ୍ତି ?

ଗୋୟେନ୍ଦା ମୁଖ୍ୟ କହିଲେ– 'ଏକ୍ସପର୍ଟ କମିଟି ଯେଉଁ ରିପୋର୍ଟ ଦେଇଛନ୍ତି ତାକୁ ଆଧାର କରି କୁକୁରର ନାମ ପରିବର୍ତ୍ତନ କରାଯାଉ ।

ମୁଖ୍ୟମନ୍ତ୍ରୀ କହିଲେ– କିନ୍ତୁ କୁକୁର ନାମ ପରିବର୍ତ୍ତନ କରି କ'ଣ ନୂତନ ନାମ ରଖିବା । ଯାହା ନାମ ଦେଲେ ବି ସେଇ ନାଆଁରେ କିଏ ଗୋଟେ ଥିବ ଓ ସେ ପୁଣି ଆସି ଅଭିଯୋଗ ବାଢ଼ିବ ।

ଗୋୟେନ୍ଦା ମୁଖ୍ୟ କ୍ଷଣେ ଚିନ୍ତା କଲେ ।

କହିଲେ– ଆମେ ତାକୁ ମଣିଷର ନାମ ଦେବା ନାହିଁ ସାର୍! ଅନ୍ୟ ଯେ କୌଣସି ନାମ ଦେଇଦେବା ।

ମୁଖ୍ୟମନ୍ତ୍ରୀଙ୍କ ମୁହଁ ଉଜ୍ଜ୍ୱଳ ଦିଶିଲା । ଗୋୟେନ୍ଦା ମୁଖ୍ୟଙ୍କ ପ୍ରସ୍ତାବ ତାଙ୍କୁ ଯୁକ୍ତିସଂଗତ ଓ ସମୟୋପଯୋଗୀ ମନେହେଲା । ସେ ପ୍ରଶଂସାରେ କାର୍ପଣ୍ୟ କଲେ ନାହିଁ ।

କହିଲେ– ଉତ୍ତମ! ଅତି ଉତ୍ତମ ପ୍ରସ୍ତାବ । ଆପଣ ଦୁଇ ଚାରିଟା ନାମରେ ପରାମର୍ଶ ଦିଅନ୍ତୁ । ଯାହା କେବେ କୌଣସି ମଣିଷର ହୋଇ ନ ଥିବ କିମ୍ବା ଭବିଷ୍ୟତରେ ମଧ୍ୟ କୌଣସି ମଣିଷର ହେବନାହିଁ ।

ଗୋୟେନ୍ଦା ବିଭାଗର ମୁଖ୍ୟ ଚିନ୍ତିତ ଓ ଭାରାକ୍ରାନ୍ତ ଦିଶିଲେ । ସେ ଅନେକ ଗୁଡ଼ିଏ ଭାବିଗଲେ । ମାତ୍ର କିଛି ଥଳକୂଳ ମିଳିଲାନି । ମଣିଷର ନାମ ହୋଇ ନ ଥିବ କିମ୍ବା ଭବିଷ୍ୟତରେ କୌଣସି ମଣିଷ ସେଇ ନାମ ନେଇ ପାରିବନି । କ'ଣ ହୋଇପାରେ ଶବ୍ଦଟା ? କ'ଣ ହୋଇପାରେ ନାମଟା ?

ଭାରାକ୍ରାନ୍ତ ମନ ନେଇ ସେ ଘରକୁ ଗଲେ ଓ ତାଙ୍କଠୁଁ ସବୁକଥା ଶୁଣି ପତ୍ନୀ ଓ ପିଲାମାନେ ମଧ୍ୟ ଚିନ୍ତାମଗ୍ନ ହେଲେ । ଏହା ଏକ ଜାତୀୟ ସମସ୍ୟା ଥିଲା । ତେଣୁ ସେଥିରେ ସାମିଲ ହେବାପାଇଁ ପତ୍ନୀ ନ୍ୟାୟୋଚିତ ଭାବରେ ହକଦାର ଥିଲେ । ସେ ନାମ ଖୋଜିବାକୁ ଲାଗିଲେ । ସମସ୍ତ ସମ୍ଭାବ୍ୟ ନାମକୁ ପରଖିଲେ । କ'ଣ ସେଇ ନାମଟି ଯାହା କେବେ ବି କୌଣସି ମଣିଷ ରଖିପାରିବ ନାହିଁ । କ'ଣ ସେଇ ନାମଟି ? କ'ଣ ? କ'ଣ ? କ'ଣ ?

ରାତିପାହି ସକାଳ ହେଲା । ସକାଳ ପୁଣି ହେଲା ସନ୍ଧ୍ୟା । ଘରେ ବାପା ମା' ପୁଅ ଝିଅ ବସି ରହି କେବଳ ଚିନ୍ତା କରୁଥିଲେ । ମାତ୍ର କୌଣସି ସିଦ୍ଧାନ୍ତରେ ପହଞ୍ଚିପାରୁ ନ ଥିଲେ ।

ସନ୍ଧ୍ୟା ବେଳକୁ ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ ଫୋନ୍ ଆସିଲା ।

ମୁଖ୍ୟମନ୍ତ୍ରୀ ନିଜେ ଫୋନ୍ କରିଥିଲେ ।

ପଚାରିଲେ– ଆପଣ ଦିନସାରା କୁଆଡ଼େ ଗଲେ ?

ମୁଖ୍ୟମନ୍ତ୍ରୀଙ୍କ ସ୍ୱରରେ ମାଖି ହୋଇ ରହିଥିଲା ବିରକ୍ତି ।

ଗୋୟେନ୍ଦା ମୁଖ୍ୟ କହିଲେ– ମୁଁ ଡିୟୁଟି ଉପରେ ଅଛି ସାର୍ !

ମୁଖ୍ୟମନ୍ତ୍ରୀ ପଚାରିଲେ – ଡିୟୁଟି ଉପରେ ? ଘରେ ବସି କି ଡିୟୁଟି କରୁଛନ୍ତି ଆପଣ ?

– ଦିନସାରା ମୁଁ ଭାବୁଚି ସାର୍ !

– କ'ଣ ଭାବୁଛନ୍ତି ?

– ଭାବୁଚି କ'ଣ ନାମ ଦିଆଯିବ କୁକୁରର !

– ଆଉ ଭାବନ୍ତୁ ନାହିଁ ।

– କାହିଁକି ସାର୍ !

– ନାମ ମିଳିସାରିଲାଣି ।

– ନାମ ମିଳିସାରିଲାଣି !

– ହଁ ! ନାମ ମିଳିଗଲା !

– କୋଉ ଗୁଣୀଜ୍ଞାନୀ ଏ ଅସାଧ୍ୟ ସାଧନ କରିପାରିଲା ସାର୍ !

– କିଏ ଆଉ ? ଆମ ରୋଷେଇଆ । ସେ ନାମଟା ପ୍ରସ୍ତାବ ଦେଲା ଓ ମୁଁ ତାକୁ ପସନ୍ଦ କଲି ।

– କେଉଁ ନାମ ସ୍ଥିର ହେଲା ସାର୍ !

– ଆପଣ ତୁରନ୍ତ ଆସନ୍ତୁ । ଆସିଲେ ଜାଣିବେ ।

ମୁଖ୍ୟମନ୍ତ୍ରୀ ଫୋନ୍ ରଖିଦେଲେ ।

ଗୋଯେନ୍ଦା ମୁଖ୍ୟ ରାଗିଗଲେ ଭିତରେ ଭିତରେ । ମାତ୍ର କ୍ରୋଧ ପ୍ରକାଶ କଲେ ନାହିଁ । ଭାବିଲେ ଯଦି ସମ୍ଭବ ହୁଅନ୍ତା ତେବେ ସେ ରୋଷେଇଆକୁ ଗୁଳିମାରି ଉଡ଼େଇ ଦିଅନ୍ତେ । ତାଙ୍କ ପରି ଉଚ୍ଚ ପଦବୀଧାରୀ ସାରାରାତି ସାରାଦିନ ଭାବି ଭାବି ବିତାଇ ଦେଲା ଅଥଚ ଆଇଡ଼ିଆଟା ଆସି ଓହ୍ଲାଇଲା ରୋଷେଇଆର ମଗଜରେ ।

ସେ ଘର ଭିତରେ ଚିତ୍କାର କରି କହିଲେ– ଥାଉ ହେ ଥାଉ ! ଆଉ କେହି କୌଣସି ଚିନ୍ତା କରନାହିଁ । ସିଆଡ଼େ ନାମ ମିଳିସାରିଲାଣି । ଉଠ ! ଯାଅ ! ରୋଷେଇବାସ କର । ଖାଅ, ପିଅ, ସାଷ୍ଟମ ହୁଅ ।

ପତ୍ନୀ ଅସନ୍ତୁଷ୍ଟ ହେଲେ । ଯେମିତିକି ଏଇ ଭାବିବାଟା ଯୋଗ୍ୟ କର୍ମଟିଏ ଥିଲା । ଉଠିବା, ରୋଷେଇ ଘରକୁ ଯିବା ବା ଖାଇବା ପିଇବା ନ୍ୟୁନ ଧରଣର କାର୍ଯ୍ୟ ।

ପତ୍ନୀ ପଚାରିଲେ– କ'ଣ ତେବେ ସ୍ଥିର ହେଲା ନାମଟା ?

ଗୋଯେନ୍ଦା ମୁଖ୍ୟ କହିଲେ– ସେ କଥା ମୁଁ କେମିତି ଜାଣିଲି ? ସାର୍ ଜାଣିଥିବେ । ପତ୍ନୀ ମୁହଁ ଛିଞ୍ଚାଡ଼ି କହିଲେ– ତୁମେ ଏତେ ସମୟ ଧରି ତାଙ୍କ ସାଙ୍ଗରେ କଥା ହେଲଟି । ପଚାରି ବୁଝିଲନି ।

ଗୋଯେନ୍ଦା ମୁଖ୍ୟ କହିଲେ– ମୁଁ ପଚାରିଥିଲି । କିନ୍ତୁ ସେ କହିଲେନି । ଏଥିରେ ମୁଁ କ'ଣ କରିବି ?

ପତ୍ନୀ ଆହୁରି ଅଖୁସୀ ଓ ବିରକ୍ତିର ସ୍ୱରରେ କହିଲେ– ତୁମ ଦ୍ୱାରା କୋଉ କାମଟା ଆଉ ଠିକ୍ ଭାବରେ ହେଲା କି ?

ଗୀତରେ ଯେମିତି ଗୋଟାଏ ଘୋଷା ଥାଏ ତାହା କେଇ ପଦ ପରେ ବାରମ୍ବାର ଆସିଥାଏ, ସେମିତି ପତ୍ନୀଙ୍କର ଏଇ ଶେଷ ଡାଇଲଗ୍‌ଟି ବାରମ୍ବାର ଆସିଥାଏ ସବୁ ଆଲୋଚନା ବା କଥାର ମଝିରେ ମଝିରେ । ଗୋଯେନ୍ଦା ମୁଖ୍ୟ ବୁଝିପାରନ୍ତି ଏଇ ଘୋଷାଟି ଆସିଗଲା ପରେ କଥୋପକଥନକୁ ଶେଷ କରି ଦେବାକୁ ହେବ ଓ ପୁଣିଥରେ ଅନ୍ୟ ସମୟରେ ଅନ୍ୟ ପ୍ରସଙ୍ଗରେ ଏଇ ଘୋଷାଟି ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ ।

ଗୀତରେ ଘୋଷା ଆସିଗଲେ ଯେମିତି ପରବର୍ତ୍ତୀ ପଦଟି ଆସିବା ପର୍ଯ୍ୟନ୍ତ କେବଳ କିଛି ସମୟ ପାଇଁ ବାଦ୍ୟଯନ୍ତ୍ର ବାଜେ, ସେମିତି ଭାଷଣରେ ଏଇ ଘୋଷାଟି ଆସିଗଲା ପରେ ସେ ନିରବ ହୋଇଯାଆନ୍ତି, ଘରସାରା ନିରବତା ଛାଇଯାଏ କିଛି ସମୟ ।

ଗୋଯେନ୍ଦା ମୁଖ୍ୟ ଉଠିଲେ । ବାଥ୍‌ରୁମ୍‌କୁ ଗଲେ । ଫ୍ରେସ୍ ହେଲେ । ପୋଷାକପତ୍ର ପିନ୍ଧିଲେ ଓ ସିଧା ମୁଖ୍ୟମନ୍ତ୍ରୀଙ୍କ ବାସଭବନ ଦିଗରେ ବାହାରିଗଲେ ।

ମୁଖ୍ୟମନ୍ତ୍ରୀଙ୍କ ବାସଭବନରେ କୁକୁରର ନାମ ପରିବର୍ତ୍ତନ ପ୍ରକ୍ରିୟା ଆରମ୍ଭ ହୋଇଯାଇଥିଲା । ବାସଭବନର ଲନ୍‌ରେ କୁକୁର ଗୋଟେ ଚେୟାରରେ ବସି ରହିଥିଲା ।

ତା' ସାମ୍ନାରେ ବିପୁଳ ପରିମାଣରେ ଆମିଷ ଜାତୀୟ ଖାଦ୍ୟ ଥୁଆ ହୋଇଥିଲା । ତା'ର ଦୁଇ ପାଖରେ ଦୁଇ ଜଣ ବରିଷ୍ଠ ପଶୁଡାକ୍ତର ଠିଆ ହୋଇଥିଲେ । ଜଣେ ବିଶିଷ୍ଟ ପଶୁ ମନସ୍ତତ୍ତ୍ୱବିଦ୍ ଆଖିବୁଜି କ'ଣ ଚିନ୍ତା କରୁଥିଲେ । ସଚିବ ଠିଆ ହୋଇଥିଲେ ମୁଖ୍ୟମନ୍ତ୍ରୀଙ୍କ ପଛରେ ଓ ସମସ୍ତଙ୍କ କାର୍ଯ୍ୟକୁ ପର୍ଯ୍ୟାୟକ୍ରମେ ଚାହୁଁଥିଲେ ।

ମୁଖ୍ୟମନ୍ତ୍ରୀ ବୁଝାଉଥିଲେ– ମୁଁ ଜାଣେ, ତୋର ପବନ ନାମଟି ପ୍ରିୟ । ଏବଂ ତୁ ଏଇ ନାମଟିକୁ ଛାଡ଼ିବାକୁ ପ୍ରସ୍ତୁତ ନୋହୁଁ । ମାତ୍ର କ'ଣ କରିବା ? ଦେଶ ପାଇଁ, ଜାତି ପାଇଁ ଏଇତକ ସାମାନ୍ୟ ତ୍ୟାଗ କରିବାକୁ ପଡ଼ିବ । ନୋହିଲେ ସବୁ ଭାଙ୍ଗି ଛାରଖାର ହୋଇଯିବ । ତା'ଛଡ଼ା ଆଉ ଉପାୟ କ'ଣ ଅଛି । ସେକ୍ସପିଅର ପରା କହିଛନ୍ତି ଗୋଲାପର ନାମ ଗୋଲାପ ନ ହୋଇ ଆଉ ଯାହା ହୋଇଥିଲେ ବି ଭଲ ଲାଗିଥାନ୍ତା । ମୁଁ ମଧ୍ୟ ବିଭିନ୍ନ ସଭାସମିତିରେ କହିଛି ମହାତ୍ମାଗାନ୍ଧୀଙ୍କ ନାମ ଗାନ୍ଧୀ ନ ହୋଇ ଆଉ ଯାହା ହୋଇଥିଲେ ବି ସେ ଦେଶ ପାଇଁ ସ୍ୱାଧୀନତା ଆଣିଥାନ୍ତେ ଓ ଜାତିର ଜନକ ହୋଇଥାନ୍ତେ ।

ମୁଁ ତୋ ସାମ୍ନାରେ ଡିକ୍ସନାରୀ । ସବୁ ଓଡ଼ିଆ ଶବ୍ଦ ପଢ଼ିଛି, କିନ୍ତୁ ତୋର କୌଣସି ଶବ୍ଦ ପସନ୍ଦ ହୋଇନାହିଁ । ଶେଷରେ ପବନ ନାମ ପାଖରେ ତୁ ସମ୍ମତି ଜଣାଇଲୁ ଓ ତୋର ନାମ ପବନ ହେଲା । ଏବେ ଏଇ ନାମକୁ କେନ୍ଦ୍ରକରି ସଂକଟ ସୃଷ୍ଟି ହୋଇଛି ଓ ସରକାର ଭାଙ୍ଗିଯିବାର ସମ୍ଭାବନା ଦେଖାଦେଇଛି । ଏକ୍ସପର୍ଟ କମିଟିର ମତ ଅନୁସାରେ ତୋର ନାମ ବଦଳାଇବାକୁ ପଡ଼ିବ ଓ ମୋର ବିଶ୍ୱାସ ତୁ ନାମ ପରିବର୍ତ୍ତନକୁ ସ୍ୱାଗତ କରିବୁ । ଆଜିଠୁଁ ତୋର ନୂତନ ନାମ ହେଲା... ।'

ମୁଖ୍ୟମନ୍ତ୍ରୀ ଟିକେ ଅଟକିଗଲେ ।

କୁକୁର ପ୍ରଶ୍ନୀଳ ଦୃଷ୍ଟିରେ ତାଙ୍କୁ ଚାହିଁଲା ।

ସମବେତ କର୍ମଚାରୀ, ବିଶେଷଜ୍ଞ, ଚିକିତ୍ସକ ତଥା ଅଧିକାରୀଗଣ ଉତ୍ସୁକ ଦିଶିଲେ ।

ମୁଖ୍ୟମନ୍ତ୍ରୀ କହିଲେ– ବହୁ ବିଚାର ବିମର୍ଶ ପରେ ଏଇ ନାମ ଆମେ ପାଇଛୁ । ଆମେ ବିଶ୍ୱାସ କରୁଛୁ ଯେ ଏଇ ନାମଟିକୁ କେବେ କୌଣସି ମଣିଷ ନେବ ନାହିଁ ଓ ଭବିଷ୍ୟତରେ ଏଇ ଧରଣର ପରିସ୍ଥିତି ସୃଷ୍ଟି ହେବନାହିଁ । ତୁମେ ଏଇ ନାମ ଧାରଣ କରି ଜୀବନର ଶେଷ ପର୍ଯ୍ୟନ୍ତ ସୁଖରେ ଜିଇ ପାରିବ । ତୁମର ନୂତନ ନାମ ହେଲା... ।

କୁକୁର ଅସନ୍ତୁଷ୍ଟ ଦିଶିଲା । ତା'ର ନିଶ ଫୁଲି ଉଠିଲା । ଆଖି ବଡ଼ ବଡ଼ ହୋଇଗଲା । କାନ ଗୋଜିଆ ହୋଇ ଆସିଲା । ସେ ପାଟି ଆଁ କଲା । ତା'ର ବିକଟାଳ ଦାନ୍ତସବୁ ଦେଖାଇଲା । ସେ ମୁଣ୍ଡ ଦୋହଲାଇଲା । ଅର୍ଥାତ୍ ଏ ପ୍ରସ୍ତାବରେ ସେ ଏକମତ ନୁହେଁ ।

ମୁଖ୍ୟମନ୍ତ୍ରୀ ଆଉ କ'ଣ କହିବାକୁ ଯାଉଥିଲେ । ଆଉ କ'ଣ ସବୁ ବୁଝାଇବାକୁ ଚାହୁଁଥିଲେ ।

ମାତ୍ର ତାଙ୍କୁ ତଥା ସମସ୍ତଙ୍କୁ ବିସ୍ମିତ କରି କୁକୁର ଏକ ଦୀର୍ଘ ଲମ୍ଫ ଦେଲା ଓ ମୁଖ୍ୟମନ୍ତ୍ରୀଙ୍କ ବାସଭବନର ପାଚେରୀ ଡେଇଁ ବାହାରେ ପଡ଼ିଲା । ସେ ଏପରି ହଠାତ୍ ଡେଇଁ ପଡ଼ିବ ବୋଲି କାହାରି ଅନୁମାନରେ ମଧ୍ୟ ନ ଥିଲା ଏବଂ ତାହା ଅସମ୍ଭବ ବି ଥିଲା ।

ଅଧିକାରୀଗଣ ବ୍ୟାକୁଳ ହୋଇ ଗେଟ୍ ଖୋଲି ବାହାରକୁ ଦୌଡ଼ି ଆସିଲେ । ମାତ୍ର ସେଠାରେ କୋଉଠି ହେଲେ କୁକୁରର ପତ୍ତା ନ ଥିଲା ।

ଏହାପରେ କୁକୁରକୁ ଖୋଜିବାକୁ ବହୁତ ଉଦ୍ୟମ କରାଯାଇଥିଲା । ମାତ୍ର ସବୁ ବିଫଳ ହେଲା । ତା'ର କୌଣସି ସନ୍ଧାନ ମିଳିଲା ନାହିଁ । ତେବେ ସ୍ଥାନୀୟ ଖବରକାଗଜ ମାନଙ୍କରେ ବିଜ୍ଞାପନ ପ୍ରକାଶ ପାଇଥିଲା ଯେ ମୁଖ୍ୟମନ୍ତ୍ରୀଙ୍କ ପ୍ରିୟ କୁକୁରଟି ହଜି ଯାଇଛି । ସନ୍ଧାନ ଦେଲେ ଉପଯୁକ୍ତ ପୁରସ୍କାର ଦିଆଯିବ । ତେବେ ଉକ୍ତ ବିଜ୍ଞାପନରେ କୁକୁର ନାମ ପ୍ରକାଶ ପାଇ ନ ଥିଲା । ବିରୋଧୀଦଳ ପକ୍ଷରୁ ଆୟୋଜିତ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମକୁ ବାତିଲ କରିଦିଆଗଲା, ରାଜ୍ୟରେ କିଛି ବସ୍ ପୋଡ଼ା ହେବାରୁ, କିଛି ଲୋକ ଲାଠିମାଡ଼ରୁ, କିଛି ସରକାରୀ କାର୍ଯ୍ୟାଳୟ ଭଙ୍ଗାରୁଜା ହେବାରୁ ରକ୍ଷା ପାଇଗଲେ । ଏହି ପ୍ରସଙ୍ଗକୁ ଲୋକଲୋଚନକୁ ଆଣିଥିବା, 'କୁକୁର ବଡ଼ ନା ମଣିଷ ବଡ଼' ସ୍ଲୋଗାନ ଦେଇଥିବା ଶ୍ରୀମାନ ପବନ ସ୍ୱସ୍ଥାନକୁ ଫେରିଗଲେ । ତେବେ ଯେଉଁ କତିପୟ ଯୁବକ ନିଜ ନାମ ପରିବର୍ତ୍ତନ କରି ପବନ ରଖିଥିଲେ ବୋଲି ଗୋୟେନ୍ଦା ରିପୋର୍ଟ ମିଳିଥିଲା, ସେମାନଙ୍କ ସଂପର୍କରେ ଆଉ କୌଣସି ରିପୋର୍ଟ ଗୋୟେନ୍ଦା ଫାଇଲରେ ଉଠି ନ ଥିଲା ।

ଯଦିଓ ରାଜ୍ୟରେ ପୂର୍ବପରି ବନ୍ୟା, ବାତ୍ୟା ଓ ମରୁଡ଼ି ଲାଗି ରହିଥିଲା, ଦାରିଦ୍ର୍ୟ ଓ ଦୁର୍ନୀତି ବ୍ୟାପୀ ରହିଥିଲା ଓ ସଚିବାଳୟରେ ଫାଇଲ୍ ସଂଖ୍ୟା ବଢ଼ିବାରେ ଲାଗିଥିଲା, ପ୍ରାୟତଃ ମୁଖ୍ୟମନ୍ତ୍ରୀଙ୍କ କୁକୁର ସମ୍ପର୍କରେ ଆଲୋଚନା ହେଉ ନ ଥିଲା । ଚା'ଖଟିରେ ଅନ୍ୟ ପ୍ରସଙ୍ଗ ସବୁ ସ୍ଥାନ ଅଧିକାର କରି ନେଇଥିଲା । ଯଦିଓ ଜଣେ ଅଧେ ତଥ୍ୟାଭିଜ୍ଞ ସାମ୍ବାଦିକ ମୁଖ୍ୟମନ୍ତ୍ରୀଙ୍କ ଭୁଲ୍ ନିଷ୍ପତ୍ତିର ସମାଲୋଚନା କରି ଲେଖୁଥିଲେ ଯେ ତାଙ୍କ ପ୍ରିୟ କୁକୁରଟି ନ ଥିବାରୁ ମୁଖ୍ୟମନ୍ତ୍ରୀ ଠିକ୍ ନିଷ୍ପତ୍ତି ନେଇପାରୁ ନାହାନ୍ତି । ସାଧାରଣ ଜନତା ତାକୁ ଗୁରୁତ୍ୱର ସହିତ ନେଇ ନ ଥିଲେ ।

ଆପାତତଃ କୁକୁରର କାହାଣୀ ଲୋକମାନେ ଭୁଲିବାକୁ ଆରମ୍ଭ କରିଥିଲେ । ଭୁଲିଯିବା ଉଚିତ ଥିଲା । କାରଣ ଲୋକମାନେ ମନେ ରଖିଛନ୍ତି ବୋଲି ଖବର ପାଇଲା ମାତ୍ରେ ଖବରକାଗଜର ସାମ୍ବାଦିକମାନେ 'କୁକୁର ବିନା ମୁଖ୍ୟମନ୍ତ୍ରୀଙ୍କ ଅବସ୍ଥା', 'କୁକୁରର ଅନ୍ତର୍ଦ୍ଧାନରେ କାହାର ହାତ', 'କୁକୁରର ଅବର୍ତ୍ତମାନରେ ଗୋଟିଏ ମାସ' ଇତ୍ୟାଦ

ପ୍ରଚ୍ଛଦ କାହାଣୀ ପ୍ରସ୍ତୁତ କରି ଖବରକାଗଜର ପୃଷ୍ଠା ଭର୍ତ୍ତି କରିବାର ବ୍ୟାପକ ସମ୍ଭାବନା ଥିଲା । କିଛି ଚିନ୍ତାଶୀଳ ଲୋକ 'ମୁଖ୍ୟମନ୍ତ୍ରୀ କୁକୁର ରଖିପାରିବେ ନାହିଁ', 'କୁକୁରର ନାମକରଣ କିପରି ହେବା ଉଚିତ', 'ଏକ ହଜାର ଏକ କୁକୁର ନାମ' ଇତ୍ୟାଦି ପ୍ରବନ୍ଧ ରଚନାରୁ ତେଣୁ ନିବୃତ୍ତ ହୋଇଥିଲେ ।

ତେବେ କିଛିଦିନ ପରେ ଗୋୟେନ୍ଦା ବିଭାଗ ମୁଖ୍ୟମନ୍ତ୍ରୀଙ୍କୁ ଏକ ଗୋପନ ତଥା ଚାଞ୍ଚଲ୍ୟକର ସମ୍ବାଦ ଦେଲେ । ସମ୍ବାଦଟି ଏହିପରି ଯେ ରାଜ୍ୟରେ ଜଣେ ଲୋକ ଗୋଟେ କୁକୁର ପାଳିଛି, ଯାହାର ନାମ ଦେଇଛି 'ପ୍ରତାପ ସିଂ' ।

ମୁଖ୍ୟମନ୍ତ୍ରୀ କହିଲେ– ପାଳୁ ! ଆମର କ'ଣ ଗଲା ?

ସଚିବ ବୁଝାଇଲେ– ସାର୍ ! ବିରୋଧୀଦଳବାଲା ଇସ୍ୟୁ କରିଦେଇପାରନ୍ତି ।

ଖବରକାଗଜବାଲା ମୁଖ୍ୟ ସମ୍ବାଦ କରିଦେଇପାରନ୍ତି ।

ମୁଖ୍ୟମନ୍ତ୍ରୀ ପଚାରିଲେ– କିପରି ?

ସଚିବ ବୁଝାଇଲେ– ବିରୋଧୀଦଳ ବାଲା ପ୍ରଚାର କରିଦେଇପାରନ୍ତି ଯେ ରାଜ୍ୟବାସୀ ଏତେ ବୀତସ୍ପୃହ ହେଲେଣି ମୁଖ୍ୟମନ୍ତ୍ରୀଙ୍କ ଉପରେ ଯେ ସେମାନେ ତାଙ୍କ ନାମରେ କୁକୁର ବି ପାଳିଲେଣି । ସମ୍ବାଦପତ୍ରବାଲା ମୁଖ୍ୟ ସମ୍ବାଦ କରିଦେଇପାରନ୍ତି, "ମୁଖ୍ୟମନ୍ତ୍ରୀଙ୍କ ନାମରେ କୁକୁର ପାଳନ" । ଏହା ଦ୍ୱାରା ଆପଣଙ୍କ ସମ୍ମାନ, ଲୋକଚକ୍ଷୁରେ ଆପଣଙ୍କ ଇମେଜ୍ କ'ଣ ହେବ ଭାବି ପାରୁଛନ୍ତି ତ ?

ମୁଖ୍ୟମନ୍ତ୍ରୀ ଅସହାୟ ଦିଶିଲେ ।

ପଚାରିଲେ– କ'ଣ କରିବା ତେବେ ?

ଗୋୟେନ୍ଦା ମୁଖ୍ୟ କହିଲେ– ସେ କୁକୁରର ମାଲିକକୁ ଧରିଆଣିବାକୁ ହେବ । ତାକୁ ବାଧ୍ୟ କରିବାକୁ ହେବ ଯେ ସେ କୁକୁରର ନାମ ପରିବର୍ତ୍ତନ କରୁ । ଏ ସମ୍ପର୍କରେ ବାହାରେ ପ୍ରଘଟ ହେବା ପୂର୍ବରୁ, ସାମ୍ବାଦିକମାନେ ସୂଚନା ପାଇବା ପୂର୍ବରୁ ନାମ ପରିବର୍ତ୍ତନ ହେବା ନିହାତି ଜରୁରୀ ।

ମୁଖ୍ୟମନ୍ତ୍ରୀ ସମ୍ମତି ଜଣାଇଲେ– ଠିକ୍ ଅଛି । ତାହା ହିଁ ହେଉ ।

କୁକୁର ପାଳକକୁ ଧରି ଅଣାଗଲା ମୁଖ୍ୟମନ୍ତ୍ରୀଙ୍କ ସାମ୍ନାକୁ । ଗୋୟେନ୍ଦା ବିଭାଗ ମୁଖ୍ୟ ତାକୁ ସବୁ ବୁଝାଇଲେ, ତାକୁ ନାନା ଧମକଚମକ ବି ଦିଆଗଲା । ସେ ଥିଲା ରାଜ୍ୟର ଜଣେ ସ୍ୱଳ୍ପ ବେତନଭୋଗୀ କର୍ମଚାରୀ ।

ଶେଷରେ ଲୋକଟି କାନ୍ଦୁଣୁ ମାନ୍ଦୁଣୁ ହୋଇ କହିଲା– ଆଜ୍ଞା ! ମୁଁ ତାକୁ ବହୁ ପ୍ରକାର ନାମ ଦେଇଛି । କିନ୍ତୁ ସେ ଶୁଣୁନାହିଁ । ତାକୁ ଦିନେ ପ୍ରତାପ ସିଂ ବୋଲି କହିଲି, ସେ ଶୁଣିଲା, ଡେଇଁଲା, କୁଦିଲା । ଏପରିକି ହସିଲା । ଆପଣ ହୁଏତ ବିଶ୍ୱାସ କରିବେନି । କିନ୍ତୁ ସେଇ ନାମ ଛଡ଼ା ସେ ଅନ୍ୟ କୌଣସି ନାମ ନେବା ପାଇଁ ରାଜି ନୁହେଁ ।

ମୁଖ୍ୟମନ୍ତ୍ରୀ କହିଲେ– ଆଶ୍ଚର୍ଯ୍ୟ! ଆପଣଙ୍କ କୁକୁର ତ ବେଶ୍ ବିଜ୍ଞ! ମୁଁ ତାକୁ ଦେଖିବାକୁ ଚାହେଁ।

କୁକୁର ଧରା ହେଇ ମୁଖ୍ୟମନ୍ତ୍ରୀଙ୍କ ସାମ୍ନାକୁ ଆସିଲା।

କୁକୁରକୁ ଦେଖି ମୁଖ୍ୟମନ୍ତ୍ରୀ ଚମକି ପଡ଼ିଲେ। କାରଣ ସେ କୁକୁରଟିକୁ ଚିହ୍ନି ପାରିଥିଲେ। ଏ ଥିଲା ସେଇ କୁକୁର। ଯିଏ ଏକଦା ତାଙ୍କର ପୋଷା ଥିଲା। ନାମ ଥିଲା 'ପବନ' ଏବଂ ସେ ସେଇ ନାମ ଛଡ଼ା ଅନ୍ୟ କୌଣସି ନାମ ଗ୍ରହଣ କରୁ ନଥିଲା। ଏବେ କିନ୍ତୁ ତା'ର ନାମ ହୋଇଛି 'ପ୍ରତାପ ସିଂ'। ଯୋଉ ନାମ ଛଡ଼ା ଅନ୍ୟ କୌଣସି ନାମ ଗ୍ରହଣ କରିବାକୁ ସେ ପ୍ରସ୍ତୁତ ନୁହେଁ ଏବେ।



ସତ୍ୟପ୍ରିୟ ମହାଳିକ

# କ୍ରୋକୋଡ଼ାଇଲ୍

ସେ ଯେତେବେଳେ ଆଖିବୁଜି ଶୋଇ ଯାଇଥିଲା ସେତେବେଳେ ସତ୍ୟଯୁଗ ଥିଲା ଓ ସେ ଉଠିଲା ବେଳକୁ କଳିଯୁଗ ହୋଇ ସାରିଲାଣି । ଏଇ କେତେବର୍ଷ ସେ କୁଆଡ଼େ ଯାଇଥିଲା କେହି ଜାଣନ୍ତିନି । ଖାଲିଯାହା ବାତ୍ୟାର କେତୋଟି ଝଲକ ରହିଯାଇଛି ଲୋକଙ୍କ ଭିତରେ । ସେଥର ପରି ଏଥର ବି ।

ଖାଲି ସୁଁ... ସୁଁ... ଘୁଁ... ଘୁଁ... ଝଡ଼, ବତାସ ଓ ନାହିଁନଥିବା ବର୍ଷା, ବିଜୁଳି ବଜ୍ର । ତା'ଭିତରେ ଉଠୁଚି ପଡୁଛି ଗାଁର କେଇଟି ଘର । ଘର ଆଉ କେଉଁଠି ରହିଲା । ସମୁଦ୍ର ଗିଳିଦେଲା । କିଏ କୁଆଡ଼େ ଭାସିଗଲେ । କିଛି ରହିଲାନି ଚିହ୍ନବର୍ଣ୍ଣ କି ସ୍ମୃତି ହୋଇ ରହିବା ପାଇଁ ଟିକିଏ ହେଲେ ବି ଅତୀତ ।

ଘରେ ବୁଢ଼ାକୁ ଓ ଦି'ହଳ ଛେଳି, ପଟେ ଜାଉଁଳା କବାଟ ଓ ବସ୍ତାଏ କୋଳଥକୁ ଛାଡ଼ି ଆଉ ସମସ୍ତେ ଚାଲି ଯାଇଥିଲେ । ଭଗବାନ ଜାଣନ୍ତି, ସେମାନେ କେତେଦୂର ଯାଇପାରିଥିଲେ । ସାରାରାତି ସାରାଦିନ ପାଣି ଭିତରେ ଉବୁଟୁବୁ ହେଉ ହେଉ ବୁଢ଼ା କେତେବେଳେ କାଠଗଡ଼ ବୋଲି ଭାବି ଗୋଟେ କୁମ୍ଭୀର ପିଠିରେ ବସିଥିଲା । କୁମ୍ଭୀର ତାକୁ ମଝି ସମୁଦ୍ରରେ ନେଇ ଯେତେବେଳେ ପହଞ୍ଚାଇଲା ଓ ତା କଲିଜା ଖାଇବ ବୋଲି ମାଗିଲା, ସେତେବେଳେ ବୁଢ଼ାର ଚୈତନ୍ୟ ଉଦୟ ହେଲା ।

ସମୁଦ୍ର କୂଳରେ ଗାଁ । ପାଣିକୁ, କୁମ୍ଭୀରକୁ, ଝଡ଼ବତାସକୁ ଡରିବାର କଥା କି ? ବୁଢ଼ା କେବେ ଡରେନି । ଛାତିକୁ ପଥର କରି କେତେଥର ସେ ସମୁଦ୍ର ଭିତରକୁ ଯାଇଛି ଡଙ୍ଗା ସାଙ୍ଗରେ । ଏଥର କୁମ୍ଭୀର ପିଠିରେ ସେ ବସିଛି । କୁମ୍ଭୀର ବାପୁଡ଼ା ବଡ଼ ଚତୁର । ସେ କି ବୁଝିବ ବାତ୍ୟାର ହିଂସ୍ରତା । ସେ କି ଜାଣିବ ଘର ବୁଡ଼ାଇଦେଇ ମରଣ ମୁହଁରେ ଭାସି ଯାଉଥିବା କୁଟାଖିଏ ସେ । ବୁଢ଼ା ଗଳା ସଫାକରି କହିଲା; କଲିଜା କାହିଁକି ଖାଇବୁ ? ସେଟା ଫାଲତୁ ଜିନିଷ । ଆଉ ପୁଣି ବୁଢ଼ା ବୟସରେ କଲିଜା ଭିତରେ ଚୋପା ଥିବ । ମରିଲେ ମରିଥାନ୍ତି କୁଟୁମ୍ବ ମେଳରେ । ମୋତେ ଏକାଛାଡ଼ି ଦେଇ ସେମାନେ କୁଆଡ଼େ ଚାଲିଗଲେ । ମୁଁ ତୋତେ କାଠଗଡ଼ ଭାବି ଆଶ୍ରା କରି

ବସିଛି । ତୁ ଖାଇଲେ ଖା' ନ ଖାଇଲେ ମୋତେ ଟିକେ ଶାନ୍ତିରେ ଶୋଇବାକୁ ଦେ । ଥକି ଗଲିଣି ଖୁବ୍ ।

କୁମ୍ଭୀର ଭାବିଲା, ଏ ବୁଢ଼ାର କଲିଜା ଖାଇ ଲାଭ କ'ଣ ? ପାପ ଲାଗିବ । ପୁଣି ବୁଢ଼ାର କଲିଜା କ'ଣ ଛନଛନିଆ କଅଁଳିଆ ଥିବ ? ଖାଲି ଯାହା ଅପବାଦ ମୁଣ୍ଡାଇବି । ମଲା ମୁହଁରେ ବସିଛି । ବସିଥାଉ । ଏ ମାୟା ସଂସାରରେ କେହି କାହାର ନୁହଁନ୍ତି । ଏ ତ ସମୁଦ୍ର ।

କୁମ୍ଭୀର ବୁଢ଼ାକୁ ବ୍ରହ୍ମଜ୍ଞାନ ଶୁଣାଇଲା । ବୁଢ଼ାର ନିଦ ଆହୁରି ଗାଢ଼ ହୋଇ ଯାଇଥିଲା । ବୁଢ଼ା କୁମ୍ଭୀର ପିଠିରେ ଶୋଇ ଯାଇଥିଲା । ତା'ପରେ କୁମ୍ଭୀର ବୁଢ଼ାକୁ ପିଠିରେ ଶୁଆଇ କାହିଁ କେତେ ଆଡ଼େ ଘୂରିଲା । ସାତ ସମୁଦ୍ର, ସତର ଦ୍ୱୀପ, ସତାବନ ନଈ । ବୁଢ଼ା ଶୋଇଯାଇଥିଲା ।

ଏହା ଭିତରେ ବାତ୍ୟା ଆସି ଯାଇ ସାରିଥିଲା ଆଉ ଥରେ ଦୁଇଥର । ସରକାରୀ ଓ ବେସରକାରୀ ସଂସ୍ଥାମାନେ ଗାଡ଼ି ଗାଡ଼ି କମ୍ବଳ, ପଲିଥିନ୍, ଔଷଧ, ରିଲିଫ୍ ଖାଦ୍ୟ ବାସନକୁସନ ଓ ରେଡ଼ିମେଡ଼ ତମ୍ବୁର ଘର ବାଣ୍ଟିଯାଇଥିଲେ । କିଏ ବାପକୁ ହରାଇ ଫେରିଥିଲା; କିଏ ମାଆକୁ, କିଏ ପୁଅ-ଝିଅଙ୍କୁ ତ କିଏ ସ୍ତ୍ରୀକୁ, କିଏ ସ୍ୱାମୀକୁ... ।

ବାତ୍ୟାପରେ ଯେଉଁ କେତେଜଣ ବଞ୍ଚିଯାଇଥିଲେ ସେମାନେ ଫେରିଆସିଲେ ଗାଁକୁ । ଗାଁର ଚିହ୍ନବର୍ଣ୍ଣ ନଥିଲା । ସବୁ ଏକାକାର ହୋଇଯାଇଥିଲା । କୁଢ଼ କୁଢ଼ ଶବ ପଡ଼ୁଥିଲେ । କେହି କାହାର ଆତ୍ମୀୟମାନଙ୍କୁ ଖୋଜୁଥିଲେ । ଶବମାନେ ଆଉ ଫେରି ଆସିବେ କି ସମୁଦ୍ରରୁ ?

ସରକାରୀ, ବେସରକାରୀ ସଂସ୍ଥାମାନେ ଥଇଥାନ କଲେ । ନେତାଜୀମାନେ ଆସିଲେ ଓ ଗଲେ । ଫଟୋ ଉଠାଇଲେ, ଫିତା କାଟିଲେ ଓ ପ୍ରତିଶ୍ରୁତି ଫିଙ୍ଗି ଦେଇଗଲେ । କବିଏ କବିତା ଲେଖିଲେ । ସିନେମା ବାଲାଏ ସିନେମା କଲେ ଓ ଢେର ପଇସା ରୋଜଗାର କଲେ । ମୁଖ୍ୟମନ୍ତ୍ରୀ ଇଂରାଜୀରେ ରିଲିଫ୍ ବାଣ୍ଟି ଦେଇଗଲେ ।

ସବୁ ଶାନ୍ତ ପଡ଼ି ଆସିଲା । ଘାଆସବୁ ଶୁଖି ଆସିଲା ଓ କ୍ଷତ ପୂରିଆସିଲା । ଶ୍ରାଦ୍ଧ କର୍ମରେ ଲଣ୍ଡିତ ମୁଣ୍ଡମାନଙ୍କୁ ଲେଉଟି ଆସିଲେ କଳା କୁଞ୍ଚ କୁଞ୍ଚ କେଶରାଶି । ଘରଭଙ୍ଗା ଟଙ୍କା ପାଇବାକୁ ବ୍ଲକ ଅଫିସ୍ ଦଉଡ଼ି ଦଉଡ଼ି ଓ ଲାଞ୍ଚ ଦେଇ ଦେଇ ହାଲିଆ ହୋଇଗଲେ ଲୋକ । ଖବର କାଗଜରେ ଏ କଥାଟିମାନ ବାହାରୁଥିଲା । ସରକାରଙ୍କୁ ବଦନାମ କରିବା ପାଇଁ ବିରୋଧୀ ଦଳର ଜୋରସୋର ଉଦ୍ୟମ ଆରମ୍ଭ ହୋଇଯାଇଥିଲା । ତଥାପି ଲୋକେ ପୁଣି ମୁଣ୍ଡଟେକି ଉଠୁଥିଲେ ।

ଏହା ଭିତରେ ବିତିଗଲା ପାଞ୍ଚବର୍ଷ ।

ଲୋକ ଭୁଲିଆସିଥିଲେ ତାଙ୍କ ହରାଇଥିବା ସ୍ୱଜନମାନଙ୍କୁ । ଶ୍ରାଦ୍ଧ କରି ସାରିଥିଲେ ସେଇ ଲେଉଟୁନଥିବା ଆତ୍ମୀୟମାନଙ୍କର । କିନ୍ତୁ ସମସ୍ତଙ୍କୁ ଚମକାଇ ଦେଇ ଦିନେ ବୁଢ଼ା ଦଣ୍ଡପାଣି ଲେଉଟି ଆସିଲା ଗାଁକୁ । ସେ ଗାଁ ଆଉ ନାହିଁ ସତ, ହେଲେ ସେଇ ରାସ୍ତା, ଗଛ ସେଇ ମଣିଷ କେତେଟା ତଥାପି ସ୍ମୃତି ହୋଇ ଜଗିରହିଛନ୍ତି । ଦଣ୍ଡପାଣି ତା ଘର ଆଡ଼କୁ ମୁହାଁଇଲା ।

ଘରର ରୂପ ବଦଳି ଯାଇଥିଲା । ଘର ଭିତରେ ତା ପୁଅ ବସିଥିଲା । ଆଉ ଜଣେ କିଏ ନୂଆ ବୋହୂଟିଏ ତା' ପାଖରେ ଗୁଞ୍ଜି ହୋଇ ବସିଥିଲା । ବୁଢ଼ା ଦଣ୍ଡପାଣି ଘର ଭିତରକୁ ଉଠିଲା ।

ପଛରୁ କିଏ ଡାକିଦେଲା– 'ରୁହ, ତମେ ଘର ଭିତରକୁ ଯାଇ ପାରିବନି । ତମେ ପ୍ରେତ ହୋଇ ସାରିଛ । ତମର ଶ୍ରାଦ୍ଧକର୍ମ ସରି ସାରିଛି ।'

ଦଣ୍ଡପାଣି ଭଲକରି ଲୋକଟିକୁ ଚାହିଁଲା । ହଁ ମନେ ପଡ଼ିଲା ଏ ଲୋକଟି ତାଙ୍କ ଗାଁର ମୁରବି ଥିଲା । ମୁରବି ଆହୁରି ପାଖକୁ ଲାଗି ଆସିଲା । ଘର ଭିତରୁ ପୁଅ ବି ବାହାରି ଆସିଲା । ବୋହୂଟି ବି । ପୁଅ କାଠପରି ଠିଆ ହୋଇ ରହିଲା । ତା' ଆଖିରେ ଲୁହ ଜକେଇ ଆସିଲା । ବୁଢ଼ା ଦଣ୍ଡପାଣିର କୋହ ତଣ୍ଟି ଫଟେଇ ଉଛୁଳି ଆସିଲା । ପୁଅ ପଚାରିଲା– ବା' କିଲୋ ?

'ହଁ... ହଁ...ରେ ବାଇଆ ।'

ବୁଢ଼ା ଦଣ୍ଡପାଣି ଗୋଟେ କେନ୍ଦରା ବାଜିଲା ପରି ସ୍ୱରରେ ଏତେକ କହିପକାଇ ପଛକୁ ଗୋଡ଼ ଫେରାଇଲା ।

'କୁଆଡ଼େ ଥିଲୁ ଲୋ ବା' ?

ପୁଅ ଶଙ୍କିତ ଓ ସନ୍ଦିହାନ ଗଳାରେ ପଚାରିଲା ।

ଦଣ୍ଡପାଣି କହିଲା, 'ସମୁଦ୍ରରେ ଥିଲି । କୁମ୍ଭୀର ସାଙ୍ଗେ । ଶୋଇ ପଡ଼ିଥିଲି । ଉଠିଲା ବେଳକୁ କଳିଯୁଗ । ତୁ କ'ଣ ସତରେ ମୋତେ ଶ୍ରାଦ୍ଧ ଦେଇ ଦେଇଛୁ ?'

'ହଁ... କ'ଣ କରିଥାନ୍ତି ? କେତେଦିନ ଖୋଜିଲି । କେତେ ଆଡ଼େ ଖୋଜିଲି । ମୁରବିଏ କହିଲେ ଆଉ ମିଳିବ ନାହିଁ । ମୁଁ ଲଣ୍ଡା ହୋଇ ପଡ଼ିଲି । ଦଶଦିନ, ଏଗାର ଦିନ ମାନିଲି । ବ୍ରାହ୍ମଣଭୋଜି ଦେଲି । ... ପୁଅଟି କାନ୍ଦି ପକାଇଲା । ତା' ନିଜ ଅପରାଧ ତାକୁ ଛିଃ... ଛିଃ... କରୁଥିଲା ।

ବୁଢ଼ା କହିଲା, 'ତେବେ ମୁଁ ଆଉ କୁଆଡ଼େ ଯିବି ? ଏ ଘରେ ତ ମୋର ବାସ ନାଇଁ ।' ପ୍ରେତକୁ ଘରେ ଜାଗା ଦେଇ ହେବନି । ମୁରବିଏ କହିଲେ ।

ଗାଁ ମୁଣ୍ଡରେ ଗୋଟେ ଛୋଟ ଭଙ୍ଗା ଘର ଥିଲା । ସମୁଦ୍ର ବେଶି ଦୂର ନଥିଲା । ସେଇଠି ରହିବା ପାଇଁ ମୁରବିଏ ପରାମର୍ଶ ଦେଲେ । ମଶାଣିରୁ ବାହୁଡ଼ିବା ଓ ଶ୍ରାଦ୍ଧ

କର୍ମପରେ ବାହୁଡ଼ିବା ଲୋକକୁ ଘରେ କି ଗୃହସ୍ଥରେ ସ୍ଥାନ ନାହିଁ । ମୁରବିଏ କହିଲେ । ସେ ପ୍ରେତ ହୋଇ ଯାଇଛି । ତାକୁ ଗାଁ ବାହାରେ ରହିବାକୁ ପଡ଼ିବ । ପ୍ରେତ କର୍ମ କରିବାକୁ ପଡ଼ିବ ।

ବୁଢ଼ା ପୁଅ ମୁହଁକୁ ଚାହିଁଲା ।

ପୁଅ ମୁରବିଙ୍କ ମୁହଁକୁ ଚାହିଁଲା ।

ଶେଷରେ ସେଇଆ ସ୍ଥିର ହେଲା । ଗାଁ ମୁଣ୍ଡରେ ଏକ ଶୁନ୍‌ଶାନ୍ ପରିତ୍ୟକ୍ତ ଘରେ ବୁଢ଼ା ରହିବ । ପୁଅ ତାକୁ ଡାଲି, ଚାଉଳ, ତେଲ, ଲୁଣ କି ଦୁକ୍ତା ଚିନି ଯୋଗାଇ ଦେବ ।

ବୁଢ଼ା କହିଲା– ହେଉ, ତୋ ଇଚ୍ଛା ।

ବୁଢ଼ା ସେଇ ଘରକୁ ଚାଲିଗଲା । କିଛିଦିନ ଗଲା ।

ସେ ଘରେ ବୁଢ଼ା ପ୍ରେତ ହୋଇ ରହୁଥିଲା । ଗାଁ ଲୋକେ କ୍ରମେ ବୁଢ଼ାର ଅବସ୍ଥିତିକୁ ଭୁଲି ଆସୁଥିଲେ । ହଠାତ୍ ଦିନେ ଝଡ଼ ଆସିଲା । ସମୁଦ୍ରର ପାଣି କୂଳମାଡ଼ି ଗାଁ ଆଡ଼କୁ ବହିଲା । ଲୋକେ ସତର୍କ ହୋଇ ଉଠିଲେ । କିଏ କୁଆଡ଼େ ଛୁଆ ପିଲାଧରି ଧାଇଁଲେ । ଘରଦ୍ୱାର ସେମିତି ପଡ଼ି ରହିଲା ।

ପୁରୁଣା ପୁରୁଣା ମୁରବିଏ କହିଲେ, ଏସନ ବାତ୍ୟା ସେସନ ପରି ହୋଇପାରେ । ବେଳହୁଁ ସାବଧାନ । ସମସ୍ତେ ଘର ସଂସାର ଘେନି ଜୀବନ ବଞ୍ଚାଇବାକୁ ନିରାପଦ ସ୍ଥାନମାନଙ୍କୁ ଚାଲିଗଲେ ।

ପୁଅ ଗଲା ବାପ ପାଖକୁ ।

ପ୍ରେତ ହେଲେ ବି ବାପ ତ... ।

ପୁଅ ବାପକୁ କହିଲା – ତୁ କୁଆଡ଼େ ଯିବୁ ବା ?

ବୁଢ଼ା କହିଲା– 'ସମୁଦ୍ରକୁ' ।

ପୁଅ ଆଉ ବାଧ କଲାନି । କରିପାରିଲାନି । ପୁଅ ଗାଁଲୋକଙ୍କ ସାଙ୍ଗେ ନିଜ ମାଇପକୁ ଧରି ବାହାରିଗଲା । ବୁଢ଼ାକୁ ଆସି କୁମ୍ଭୀର ନେଇଗଲା ସମୁଦ୍ରକୁ ।

ମଝିବାଟରେ ବୁଢ଼ା କୁମ୍ଭୀରକୁ ପଚାରିଲା, 'କଲିଜା ଖାଇବୁ' ? କୁମ୍ଭୀର ହସିଲା ଓ କହିଲା 'ରଖିଥା ତୋ ପୁଅକୁ ଦେବୁ' ।



ଗିରି ଦଣ୍ଡସେନା

# କାଳସୂତ୍ର

ଗତିବିଧି ଓ ପରିସ୍ଥିତିକୁ କିଛି ସମୟ ଲକ୍ଷ୍ୟ କଲେ ଅନୁମାନ କରି ହେଉଛି ଯେ' କୀଟଟି ଭୀଷଣ ବିପଦରେ ପଡ଼ିଯାଇଛି ।

ବିଷୟଟି ଏଇମିତି, ଚୁଲି ଭିତରେ ଜଳୁଥିବା ଗୁଡ଼ାଏ ଜାଳେଣି ଭିତରକୁ ଖଣ୍ଡେ ଲମ୍ବା ମୋଟା କାଠ ରାଜରାସ୍ତା ପରି ବାହାରକୁ ଲମ୍ବିଯାଇଛି । ତା'ରି ମଝିରୁ ଦଶବାର ଇଞ୍ଚର ସରୁ କାଠିଟେ ଏକ ସଂକୀର୍ଣ୍ଣ ଗଳିପରି ଚୁଲି ବାହାରକୁ ଶୂନ୍ୟରେ ଉପରକୁ ଟେକି ହୋଇଛି । ସେଇ କାଠି ଖଣ୍ଡକ ଉପରେ ଜୀବନ ବ୍ୟାକୁଳ ଜନ୍ଦାଟିଏ ତଳୁ ଉପରକୁ ଉପରୁ ତଳକୁ ଦୌଡ଼ିବୁଲୁଛି । ଶୀର୍ଷକୁ ଯାଇ ଦେଖୁଛି ଆଗକୁ ଆଉ ରାସ୍ତା ନାହିଁ । ଅନନ୍ୟୋପାୟ ହୋଇ ପୁଣି ତଳକୁ ଓହ୍ଲାଇ ଆସୁଛି । ମାତ୍ର ତଳେ ବହ୍ନି-ବଳୟ । ଜଳନ୍ତା ଚୁଲିର ଉତ୍ତାପ ଏଡ଼େ ଅସହ୍ୟ ହୋଇ ଉଠିଛି ଯେ' କାଠିଟିରୁ ଜାଳେଣି କାଠ ପର୍ଯ୍ୟନ୍ତ ବି ଓହ୍ଲେଇ ପାରୁନାହିଁ । ବସ୍ତୁତଃ, ଏକ ବିପଦ ସଂକଟ ମଧ୍ୟରୁ ମୁକ୍ତି ପାଇବାକୁ ତଳେ କୌଣସି ବିକଳ୍ପ ରାସ୍ତା ମିଳୁନାହିଁ । ତଥାପି ସଂଗ୍ରାମୀ ଜନ୍ଦାଟି ହତାଶ ନହୋଇ ରାସ୍ତା ଖୋଜୁଛି, ନିଷ୍କ୍ରମଣ ଅବଲମ୍ବନ ଖୋଜୁଛି ।

ଚୁଲି ପାଖରେ ବସିରହି ରୁଦ୍ର ଜନ୍ଦାଟିକୁ ସ୍ଥିର ଦୃଷ୍ଟିରେ ଲକ୍ଷ୍ୟ କରୁଛି । ଚେଷ୍ଟା ଅବ୍ୟାହତ । ଜନ୍ଦାଟି କାଠିର ମୂଳରୁ ଅଗ ପର୍ଯ୍ୟନ୍ତ, ପୁଣି ଅଗରୁ ମୂଳ ପର୍ଯ୍ୟନ୍ତ ଧାଇଁବାରେ ଲାଗିଛି । ତା' ସଙ୍ଗରେ ରୁଦ୍ରର ଦୃଷ୍ଟି ମଧ୍ୟ ଜ୍ୟା'ର ଚାପଭଳି ବୁଲିଯାଉଛି ।

ଅନେକ ଥର ତଳ ଉପର ହେବାପରେ ଏଥର ଜନ୍ଦାଟି କାଠିର ଅଗ୍ରଭାଗକୁ ଯାଇ ଦୁଇ ଗୋଡ଼ରେ ଛିଡ଼ା ହେଲା ଏବଂ ହାତ ଶୁଣ୍ଢ ଉପରକୁ ପ୍ରସାରିତ କରି ଶୂନ୍ୟକୁ ଅଣ୍ଡାଳିଲା । ମାତ୍ର ଚତୁର୍ଦ୍ଦିଗ କେବଳ ଶୂନ୍ୟତା ହିଁ ଶୂନ୍ୟତା । ବେଶି ତଳକୁ ମଧ୍ୟ ଓହ୍ଲାଇ ହେଉନାହିଁ; ତଳେ ମୃତ୍ୟୁ ଆଗ୍ନେୟ ହାତ ଲମ୍ବାଉଛି ଟାଣିନେଇ ଯିବାକୁ ତା'ର ସର୍ବଭକ୍ଷୀ କରାଳଗର୍ଭକୁ ।

ରୁଦ୍ର ଲକ୍ଷ୍ୟ କଲା, ଆଉ ରକ୍ଷା ନାହିଁ । ପତଳା କାଠିଟା ଯେଉଁ ଜାଳେଣିକାଠର ନାଭିରୁ ପଦ୍ମନାଡ଼ ପରି ବାହାରିଛି, ସେଇଟାକୁ ଅଗ୍ନି ଅର୍ଦ୍ଧାଧିକ ଗ୍ରାସ କରିଦେଲାଣି ।

ଆଉ କିଛି ସମୟ ପରେ ଏଇ କାଠିଟିକୁ ମଧ୍ୟ ଗ୍ରାସ କରିଦେବ । ମୂଳଟା ପୋଡ଼ିଗଲା ପରେ ଯେତେବେଳେ ଶୁଷ୍କ ଦୁର୍ବଳ କାଠିଟା ରାଓଁ ରାଓଁ କରୁଥିବା ଅଗ୍ନିକୁଣ୍ଡ ଭିତରେ ମୃତଦେହ ଭଳି ଟଳି ପଡ଼ିବ; ସେତେବେଳେ କ'ଣ ହେବ ଏ ଆଶ୍ରିତ ଜନ୍ଦାଟିର ଅବସ୍ଥା ? ଆଉ କିଛି ସମୟ ପରେ ଜଳନ୍ତା କାଠ ଭଳି ଏ ନିରୀହ ଜୀବଟିର ଜୀବନକାଳ ମଧ୍ୟ ଶେଷ ହୋଇଯିବ ସିନା !

ଜନ୍ଦାଟି ପ୍ରକୃତରେ ଭୀଷଣ ବିପଦରେ ପଡ଼ିଯାଇଛି । ଆହାଃ ! !

ରୁଦ୍ର ସାଙ୍ଗେ ସାଙ୍ଗେ ପଥଭ୍ରାନ୍ତ ଜନ୍ଦାଟିକୁ ସାହାଯ୍ୟ କରିବାକୁ ମନସ୍ଥ କଲା । କିଛି ମୁହୂର୍ତ୍ତ ଚିନ୍ତା କରି ଜାଣିଲା, ଜନ୍ଦା ପକ୍ଷରେ ସହଜ ଆତ୍ମରକ୍ଷା ସମୟ ଯଦିଓ ଅତିକ୍ରାନ୍ତ, ତଥାପି ସାହସ କଲେ ରାସ୍ତା ଅଛି ।

ଏକ : ଏଇ ଯେଉଁ ସଂକୀର୍ଣ୍ଣ ଗଳିପରି କାଠିଟା, ବହ୍ନିମାନ ଜାଳେଣିର ଯେଉଁ ତ୍ରିଛକିରୁ ବାହାରିଛି, ସେଇଠିକୁ ଓହ୍ଲାଇଆସି ବାମକୁ ବୁଲିପଡ଼ିଲେ ଦିଶିଯିବ ଜାଳେଣିର ପ୍ରଶସ୍ତ ରାଜରାସ୍ତା । ସେଇ ରାଜରାସ୍ତା ଦେଇ ବାହାରକୁ ଚାଲିଯାଇ ହେବ; ଯଦି ଚୁଲିର ଅଗ୍ନିଧାସକୁ ଟିକିଏ ସହ୍ୟ କରାଯାଏ ।

ଦୁଇ : ପରିଣାମକୁ ଚିନ୍ତା ନ କରି, ଶୂନ୍ୟକୁ ଟେକି ହୋଇଥିବା କାଠିର ଶୀର୍ଷକୁ ଉଠି, ସେଇଠୁ ଆଖିବୁଜି ସିଧା ଭୂମିକୁ ଲମ୍ଫ ପ୍ରଦାନ କରିବାକୁ ହେବ । ଏଇ ଦୁଃସାହସିକ ପଦକ୍ଷେପ ପାଇଁ ହାତଗୋଡ଼ ବା ଅନ୍ୟକୌଣସି ଅଙ୍ଗାବୟବ ଭାଙ୍ଗି ଯିବାର ଅବଶ୍ୟ ରହିଛି, କିନ୍ତୁ ମୂଲ୍ୟବାନ ଜୀବନଟାକୁ ତ ନିଶ୍ଚିତ ମୃତ୍ୟୁମୁଖରୁ ରକ୍ଷା କରାଯାଇ ପାରିବ ।

ରୁଦ୍ର ଉପଦେଶ ଛଳରେ ଏ ଉପାୟ ଦୁଇଟି ଜନ୍ଦାଟିକୁ ଜଣାଇଦେଲା ଏବଂ କିଛି ସମୟ ଅପେକ୍ଷା କଲା । ଅବଶ୍ୟ ଚୁଲିର ନିଆଁକୁ ନିର୍ବାପିତ କରିଦେଲେ କିମ୍ବା ଜାଳେଣି ଖଣ୍ଡକ ବାହାରକୁ କାଢ଼ିଆଣିଲେ ଜନ୍ଦା ରକ୍ଷା ପାଇଯିବ । ଏହା ବ୍ୟତୀତ ଜନ୍ଦା ସାମ୍ନାକୁ ଆଙ୍ଗୁଠି ବା ଆଉ ଖଣ୍ଡେ କାଠି ଲମ୍ବାଇଦେଲେ ବି ହେବ । କିନ୍ତୁ ଜୀବଟି ଏବେ ବି ନିଜେ ସଂଘର୍ଷରତ; ତା'ର ମୁକ୍ତିକାମୀ ପ୍ରଚେଷ୍ଟା ଏବେ ବି ଅବ୍ୟାହତ । ପୁଣି ସେ ବିକଳାଙ୍ଗ ବା ରୁଗ୍ଣ ନୁହେଁ । ବେଶ ହୃଷ୍ଟପୁଷ୍ଟ, ଦୁର୍ଦ୍ଧର୍ଷ ଏବଂ ବଳଶାଳୀ । ଦେଖାଯାଉ ନିଜ ଚେଷ୍ଟାରେ କ'ଣ କରୁଛି ? ଯଦି ଲଢ଼ି ଲଢ଼ି କ୍ଳାନ୍ତ ହୋଇଯିବ, ପରାଜିତ ହୋଇ ନିରୁପାୟ ହୋଇଯିବ; ସେତେବେଳେ ତାକୁ ରକ୍ଷା କରିଦେବ । ଅସହାୟ ହୋଇ ମୃତ୍ୟୁର କରାଳଗର୍ଭକୁ ଟାଣିହୋଇଯିବା ବେଳକୁ ନିଜର ସଂଜୀବନୀ ଆଙ୍ଗୁଠିକୁ ତା'ପାଖକୁ ଲମ୍ବାଇଦେବ । ଜନ୍ଦାଟି ଜୀବନମୋହରେ ଆକୁଳ ହୋଇ ଆଙ୍ଗୁଠିକୁ ଜାବୁଡ଼ି ଧରିବା କଥା । ଧରିବ ଯଦି ଭଲ, ମୃତ୍ୟୁ ଭୟରେ ହତବୁଦ୍ଧି ହୋଇ ଯଦି ନ ଧରେ, ତେବେ

ନିଜେ ତାକୁ ଟାଣିଆଣି ନିରାପଦ ଭୂଇଁରେ ଛାଡ଼ିଦେବ । ନିଶ୍ଚୟ, ନିଶ୍ଚୟ ଏବଂ ନିଶ୍ଚୟ ଜନ୍ଦାଟିର ପ୍ରାଣରକ୍ଷା କରିଦେବ ।

ବ୍ୟାକୁଳ ହୋଇ ଆଙ୍ଗୁଠିକୁ ଧରିବା ବେଳେ, ଖସିପଡ଼ିବାର ଆଶଙ୍କାରେ କାମୁଡ଼ି ଧରିବ ନାହିଁ ତ? ହଃ, କାମୁଡୁ, କେତେ ବା ଯନ୍ତ୍ରଣା ହେବ୍ ଯେ! ପ୍ରତିଜ୍ଞା ପାଳନ କରିବାକୁ ହେଲେ ନାନା ବାଧାବିଘ୍ନ, ନାନା ବିପଦର ସମ୍ମୁଖୀନ ହେବାକୁ ପଡ଼େ, ଅନେକ କିଛି ଯନ୍ତ୍ରଣା ସହିବାକୁ ପଡ଼େ । ଆଃ, ବିଚରା ଜନ୍ଦାଟା!

କିଛି ସମୟ ଗଡ଼ିଗଲା । କିନ୍ତୁ ଜନ୍ଦାଟିର ସଂଘର୍ଷ ଅବ୍ୟାହତ ଥିଲେ ମଧ୍ୟ ରୁଦ୍ରର ଉଦ୍ଭାବିତ ସୁଗମ ଉପାୟ ଅନୁସାରେ କାର୍ଯ୍ୟ କରିବାର କୌଣସି ଲକ୍ଷଣ ଦେଖାଗଲା ନାହିଁ । ରୁଦ୍ର ସାମାନ୍ୟ ଦୁଃଖିତ ହେଲା । ଜୀବଟିର ବିପଦକୁ ମର୍ମେ ମର୍ମେ ଅନୁଭବ କଲା ଏବଂ ସମଦୁଃଖରେ ସମବେଦନା ଜ୍ଞାପନ କଲା । କହିଲା– ବିପଦ ବେଳେ ଅନ୍ୟର ଉପକାରରେ ଆସୁ ନଥିବା, ମଣିଷ କି ମଣିଷ? ଏଭଳି ମଣିଷପଣିଆକୁ ଧିକ୍! ଏଭଳି ମଣିଷକୁ ମଧ୍ୟ ଶତ ଧିକ୍!!

ଜନ୍ଦାଟି ଏ ପର୍ଯ୍ୟନ୍ତ କିଛି ନକରି କାଠିର ଅଗ୍ରଦେଶରେ ଛିଡ଼ା ହୋଇଛି କେବଳ । କାଠିର ତଳଆଡ଼କୁ ଓହ୍ଲେଇ ଆସୁନାହିଁ କି ସେଇଠୁ ସିଧା ତଳକୁ ଡେଇଁ ପଡୁନାହିଁ । ବୋକା ଜୀବଟି ଜୀବନର ଏଭଳି ଘଡ଼ିସନ୍ଧି ମୁହୂର୍ତ୍ତରେ କାଠିର ଶୀର୍ଷ ବିନ୍ଦୁରେ କାହିଁକି ଛିଡ଼ାହୋଇ ସର୍କସବାଲା ଖେଳ ଦେଖାଇବା ପୂର୍ବରୁ ଦର୍ଶକଙ୍କ ଉଦ୍ଦେଶ୍ୟରେ ହାତ ହଲାଇ ଅଭିବାଦନ କଲାପରି ଢଙ୍ଗ ଦେଖାଉଛି?

ହଠାତ୍ ଜନ୍ଦାର ଏପରି କାର୍ଯ୍ୟକଳାପ, ସର୍କସର ଏକ କୌତୁକିଆ ଖେଳ ପରି ମନେହେଲା । ଏମିତି ତ ସଂସାରରେ ସବୁ ପ୍ରକୃତିର ସର୍ତ୍ତାଧୀନ ଓ ସମୟାଧୀନ । ଆଜି ଯିଏ ଭଲ, କାଲି ଖରାପ । ସୂତା ହଠାତ୍ ସର୍ପରେ ରୂପାନ୍ତରିତ ହୋଇପାରେ । ମଣିଷ ବଦଳି ଯାଇପାରେ । ତା'ର ଚିନ୍ତା, ସଂପର୍କ ଓ ମୂଲ୍ୟବୋଧ ବଦଳି ଯାଇପାରେ ।

ଜନ୍ଦାର କାର୍ଯ୍ୟକଳାପ ସର୍କସର କୌତୁକିଆ ଖେଳ । ରୁଦ୍ର ଆମୋଦିତ ହେଲା ଏବଂ ସେ ମଧ୍ୟ ତା'ର ମଧ୍ୟମ ଆଙ୍ଗୁଳିକୁ ଧୀରେ ଧୀରେ ଜନ୍ଦା ଆଡ଼କୁ ଲମ୍ବାଇଲା । ଜନ୍ଦାଟି କୌଣସି ଅବଲମ୍ବନ ଆଶାରେ ହାତଶୁଣ୍ଢ ହଲାଉଥିଲା, ଯେମିତି କିଛି ମିଳିଗଲେ ତାକୁ ଧରି ଏ ମୃତ୍ୟୁର ଖାଇକୁ ଶୂନ୍ୟେ ଶୂନ୍ୟେ ପାର ହୋଇଯିବ । ରୁଦ୍ର ସତର୍କ ହୋଇ ଆଙ୍ଗୁଠି ଲମ୍ବାଇଲା ଏବଂ ତାକୁ ଚଟ୍‌କରି ସାମାନ୍ୟ ଛୁଇଁ ଦେଇ ଘୁଞ୍ଚାଇ ଆଣିଲା । ଜନ୍ଦାଟି ଅଜ୍ଞାତ ସଂଜୀବନୀ ସ୍ପର୍ଶ ପାଇ ସଚେତନ ହୋଇଗଲା ଓ ତାକୁ ଧରିବାକୁ ଶୂନ୍ୟରେ ଅଣ୍ଡାଳିଲା । ରୁଦ୍ର ବୁଝିଗଲା, ଆଙ୍ଗୁଠି ଘୁଞ୍ଚାଇ ଆଣି ନଥିଲେ ଜନ୍ଦାଟି ନିଶ୍ଚୟ ତା' ହାତକୁ ଉଠି ଆସିଥାନ୍ତା । ମୃତ୍ୟୁ କାତର ଜୀବଟି ଜୀବନ ପାଇଁ କେଡ଼େ ବ୍ୟାକୁଳ ସତେ!

ଜନ୍ଦାଟି ଅବଲମ୍ବନହୀନ ଶୂନ୍ୟତାକୁ ଅଣ୍ଡାଳୁଛି ।

ରୁଦ୍ରକୁ ଏ ଖେଳ ମଜ୍ଜା ଲାଗିଲା । ଭାରି ମଜ୍ଜା ଲାଗିଲା । ଜନ୍ଦାଟିକୁ ଆଉଥରେ ଚଟ୍‌କିନା ଛୁଇଁ ଆଙ୍ଗୁଠି ଘୁଞ୍ଚାଇ ନେଲା । ଜନ୍ଦାଟି କ୍ଷଣେ ଆବିର୍ଭାବ ହୋଇ ପୁଣି ଅଦୃଶ୍ୟ ହୋଇ ଯାଉଥିବା ଅବଲମ୍ବନଟିକୁ ଧରି ନେବାକୁ ଖୁବ୍ ବ୍ୟସ୍ତ ହୋଇ ହାତଶୁଣ୍ଢ ଶୀଘ୍ର ଶୀଘ୍ର ହଲାଇଲା । କିନ୍ତୁ କିଛି ପାଇଲା ନାହିଁ । ମନେହେଲା, ଯେମିତି ଆରପଟକୁ ଝୁଲିଯିବାକୁ ଚେଷ୍ଟା କରୁଥିବା ଏକ ସର୍କସବାଲାର ସାମ୍ନାକୁ ଦୋଳିଦଣ୍ଡ ଝୁଲି ଆସୁଛି କିନ୍ତୁ ଧରିବା ପୂର୍ବରୁ ହିଁ ଦୂରକୁ ଚାଲିଯାଉଛି ।

ରୁଦ୍ର ପୁଣି ଧୀରେ ଧୀରେ ଆଙ୍ଗୁଠି ଲମ୍ବାଇଲା ଓ ସ୍ନେହ କଲା ପରି ମୃଦୁ ଆଘାତଟିଏ ଦେଲା । ଜନ୍ଦା ଓଲଟି ଚାହିଁଲା ଓ ପୁଣି ହାତଶୁଣ୍ଢ ଲମ୍ବାଇଲା ଆଶାୟୀ ହୋଇ । ରୁଦ୍ର ଏଥର କିନ୍ତୁ ଆଙ୍ଗୁଠିକୁ ସଂପୂର୍ଣ୍ଣ ଘୁଞ୍ଚାଇ ଆଣିଲା ନାହିଁ । ଖାଲି ଟିକିଏ ଘୁଞ୍ଚାଇଲା, ଯେମିତି ଜନ୍ଦାଟି କେବଳ ଛୁଇଁ ପାରିବ କିନ୍ତୁ ତାକୁ ଧରି ଡେଇଁ ଆସି ପାରିବ ନାହିଁ । ଜନ୍ଦାଟି ଆପ୍ରାଣ ଚେଷ୍ଟା କଲା । କାଠିର ଶେଷାଗ୍ରରେ ଗୋଡ଼ ଅଙ୍ଗୁଳିର ଯେତେ କମ୍ ଅଂଶରେ ଦେହର ଭାରସାମ୍ୟ ରଖି ଛିଡ଼ାହେବା ସଂଭବ, ସେତିକିରେ ଛିଡ଼ା ହୋଇ ବି ଆଙ୍ଗୁଠିକୁ ଧରିନେବାକୁ ଚେଷ୍ଟା କଲା । ମାତ୍ର ପାରିଲା ନାହିଁ ।

ଅନେକ ସମୟଧରି ଚେଷ୍ଟା କରିବା ସତ୍ତ୍ୱେ ଯେତେବେଳେ କିଛି ହେଲା ନାହିଁ; ଜନ୍ଦାଟି ହଠାତ୍ ସ୍ଥିର ହୋଇଗଲା । ଆତ୍ମରକ୍ଷା ପାଇଁ ତଳକୁ ଓହ୍ଲାଇଲା ନାହିଁ କିମ୍ବା ଉପରୁ ସିଧା ତଳକୁ ଡେଇଁ ପଡ଼ିଲା ନାହିଁ । ବରଂ ଏକପାଦ ଋଷିଟେ ମୁକ୍ତି ଆଶାରେ ଅଦୃଶ୍ୟ ଈଶ୍ୱରଙ୍କୁ ଧ୍ୟାନ କଲାପରି କାଠିର ଅଗ୍ରଭାଗରେ ସ୍ଥିରମୁଦ୍ରାରେ ଛିଡ଼ା ହୋଇଗଲା । ସମ୍ଭବତଃ ତା'ର ଧାରଣା ହୋଇଯାଇଥିଲା ଯେ' ତଳପଟେ ମୃତ୍ୟୁର ଅଂଧକାର ଭିତରୁ ରକ୍ଷା ପାଇବା ପାଇଁ କୌଣସି ରାସ୍ତା ନାହିଁ, କୌଣସି ସମ୍ଭାବନା ମଧ୍ୟ ନାହିଁ; କାରଣ ରକ୍ଷା ପାଇଁ କ୍ଷୀଣଆଶାର ଶିଖାଟିଏ ମଧ୍ୟ ଏ ପର୍ଯ୍ୟନ୍ତ ପାଇ ପାରିଲା ନାହିଁ । ତଳପଟେ ନିଷ୍କ୍ରମଣ ପଥ ଅଛିବୋଲି ଏତେଟା ଆଶା ପ୍ରଥମରୁ ହିଁ କରିବାର ନଥିଲା । ବର୍ତ୍ତମାନ ଏକ ବେଲୁନ୍‌ରେ ଆଶାତୀତ ଭାବରେ ପବନ ପୂରାଇଲେ ବିସ୍ଫୋରଣ ହୋଇ ବିକ୍ଷିପ୍ତ ହୋଇଯିବା ଭଳି ଆଶା ଶିଖାର ଆଶାତୀତ ବର୍ଦ୍ଧିତ ଅବସ୍ଥା ଏଇ ଆଗ୍ନେୟ ସଂକ୍ରମଣ । ଖଣ୍ଡେ କାଠିରୁ ଖାଣ୍ଡବ ଦହନ ।

ତଳେ ବଞ୍ଚିବାର ରାସ୍ତା ଆଉ ନାହିଁ । ତେଣୁ ଉପରେ ଛିଡ଼ା ହୋଇଛି ଏବଂ ଦେଖୁଛି ବଞ୍ଚିଯିବାର ଆଶାବାଡ଼ିଟେ ବେଳେବେଳେ ତା' ପାଖକୁ ଝୁଲି ଆସୁଛି । ତଳ ଅପେକ୍ଷା ଉପରେ ହିଁ ନିର୍ଭର ରାସ୍ତାଟିଏ ମିଳିଯିବାର ସମ୍ଭାବନା ରହିଛି ।

ରୁଦ୍ର ଦେଖିଲା ଚୂଲି ଭିତରେ ମୋଟା ଜାଳେଣି ଖଣ୍ଡକ ଜଳି ଜଳି ଅର୍ଦ୍ଧାଧିକ ଜଳି ଗଲାଣି । ଆଉ କିଛି ସମୟ ପରେ ଜନ୍ଦା ଆଶ୍ରା କରିଥିବା କାଠିଖଣ୍ଡିକୁ ମଧ୍ୟ ନିଆଁ

ଧରିପକାଇବ । ସେତେବେଳେ କ'ଣ ହେବ ଏ ଆଶ୍ରିତ ଜନ୍ଦାଟିର ଅବସ୍ଥା ? ଆଉ କେଇ ମୁହୂର୍ତ୍ତ ମାତ୍ର ! !

ରୁଦ୍ର ତତ୍ପର ହୋଇ ଉଠିଲା । ସେଇ ଦଶବାର ଇଞ୍ଚର ସରୁକାଠିଟିକୁ ଦୁଇ ହାତରେ ଧରି ମୂଳରୁ ଭାଙ୍ଗିଦେବା ପାଇଁ ସାମାନ୍ୟ ଚାପ ପ୍ରୟୋଗ କଲା । ଶୁଷ୍କ କାଠିଖଣ୍ଡକ ଠଂ କରି ଭାଙ୍ଗିଗଲା । ଭାଙ୍ଗିବା ବେଳେ ଖୁବ୍ ସତର୍କ ଥିଲା, କାଠିଟି ବେଶି ହଲି ଯାଇ ଯେମିତି ଜନ୍ଦାଟି ଜଳନ୍ତା ଚୁଲି ଭିତରେ ଖସି ନ ପଡ଼େ । ତା'ପରେ କାଠିଟିକୁ ଠିଆ ଭାବରେ ଧରି ଜନ୍ଦା ସମେତ ଚୁଲିଠୁ ନିରାପଦ ଦୂରତାକୁ ଘେନି ଆସିଲା ଶୂନ୍ୟେ ଶୂନ୍ୟେ ।

ଜନ୍ଦାଟି କିଛି ଗୋଟିଏ ପରିବର୍ତ୍ତନ ଅନୁଭବ କଲା ବୋଧହୁଏ । ବୋଧହୁଏ ତା'ର ମନେହେଲା, ତଳପଟେ ଜୀବନରକ୍ଷା କରିବା ପାଇଁ କେଉଁଠି ଏକରାସ୍ତା ଖୋଲି ଯାଇଛି । ତଳେ ଅଗ୍ନିକୁଣ୍ଡର ଲେଲିହାନ ଶିଖା ଆଉ ନାହିଁ ବରଂ କାଠିର ମୂଳରୁ ଆଉ ଏକ ରାସ୍ତା ଭୂମି ପର୍ଯ୍ୟନ୍ତ ଯୋଡ଼ି ହୋଇଯାଇଛି । ଉତ୍ସାହିତ ହୋଇ ବ୍ୟଗ୍ରତାରେ କାଠିର ତଳକୁ ଓହ୍ଲାଇବାକୁ ଆରମ୍ଭ କଲା । ତଳ ବିନ୍ଦୁକୁ ପହଞ୍ଚିବା ବେଳକୁ କିନ୍ତୁ ରୁଦ୍ର କାଠିଟାକୁ ଉପର ପଟୁ ଧରି ନେଇ ତଳପଟୁ ହାତ ଛାଡ଼ିଦେଲା । ଜନ୍ଦାଟି ତଳକୁ ଆସି ଆଶ୍ଚର୍ଯ୍ୟ ହେଲା । ଯେଉଁଠି କିଛି ମୁହୂର୍ତ୍ତ ପୂର୍ବରୁ ଆଗ୍ନେୟ ଦହନ ପରିବର୍ତ୍ତେ, ଉର୍ଦ୍ଧାଂଶ ଭଳି ତଳେ ମଧ୍ୟ ଏକ ନିଷ୍କ୍ରମଣ ପଥ ଦେଖୁଥିଲା, ତାହା ଆଉ ନାହିଁ; ବିଚ୍ଛିନ୍ନ ହୋଇ ଅଦୃଶ୍ୟ ହୋଇଯାଇଛି । ଦିଶୁଛି ଖାଲି ଶୂନ୍ୟତା ହିଁ ଶୂନ୍ୟତା । ଅନନ୍ତ ଶୂନ୍ୟତା, ଜନ୍ଦାଟି ପୁଣି ବୁଲି ପଡ଼ିଲା ଏବଂ ଉପରକୁ ଉଠିବାକୁ ଆରମ୍ଭ କଲା । କାରଣ, ଦେଖିଲା ଉପର ପଟେ ଏକ ହାତ ବ୍ରିଜ ପରି କାଠିରେ ଲାଗିରହିଛି । ଶୀର୍ଷକୁ ପହଞ୍ଚା-ପହଞ୍ଚି ବେଳକୁ ରୁଦ୍ର କାଠିଟିକୁ ପୁଣି ତଳପଟୁ ଧରିନେଇ ଉପରପଟୁ ଛାଡ଼ିଦେଲା । ଜନ୍ଦାଟି ଶୀର୍ଷ ବିନ୍ଦୁକୁ ପହଂଚି ଆଶ୍ଚର୍ଯ୍ୟ ହେଲା । ଚାରିଆଡ଼କୁ ଦୃଷ୍ଟି ବୁଲାଇଲା । ମାତ୍ର ସେଇ ସଂଯୋଜକ ବ୍ରିଜଟି ଆଉ ଦିଶିଲା ନାହିଁ । ଭଲ କରି ନିରୀକ୍ଷଣ କଲା, କିଛି ଦିଶିଲା ନାହିଁ । ହାତ ଶୁଣ୍ଢ ଛାଟି ଚତୁର୍ଦ୍ଦିଗକୁ ପରୀକ୍ଷା କରିନେଲା, କିଛି ନାହିଁ । କୌଣସି ଆଡ଼େ କିଛି ନାହିଁ । କେବଳ ଶୂନ୍ୟତା । ଅନନ୍ତ ଶୂନ୍ୟତା ।

ଉପରେ ଶୂନ୍ୟତା । ତଳେ ବି ଶୂନ୍ୟତା । ଥରକୁ ଥର ଉପରୁ ତଳକୁ ପୁଣି ତଳୁ ଉପରକୁ ଅଭେଦ୍ୟ ରହସ୍ୟ ଭଳି ପରିବର୍ତ୍ତିତ ହୋଇଯାଉଥିବା ଜୀବନର ସେଇ ରାସ୍ତାଟି କାହିଁ ? ଦୁଇଟା ଶୂନ୍ୟତାର ମଝିରେ ଚାପିହୋଇ ତା'ର ତ୍ରିଶଙ୍କୁ ଜୀବନ ନିଶେଷଃ ହୋଇଯିବ କି ?

ଜନ୍ଦାଟି ହଠାତ୍ ଖେଳ ବନ୍ଦ କରିଦେଲା । ଆଉ ହଲଚଲ ମଧ୍ୟ ହେଲାନାହିଁ । ସେଇମିତି କାଠିର ଶୀର୍ଷରେ ନୀରବ ନିଶ୍ଚଳ ହୋଇ ଦଣ୍ଡାୟମାନ ହୋଇଗଲା ।

ବୋଧହୁଏ ସିଦ୍ଧାନ୍ତ ନେଇଗଲା ଯେ ଜୀବନରକ୍ଷା କରିବାକୁ ବ୍ୟାକୁଳ ହୋଇ ରାସ୍ତା ଖୋଜିଲେ ତାକୁ ସଫଳତା ମିଳିବ ନାହିଁ । ବରଂ ଯେଉଁଠି ରାସ୍ତାର ବେଶୀ ସମ୍ଭାବନା ଦେଖାଯାଉଛି, ସେଇଠି ସାଧକଟେ ପରି କଠୋର ତପସ୍ୟା କଲେ ରାସ୍ତା ନିଶ୍ଚୟ ମିଳିବ ।

ରୁଦ୍ର କିନ୍ତୁ ଖେଳ ବନ୍ଦ କରି ନଥିଲା । ଖେଳଟିକୁ ଆଉ ଟିକିଏ ରୋମାଂଚକ କରିବାକୁ ଧରିଥିବା କାଠିଟିକୁ ଓଲଟାଇ ଦେଲା । ମୂଳ ହୋଇଗଲା ଅଗ୍ର ଏବଂ ଅଗ୍ର ହୋଇଗଲା ମୂଳ ।

ଜନ୍ଦାଟିର ଧ୍ୟାନ ହଠାତ୍ ଭାଙ୍ଗିଗଲା । ଦେଖିଲା, ସେ ତଳକୁ ଚାଲିଯାଉଛି । ସେ ଜାଣେ, ତଳେ କୌଣସି ରାସ୍ତାନାହିଁ ବରଂ ବିପଦ ଅଛି । ତେଣୁ ସେ ତଳୁ ଉପରକୁ ଉଠିବାକୁ ଲାଗିଲା । ଅଧେ ରାସ୍ତା ଉଠିଛି, ଦେଖିଲା କାଠିର ଯେଉଁ ଅଂଶ ଦେଇ ଉପରକୁ ଉଠୁଛି, ତାହା ଧୀରେ ଧୀରେ ତଳକୁ ନଇଁଗଲା ।

ଏବେ ଜନ୍ଦାଟି ବି ଚାଲାକ ପାଲଟିଗଲା । ବୁଲିପଡ଼ି ଉପରକୁ ଉଠିବାକୁ ଆରମ୍ଭ କଲା । କିଛିଦୂର ଉଠିବା ପରେ ପୁଣି ଅନୁଭବ କଲା, ତା'ର ଊର୍ଦ୍ଧ୍ୱଗତିଟା କ୍ରମଶଃ ନିମ୍ନମୁଖୀ ହୋଇଯାଉଛି । ତା'ର ମନେହେଲା, ଯେମିତି କିଏ ତାକୁ ତଳକୁ ଖସାଇ ଦେବାକୁ ଚକ୍ରାନ୍ତ କରୁଛି ।

ଜନ୍ଦାଟି ସାଙ୍ଗେ ସାଙ୍ଗେ ସଂଯତ ଓ ସତର୍କ ହୋଇଗଲା । ସିଦ୍ଧାନ୍ତ ନେଇଗଲା ଯେ' କୌଣସି ପରିସ୍ଥିତି, କୌଣସି ସର୍ତ୍ତରେ ବି ତଳକୁ ପାଦଟିଏ ବି ଓହ୍ଲାଇବ ନାହିଁ । ନିଜ ଜୀବନ ସଙ୍ଗେ ଖେଳିବ ନାହିଁ ।

କିନ୍ତୁ ରୁଦ୍ର ଏପଟ ସେପଟ ହୋଇ ଖେଳୁ ଖେଳୁ, କୌତୁକ କରୁ କରୁ ଆଠଦଶ ମିନିଟ ଭିତରେ ଉତ୍ତେଜିତ ହୋଇପଡ଼ିଲା । ତା'ର ଧାରଣା ଥିଲା, ଜନ୍ଦାଟିକୁ ବଧ୍ୟଜନ୍ତୁ ଭଳି ଚାରିଦିଗରୁ ବନ୍ଦୀ କରି ନିଷ୍କ୍ରିୟ ନିଃସହାୟ କରି ଦେଇଛି । ତିନି ଦିଗରେ ଅଲଂଘ୍ୟ ଅଭେଦ୍ୟ ଅଗ୍ନି ଓ ଶୂନ୍ୟତାର ପାଚେରୀ ଠିଆ କରିଦେଇଛି ଏବଂ ଯେଉଁ ଦିଗଟି ଖୋଲା, ସେଇଠି ସେ ଶିକାରୀ ଭଳି ଏକ ଅଦ୍ଭୁତ କୌତୁକର ଆଗ୍ନେୟାସ୍ତ୍ର ଧରି ଲକ୍ଷ୍ୟଭେଦ କରୁଛି । ଜନ୍ତୁଟିର ଅସ୍ଥିର ଗତି ସଙ୍ଗରେ ରୁଦ୍ରର ଦୃଷ୍ଟି ମଧ୍ୟ ବୁଲିଯାଉଛି । ଜ୍ୟା ଭଳି ଏବଂ ଭାବୁଥିଲା, ଚତୁର୍ଦ୍ଦିଗରୁ ଜନ୍ଦାଟିକୁ ଏମିତି ବନ୍ଦୀ କରିଦେଇଛି ଯେ' ଜନ୍ଦାର ଜୀବନ ତା'ର ଦୟା ଅନୁକମ୍ପା ଉପରେ ନିର୍ଭର କରୁଛି । ଭାବୁଥିଲା, ଜୀବନ ସକାଶେ ମୃତ୍ୟୁ ସଙ୍ଗେ ଯୁଦ୍ଧ କରୁଛି ସିନା, ଆଉ କିଛି ସମୟ ପରେ ପରାସ୍ତ ହୋଇଯିବ; ଆଉ ଯେତେବେଳେ ପରାସ୍ତ ହୋଇଯିବ, ତା'ର ଏଇ ଗର୍ବଦର୍ପ ତ୍ୟାଗ କରି ଗ୍ଧାକୁ ସାହାଯ୍ୟ ଓ ଜୀବନ ଭିକ୍ଷା ମାଗିବ, ସେତେବେଳେ ତାକୁ ମୃତ୍ୟୁ କବଳରୁ ରକ୍ଷା କରିଦେବ । ମାତ୍ର ଏଇ ଇତରଟା ତା'ର ସବୁ ଅନୁଗ୍ରହ ଓ ସହାନୁଭୂତି, ଏପରି କି ଆତ୍ମରକ୍ଷା ପାଇଁ

ଦେଇଥିବା ଉପଦେଶକୁ ଉପେକ୍ଷା କରି, ନିଜକୁ ଏକ ଅଜେୟ ଯୋଦ୍ଧାଭଳି ମୃତ୍ୟୁ ସଙ୍ଗେ ନୁହେଁ ତା'ରି ସଙ୍ଗେ ଯେପରି ଏଇ ଦଶମିନିଟ ଧରି ନୁହେଁ, ଦୀର୍ଘ ଦଶବର୍ଷରୁ ଅକ୍ଲାନ୍ତ ନିରବଚ୍ଛିନ୍ନ ଯୁଦ୍ଧ କରି ଆସୁଛି । ଆଃ, ଏକ ନଗଣ୍ୟ ଜୀବର ଏତେ ଦର୍ପ ! ଏଡ଼େ ଗର୍ବ ! ସାମାନ୍ୟ କୀଟଟେ ଏଡ଼େ ଆସ୍ପର୍ଦ୍ଧା !

ରୁଦ୍ର ହଠାତ୍ ଉତ୍ୟକ୍ତ ହୋଇଗଲା । ଭୀଷଣ ଭାବରେ ଉତ୍ୟକ୍ତ ହୋଇଗଲା । ଖେଳ ଫେଳ ସବୁ ଭୁଲିଗଲା । ମୁଖମଣ୍ଡଳ ଚୁଲିର ଆଗ୍ନେୟ ତେଜରେ ଧପ୍‌ଧପ୍ କରି ଜଳି ଉଠିଲା । ଆଖି, କାନ, ଦେହ ସବୁ ଜଳନ୍ତା ଅଙ୍ଗାର ପରି ଲାଲ ହୋଇ ଥରିବାକୁ ଲାଗିଲା । ସର୍ବାଙ୍ଗ ଶରୀର ଥରିବାକୁ ଲାଗିଲା ।

ମନେହେଲା, ଜନ୍ଦାଟି ବିଜୟ ଗର୍ବରେ ଶୀର୍ଷକୁ ଆରୋହଣ କରିଚାଲିଛି ଓ ସେ ପରାଜିତ ହୋଇ ତଳକୁ ସ୍ଖଳିତ ହୋଇଯାଉଛି । ସତରେ ସେ କ'ଣ ଏଇ କ୍ଷୁଦ୍ର କୀଟଠାରୁ ହାରିଯିବ ? ତଳେ ପଡ଼ିଯିବ ? ତା'ର ଶକ୍ତି ଓ ଶ୍ରେଷ୍ଠତା ଏଇମିତି ଧୂଳିସାତ୍ ହୋଇଯିବ ?

ୟା'ପରେ ସେ ଭୁଲିଗଲା ଯେ' ସେ ଏକ ମଣିଷ । ଭୁଲିଗଲା ତା' ଭିତରର ସ୍ନେହ, ସହାନୁଭୂତି, ଦୟା କ୍ଷମା । କାଠିଟିରେ ଥିବା ଜନ୍ଦାଟିକୁ କଟମଟ କରି ଚାହିଁଲା ଓ ଏକ ଜାନ୍ତବ ଅନୁଭୂତିରେ କାଠିଟିକୁ କିଛି ଉପରକୁ ଉଠାଇନେଲା ଏବଂ ଅପ୍ରତ୍ୟାଶିତ ଭାବରେ ଛାଟିଦେଲା ଅଗ୍ନିଗର୍ଭା ଚୁଲି ଭିତରକୁ ।



## ବିଜୟ ନାୟକ

# କୁଆ

ସକାଳୁ ଉଠି ସ୍ନାନାଦି ନିତ୍ୟକର୍ମ ସମାପନ କଲାବେଳକୁ ମୋର କର୍ମ-ନିପୁଣା ସ୍ତ୍ରୀ ମୋ ପାଇଁ କପେ ଚା' ଏବଂ ମୋ ସହ ପ୍ରତ୍ୟହ ଖାଇବାକୁ ଆଗ୍ରହ ପ୍ରକାଶ କରୁଥିବା ମୋର ଏକମାତ୍ର କୁନିଝିଅ ରାନୁ ପାଇଁ କପେ କ୍ଷୀର ଏବଂ ଉଭୟଙ୍କ ପାଇଁ ଗୋଟିଏ ପ୍ଲେଟ୍‌ରେ କିଛି ବିସ୍କୁଟ୍ ଆଣି ଟି'ପୟ ଉପରେ ଥୋଇ ଦେଇଥିଲେ । ମୁଁ ଆସି ଟି'ପୟ ନିକଟରେ ପହଞ୍ଚିଲା ବେଳକୁ ରାନୁ ଆସି ତା'ର ଆସନ ମାଡ଼ି ବସିଥିଲା । ଉଭୟ ଚା' ପର୍ବ ଶେଷ କଲୁ । ପ୍ରତିଦିନ ପରି ରାନୁର ପୁଷ୍ପକୋମଳ ଗଣ୍ଡଦେଶରେ ଚୁମ୍ବନ ଦେଇ ମୁଁ ସ୍କୁଟର ଷ୍ଟାର୍ଟ କଲି । ରାନୁ ହସିହସି ମୋ ଆଡ଼େ ଧାଇଁ ଆସିଲା ଏବଂ ନିତ୍ୟ ନିୟମିତ ଢଙ୍ଗରେ ମୋ ଆଡ଼େ ହାତ ହଲାଇ 'ଡ୍ୟାଡ଼ି ବାୟ' ବୋଲି କହିଲା । ମୁଁ ଟିକିଏ ହାତ ହଲାଇ ଚାଲିଗଲି ମୋର ଦୈନନ୍ଦିନ ବ୍ୟବସାୟ – ସାମ୍ବାଦିକତା କର୍ମରେ ।

ପ୍ରେସ୍ କ୍ଲବ୍‌କୁ ଯିବା ବାଟରେ କେହି କଥା ହେଉଥିବାର ଶୁଣିଲି ଯେ ହାଇୱେ ଉପରେ ଆକ୍‌ସିଡ଼େଣ୍ଟ । ଠିକ୍ ସୈନିକ ସ୍କୁଲ ଛକରେ । ସ୍କୁଟର ବୁଲାଇଲି, ଆଜି ସକାଳର ପ୍ରଥମ ସମ୍ବାଦ ଆକ୍‌ସିଡେଣ୍ଟ । ଅବଶ୍ୟ ସାମ୍ବାଦିକ ଜୀବନରେ ଏସବୁ ଘଟଣା ନୂଆ ନୁହେଁ ।

ସୈନିକ ସ୍କୁଲ ଛକରେ ପହଞ୍ଚି ଦେଖିଲି ସତକୁ ସତ ଆକ୍‌ସିଡ଼େଣ୍ଟ । ରକ୍ତାକ୍ତ ଶବଟିଏ ପଡ଼ିଚି ରାସ୍ତା ମଝିରେ । ଅଥଚ କୌଣସି ଗୋଟିଏ ହେଲେ ବି ଯାନ ଘଟଣା ସ୍ଥଳରେ ନାହିଁ । ଆକ୍‌ସିଡ଼େଣ୍ଟ ପରେ କୌଣସି ଯାନଚାଳକ ଯେ ସମସ୍ତଙ୍କ ଆଖିରେ ଧୂଳି ଦେଇ ଫେରାର ହୋଇଯାଇଚି, ଏଥିରେ ମୋର ସନ୍ଦେହ ରହିଲା ନାହିଁ ।

ବିକୃତ ଦେଖାଯାଉଥିଲା ଶବଟି । ମୁଣ୍ଡ ଉପରେ ହୁଏତ ଚକ ମାଡ଼ିଯାଇଚି । ଚିହ୍ନା ପଡୁନାହିଁ କିଛି । ସେଥିରେ ପୁଣି ମାଛି ଭଣ ଭଣ । ପିଚୁରାସ୍ତା ଉପରେ ରକ୍ତ ପଡ଼ି

ଶୁଖିଯାଇଚି । ସାମାନ୍ୟ ଦୁର୍ଗନ୍ଧ ବି ଆରମ୍ଭ ହୋଇଯାଇଥାଏ । ଆକ୍‌ସିଡ଼େଣ୍ଟ ନିଶ୍ଚୟ ରାତିରୁ ହୋଇଚି - ମୁଁ ମନେ ମନେ ଚିନ୍ତାକଲି ।

ଆକ୍‌ସିଡ଼େଣ୍ଟ ସ୍ଥାନରେ କିଛି କିଛି ଲୋକ ଜମୁଥିଲେ ଏବଂ କେହି କେହି କୌଣସି ବେପରୱା ମନ୍ତବ୍ୟ ଦେଇ ଚାଲି ଯାଉଥିଲେ । "ହୁଏତ ଲୋକଟି ରସୁଲଗଡ଼ରୁ ପିଆପିଇ କରି ଫେରୁଥିବା ବେଳେ ଗାଡ଼ି ଆଗରେ ପଡ଼ିଯାଇଚି" କେହି କେହି କହୁଥିବାର ଶୁଣିଲି । କେହି ପୁଣି କହୁଥିଲେ, "ରାତି ସମୟରେ ହାଇୱେ ଉପରେ ମଦ୍ୟପ ଟ୍ରକ ଡ୍ରାଇଭରମାନଙ୍କର ଯେଉଁ ଉତ୍ପାତ ନା, ଯିବା ପାଇଁ ଭୟ ଲାଗୁଚି ।"

ସାଇକେଲରେ ଯାଉଥିବା କେହି କେହି ହିପ୍‌ପୀଯୁବକ ବେଳେବେଳେ ଅନ୍ୟମନସ୍କ ଭାବରେ ପଚାରୁଥିଲେ, "ଏହା ଆକ୍‌ସିଡ଼େଣ୍ଟ ନା ମର୍ଡ଼ର ? ହୁଏତ ଆକ୍‌ସିଡ଼େଣ୍ଟ ନାଁରେ ମର୍ଡ଼ର କରାଯାଇ ପାରିଥାଏ । ଆଜିକାଲି କଟକ ଭୁବନେଶ୍ୱରର ଅବସ୍ଥା ବମ୍ବେ ବା କଲିକତା ଆଦି ମେଟ୍ରୋପଲିଟାନ୍ ସହରକୁ ବି ବଳିଗଲାଣି ।" ସେମାନଙ୍କ ପ୍ରଶ୍ନର କେହି ଉତ୍ତର ଦେଉ ନଥିଲେ ଏବଂ ସେମାନଙ୍କ ମନ୍ତବ୍ୟ କେହି କେହି ଶୁଣୁଥିଲେ ଆଉ କେହି କେହି ସେଥିପ୍ରତି ଆଦୌ କର୍ଣ୍ଣପାତ କରୁ ନ ଥିଲେ ।

ମୋଟର ସାଇକେଲ୍ ବା ସ୍କୁଟରରେ ଯାଉଥିବା କେହି ଭଦ୍ରଲୋକ ଟିକିଏ ବ୍ରେକ୍ ଦେଇ ପଚାରୁଥିଲେ, "ଏ ଆକ୍‌ସିଡ଼େଣ୍ଟ କ'ଣ ଫ୍ରେସ୍ ?"

କ୍ୱଚିତ୍ କେହି ପଚାରୁଥିଲେ, "ଏ ଲୋକଟି ଭୁବନେଶ୍ୱରର ନା ଅନ୍ୟ କେଉଁଠିକାର ? ଏହାର ଘର ଲୋକ ଖବର ପାଇଲେଣି କି ?"

କେହି କେହି ଅସମ୍ଭବ ଭାବରେ ଚିଡ଼ି ଉଠୁଥିଲେ ପୁଲିସ୍‌ବାଲାଙ୍କ ଉପରେ । "ପୁଲିସ କ'ଣ ଏ ଯାବତ୍ ଏ ସମ୍ବାଦ ପାଇ ନାହାନ୍ତି ? କେତେ ପର୍ଯ୍ୟନ୍ତ ଶବ ଏମିତି ପଡ଼ି ରହିଥିବ ରାସ୍ତା ମଝିରେ ?" ଏ ଉକ୍ତି ସହ ଯୋଗଦେଇ ନେତା ଢଙ୍ଗରେ କେହି କେହି ଶାସନ କଳର ଅପରାଗତା ବର୍ଣ୍ଣନା କରିବାକୁ ମଧ୍ୟ ଭୁଲୁ ନ ଥିଲେ ।

ନୀରବରେ ଠିଆ ହୋଇ ମୁଁ ସବୁ ଶୁଣୁଥିଲି ଏବଂ ଦେଖୁଥିଲି । ଆସ୍ତେ ଆସ୍ତେ ଗହଳି କମି ଆସୁଥିଲା । ହାଇୱେ ଉପରେ ଗତିଶୀଳ ଯାନମାନେ ସାମାନ୍ୟ ବ୍ରେକ୍ ଦେଇ ଚାଲି ଯାଉଥିଲେ । ଯାତ୍ରୀମାନେ ଯାନ ଭିତରୁ କୌତୂହଳ ସହ ମୁହଁ ବୁଲାଇ ପୁଣି ମୁହଁ ଫେରାଇ ନେଉଥିଲେ ।

ମୁଁ ସାମାନ୍ୟ ଅନ୍ୟମନସ୍କ ହୋଇଯାଇଥିଲି ନିଛକ କବିଟିଏ ପରି । ଅବଶ୍ୟ ଏକା ସାମ୍ବାଦିକର କର୍ତ୍ତବ୍ୟବୋଧ ନୁହେଁ । ଇତ୍ୟବସରରେ ସେଠି ପୁଲିସବାଲାଟିଏ ଟହଲୁଥିବାର ଦେଖିଲି । ଏ ଆକ୍‌ସିଡ଼େଣ୍ଟ କେତେବେଳର ବୋଲି ପ୍ରଶ୍ନ କଲି ତାଙ୍କୁ । ଆକ୍‌ସିଡ଼େଣ୍ଟ ଗତ କାଲିର ବୋଲି ଉତ୍ତର୍ ଦେଲେ ସେ । ଏହାର ପୋଷ୍ଟମର୍ଟେମ କିଛି ସମୟ ପରେ

ହେବ ଏବଂ ଇନ୍‌ସପେକ୍ଟର ସାହେବ ଏହାର ତଦନ୍ତ କରୁଛନ୍ତି ବୋଲି ସେ ବିନା ପ୍ରଶ୍ନରେ ମୋତେ ଜଣାଇଲେ ।

ଶବଟିର ପ୍ୟାଣ୍ଟ ବା ସାର୍ଟ ପକେଟ୍‌ରୁ କୌଣସି ଦରକାରୀ କାଗଜପତ୍ର ବା ଟଙ୍କା ପଇସା ମିଳିଛି କି ବୋଲି ମୁଁ ପ୍ରଶ୍ନ କରିବାରୁ ପୁଲିସବାଲା ଜଣକ ସାମାନ୍ୟ ବିବ୍ରତ ହେବା ପରି ଆଚରଣ କଲେ । ମୁଁ ଜଣେ ସାମ୍ବାଦିକ ବୋଲି ପରିଚୟ ଦେବାରୁ ସେ କହିଲେ ଯେ ସେପରି କୌଣସି କାଗଜପତ୍ର ମିଳି ନାହିଁ । କେବଳ ଗୋଟିଏ ଫାଙ୍କା ପର୍ସ ମିଳିଚି । ପୁଲିସବାଲାଟି ସହ ମୋର ବାକ୍ୟାଳାପ ବେଳେ ଘଟଣା ସ୍ଥଳରେ ପ୍ରାୟ କେହି ନଥିଲେ । ଯିଏ ଯେମନ୍ତେ ଦୃଶ୍ୟଟି ଦେଖୁଥିଲେ ଓ ନିଜ ନିଜ କାର୍ଯ୍ୟରେ ଚାଲି ଯାଉଥିଲେ ।

ଦିନର ବୟସ ବହୁତ ବଢ଼ି ଯାଇଥିଲା । ମୁଁ ଫେରି ଆସିଲି ମୋର କ୍ୱାର୍ଟର୍‌ସକୁ ରିପୋର୍ଟ ଲେଖିବା ପାଇଁ ।

କ୍ୱାର୍ଟର୍‌ସ ସାମ୍‌ନାରେ ପହଞ୍ଚିଲା ବେଳକୁ ଅନେକ କୁଆଙ୍କର କାଁ କାଁ ଶବ୍ଦରେ ମୋ କାନ ଅତଡ଼ା ପଡ଼ିଗଲା । ମୋ କ୍ୱାର୍ଟର୍‌ସ ତଥା ଅନ୍ୟ ପଡ଼ୋଶୀମାନଙ୍କ କ୍ୱାର୍ଟର୍‌ସ ସାମନା ଗଛରେ କୁଆମାନେ ଧାଡ଼ି ଧରି ବସି ଯୁଗପତ୍ ରଡ଼ି ଆରମ୍ଭ କରି ଦେଇଥିଲେ । ମୁଁ ମନେ ମନେ ଭାବିଲି କିଛି ଗୋଟେ ଘଟିଛି ନିଶ୍ଚୟ ।

ରାନୁ ଆସି ଠିଆ ହୋଇ ସାରିଥିଲା ମୋ ନିକଟରେ । ତା' ମୁହଁରେ ପ୍ରଶ୍ନବାଚୀର ଚିହ୍ନ ବେଶ୍ ଫୁଟି ଉଠୁଥିଲା । ସେ ମୋତେ ପ୍ରଶ୍ନ କଲା, "ଡ୍ୟାଡ଼ି, ଆଜି କୁଆମାନେ କାହିଁକି ଏମିତି କାଁ କାଁ ହେଉଛନ୍ତି ?" ମୁଁ ହଠାତ୍ ତା' ପ୍ରଶ୍ନର ଉତ୍ତର ଦେବାକୁ ସକ୍ଷମ ହେଲି ନାହିଁ । ତା' ପିଠିରେ ହାତ ବୁଲାଉ ବୁଲାଉ ମୁଁ ଚାରିଆଡ଼କୁ ଦୃଷ୍ଟି ନିକ୍ଷେପ କଲି କୁଆମାନଙ୍କର ଏ ଅବୁଝା ଶବ୍ଦାବଳୀର କାରଣ ଜାଣିବା ପାଇଁ । ହଠାତ୍ ଆବିଷ୍କାର କଲି ଯେ ମୋ କ୍ୱାର୍ଟରସ୍ ସାମନା ଇଲେକ୍‌ଟ୍ରିକ୍ ତାର ଉପରେ ମୃତ କୁଆଟିଏ ଝୁଲୁଚି । ମୁଁ ଚମକି ଉଠିଲି ନିଜ ଭିତରେ । ଏଠି ବି ଗୋଟେ ଆକ୍‌ସିଡ଼େଣ୍ଟ !

ରାନୁ ପୁଣି ମୋତେ ପ୍ରଶ୍ନ କଲା, "ଡ୍ୟାଡ଼ି କୁହ, କାହିଁକି ଏ କୁଆମାନେ ଏମିତି କାଁ କାଁ ହେଉଚନ୍ତି ଅନେକ ସମୟ ହେଲା ?"

ହାତ ଠାରି ରାନୁକୁ ଦେଖାଇଦେଲି ମୃତ କୁଆଟିକୁ ଏବଂ ହାଲ୍‌କା ଭାବରେ କହିଲି, "କୁଆଟିଏ ମରିଯାଇଚି ତ, ତେଣୁ କୁଆମାନେ ଏମିତି କାଁ କାଁ ହେଉଚନ୍ତି ।"

ରାନୁ ପୁଣି ମୋତେ ପଚାରିଲା, "କୁଆମାନେ କ'ଣ କାନ୍ଦୁଚନ୍ତି ଡ୍ୟାଡ଼ି ?" ମୁଁ ଆଉଥରେ ଚମକି ଉଠିଲି ନିଜ ଭିତରେ । ସଂକ୍ଷେପରେ ରାନୁକୁ ଉତ୍ତର ଦେଲି, "ହଁ ।"

ରାନୁ ମୋତେ ଜାବୁଡ଼ି ଧରିଲା । ମୁଁ ବୁଝିପାରୁ ନ ଥିଲି ଭୟରେ ନା ସମ୍ବେଦନଶୀଳତାରେ !

ମୁଁ ରାନୁକୁ ମୋର ଛାତି ଉପରକୁ ଟେକି ନେଲି । ମୋର ହୃତ୍‌କମ୍ପନ ବଢ଼ି ଯାଇଥିଲା । ରାନୁର ବି । ମୁଁ ମନେ ମନେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲି, 'ହେ ପ୍ରଭୁ, ମୋତେ ଏବଂ ରାନୁ ମା'କୁ ଆର ଜନ୍ମରେ କୁଆ କରି ଜନ୍ମ ଦିଅ' । ଘର ଭିତରୁ ସ୍ତ୍ରୀ ଡ଼ାକ ଛାଡୁଥିଲେ, 'କୁଆମାନଙ୍କୁ ଦେଖି କ'ଣ ଏମିତି ବାପ ଝିଅ କଥା ହଉଚ ? ଖାଇବ ଆସ । ଢେଲା ଫିଙ୍ଗି କୁଆମାନଙ୍କୁ ଘଉଡ଼େଇ ଦେଇ ପାରୁନ । ସକାଳ ପ୍ରହରୁ ଏ ସତ୍ୟାନାଶିଆ କୁଆଗୁଡ଼ାକ ବାସ କରେଇ ଦେଉ ନାହାନ୍ତି ।' ମୁଁ ସମ୍ବିତ୍ ଫେରି ପାଇଲି । କ'ଣ ଏମିତି ଗୁଡ଼ାଏ ଭାବି ଯାଉଛି ମୁଁ, ରାଜଧାନୀର ନାମଜାଦା ସାମ୍ବାଦିକ ଶ୍ରୀ ରାୟ... ?



## ରାଜ୍ୟବର୍ଦ୍ଧନ ଧଳ ମହାପାତ୍ର

# ଶାରୀ ଓ ମୂକପୁତ୍ରର କାହାଣୀ

ରାତି ଅଧରେ ଭୀମରାଜ ପକ୍ଷୀର ଡାକ ଶୁଣିଲା ଗାଆଁ ମୁଖିଆ । ବିଶ୍ୱାସ କରିପାରିଲା ନାହିଁ କାନକୁ । ଭଲ କରି ଶୁଣିବା ପାଇଁ ପୁଣିଥରେ କାନ ପାରିଲା । ନା ଇଏ ଭୀମରାଜ ପକ୍ଷୀର ଡାକ । ଅଶୁଭ, ଅଶୁଭ । ଡାକ ପକାଇଲା ସାହିସାରା । ବାଡ଼େଇଲା ଟାଟି କବାଟ, ଉଠ ଉଠ । ନିଦ ମଳମଳ ଆଖି ଧରି ଖୋଲିଗଲା ସବୁ ଟାଟି କବାଟ । ଘେରିଗଲା ବହୁ ପ୍ରଶ୍ନିଳ ଆଖି । କ'ଣ ହୋଇଛି ? ବାଘ ପଶି ଆସିଛି କି ଗାଆଁ ଭିତରକୁ ? ଉଠାଇ ନେଇଛି କି କାହାର ଛେଳି, ମେଣ୍ଢା ବା ଗାଈକୁ ? ମୁଖିଆ ସମସ୍ତଙ୍କୁ ଚୁପ୍ ରହିବାକୁ ନିର୍ଦ୍ଦେଶ ଦେଇ କହିଲା– ଶୁଣ, ଶୁଣ ଏ ଡାକକୁ ।

ସମସ୍ତେ କାନପାରିଲେ ରାତିର ଅନ୍ଧାର ଓ ନିରବତାକୁ ଚିରି ଭାସି ଆସୁଥିବା ସ୍ୱରପ୍ରତି ।

ଶୁଣି ପାରୁଛ ?

ଆପାତତଃ ଯୁବକ ଅବସ୍ଥାରେ ଥିବା ଦୁଇ ଜଣ କହିଲେ, ଶୁଣୁଛୁ ଯେ, ହେଲେ ଇଏ ବାଘ କିମ୍ବା ହାତୀର ଗର୍ଜନ ନୁହଁ, ଇଏ ଏକ ପକ୍ଷୀର ସ୍ୱର ।

ହଁ, ଇଏ ପକ୍ଷୀର ସ୍ୱର ।

ଏ ଶବ୍ଦକୁ କାନ ପାରିଥିବା ବୟସ୍କ ଲୋକମାନେ ଭିତରେ ଭିତରେ ଭୀତତ୍ରସ୍ତ ହୋଇ ସାରିଥିଲେ । ସେମାନେ କହିଲେ ଇଏ କେବଳ ପକ୍ଷୀ ଡାକ ନୁହଁ, ଗାଆଁ ଉଜାଡ଼ିବାର ଡାକ । ଆମେ ଏଇନେ କ'ଣ କରିବା ମୁଖିଆ ? କ୍ଷେତରେ ପାଚିଛି ଧାନ, ଡଙ୍ଗରରେ ମକା, କାନ୍ଦୁଲ, ଏସବୁକୁ ଛାଡ଼ି କେମିତି... ?

ଇଏ ତ ପହରିଆର ଭାଗ୍ୟଲିଖନ, କ୍ଷେତର ଧାନ, ଡଙ୍ଗରର ମକା, କାନ୍ଦୁଲକୁ ଲୋଭ କରି କ'ଣ ଜୀବନ ଦେବା କି ? ବଞ୍ଚିଥିଲେ ସିନା ଫସଲକୁ ଲୋଭ, ଯେବେ ଜୀବନ ନ ରହିବ, ତେବେ ?

କୁଆଡ଼େ ଯିବା ତା'ହେଲେ ?

ଏଠି ଆସି ଗାଆଁ ବସାଇବାଟା କେତେ ବରଷ ହୋଇଛି ? ଏଠିକି ଆସି ରହିବା ବେଳେ ଆମେ କ'ଣ ଚିନ୍ତା କରିଥିଲେ ସେ କଥା ? ଗୋଡ଼ ଯୁଆଡ଼େ କଢ଼ାଇ ନେଲା ଏବଂ ଯେଉଁ ଜାଗା ଆପଣାର ଲାଗିଲା ସେଇଠି ବସିଯିବା । ଆଉ ଡେ଼ରି କରନା ଯାଅ । ବାନ୍ଧିପକାଅ ଯେଝା ଯେଝା ଆସବାବପତ୍ର । ରାତି ନ ପାହୁଣୁ ଏଠି ଲଗାଇବାକୁ ପଡ଼ିବ ନିଆଁ ।

ସୁନାବେଡ଼ା ଅଭୟାରଣ୍ୟ ମଝିରେ ଲାଗିଛି ନିଆଁ । ପହରିଆମାନେ ଉଜାଡ଼ି ଦେଇଛନ୍ତି ଗାଆଁ । ଏ ଖବର ଆମ ଅଫିସରେ ପହଞ୍ଚିବାରୁ ଡି.ଏଫ୍. ଓ ବଡ଼ ବିଚଳିତ ହୋଇ ଡକାଇ ପଠାଇଲେ ଆମ ସମସ୍ତଙ୍କୁ । ନିର୍ଦ୍ଦେଶ ଦେଲେ ତୁରନ୍ତ ଯାଇ ଦେଖ, ଗାଆଁକୁ ଜାଳି ଦେଇଛନ୍ତି ଅବା ସେ ନିଆଁ ବ୍ୟାପିଯିବ ସାରା ଅଭୟାରଣ୍ୟକୁ । ପୁଣି ଗୋଟାଏ ଜାଗାରେ ଯାଇ ସେମାନେ ବସାଇବେ ଗାଆଁ । କାଟିବେ ଜଙ୍ଗଲ । ଛାରଖାର ହୋଇଯିବ ଏ ଅଭୟାରଣ୍ୟ ।

ମୋ ଉପରେ ଦାୟିତ୍ୱ ପଡ଼ିଲା କିଛି ଫରେଷ୍ଟର ଓ ଫରେଷ୍ଟଗାର୍ଡ଼ଙ୍କୁ ସାଥୀରେ ନେଇ ସେଠାରେ ପହଞ୍ଚିବାକୁ । ସେଠାରେ ପହଞ୍ଚିବା ସହଜ କାର୍ଯ୍ୟ ନଥିଲା । ଫରେଷ୍ଟ ରେଷ୍ଟ୍ ସେଡ୍ ଯାଏଁ ମାତ୍ର ଯାଇପାରିବ ଜିପ୍ । ସେଠାରୁ ଦଶ ବାର କିଲୋମିଟର ଦୂରତାକୁ ଜଙ୍ଗଲ, ଝରଣା ଓ ପାହାଡ଼ ଡେଇଁ ଅତିକ୍ରମ କଲେ ଯାଇ ପଡ଼ିବ ପହରିଆପଡ଼ା । ତେଣୁ ରୀତିମତ କ୍ୟାମ୍ପ ଆରେଞ୍ଜମେଣ୍ଟ କରି ଆମେ ବାହାରି ପଡ଼ିଲୁ ସେ ଗାଆଁ ଅଭିମୁଖେ ।

ପହରିଆପଡ଼ାରେ ପହଞ୍ଚିବାବେଳକୁ ବେଳ ରତରତ । ଜଳି ଯାଇଥିଲା ପୂରା ଗାଆଁଟି । ଗାଆଁ ପାଲଟି ଯାଇଥିଲା ଠାଏ ଠାଏ ଗଦା ହୋଇଥିବା ପାଉଁଶ ସ୍ତୂପରେ । ଆମେ ପାଉଁଶଗଦା ଉଖାରି ଦେଖିଲୁ ନିଆଁ ଅଛି କି ନାହିଁ । ଆମର ସୌଭାଗ୍ୟ ଯେ ପାଉଁଶ ଗଦାରେ ନିଆଁ ନ ଥିଲା କି ନିଆଁ ବ୍ୟାପି ନଥିଲା ପାଖ ଜଙ୍ଗଲକୁ । ପ୍ରଥମ ଦାୟିତ୍ୱରୁ ଅବ୍ୟାହତି ମିଳିବାରୁ ଆମେ ସ୍ୱସ୍ତିରେ ନିଶ୍ୱାସ ନେଲୁ । ସେମାନେ କୁଆଡ଼େ ଗଲେ ପରେ ଖୋଜିବା । ଏବେ ରାତ୍ର ରହଣି ପାଇଁ ଟେଣ୍ଟର ବ୍ୟବସ୍ଥା କଲୁ ।

ସକାଳେ ଝରଣାକୁ ଯାଇ ନିତ୍ୟକର୍ମ ସାରି ଫେରିବାବେଳେ ଦେଖିଲି ଗଛରେ ବନ୍ଧା ଯାଇଥିବା ଫାଶରେ ଛନ୍ଦିହୋଇ ରହିଛି ଚଢ଼େଇଟିଏ । ଗଛରେ ଚଢ଼ି ଫାଶ ଫିଟାଇ ଚଢ଼େଇଟିକୁ ଧରି ଦେଖିଲି ସେଇଟି ଗୋଟିଏ ଶାରୀ ଛୁଆ । ମୁଁ ଆମ ଟେଣ୍ଟ୍ ପାଖରେ ପହଞ୍ଚୁ ପହଞ୍ଚୁ ଆମର ଜଣେ ଫରେଷ୍ଟ ଗାର୍ଡ଼ ମୋ ହାତରେ ଶାରୀ ଛୁଆଟିକୁ ଦେଖି କହିଲା, ଆପଣ ଏ ଶାରୀଟିକୁ କେଉଁଠୁ ଧରିଲେ ସାର୍ ! ଇଏ ତ ଏକ ବିରଳ ଜାତୀୟ ଶାରୀ ।

ବିରଳ ଜାତୀୟ ! ମୁଁ ବିସ୍ମୟରେ ପଚାରିଲି ।

ହଁ ସାର୍, ଏହି ଜାତୀୟ ଶାରୀ କଥା କହିବାରେ ମଣିଷଙ୍କୁ ଟପିଯାଏ । ଯାକୁ ବେଶି ଶିଖାଇବାକୁ ପଡ଼େନା । ଇଏ ଶୁଣି ଶୁଣି ସବୁ ଶିଖିଯାଏ ।

ତା'ହେଲେ ତ ବହୁତ ଭଲ କଥା । ମୋ ପୁଅକୁ ତ ଏବେ ଦୁଇମାସ ହୋଇଛି । ଇଏ ଆଉ ଗୋଟେ ସଦସ୍ୟ ଯୋଡ଼ା ହୋଇଯିବ ପରିବାରରେ । ଉଭୟ ଏକା ସାଙ୍ଗରେ କଥା କହିବା ଆରମ୍ଭ କରିବେ ।

ଘରେ ପହଞ୍ଚିବା ପରେ ଏ ଶାରୀଛୁଆର ବିଶେଷତ୍ୱ ମୋ ସ୍ତ୍ରୀଙ୍କୁ କହିଲି । ସେ ଖୁସି ହୋଇ ତା'ପାଇଁ ଗୋଟେ ଭଲ ପଞ୍ଜୁରିର ବ୍ୟବସ୍ଥା କଲେ ।

ଦୋଳିରେ ଝୁଲୁଥିଲା ପୁଅ । ପଞ୍ଜୁରି ଭିତରେ ଶାରୀ । ପୁଅ ହାତ ଗୋଡ଼ ଛାଟି ଖେଳନାକୁ ଚାହିଁ ହାଉଁ ହାଉଁ ହେଉଥିଲା । ଶାରୀଟି ପଞ୍ଜୁରିରେ ତଳ ଉପର ହୋଇ ଖଣ୍ଡିରାବ ଦେଉଥିଲା । ପୁଅ ପେଟେଇବା ଆରମ୍ଭ କଲା । ଶାରୀଟି ପର ହଲାଉଥିଲା ପଞ୍ଜୁରି ଭିତରେ । ପୁଅ ହାମୁଡ଼େଇବା ଆରମ୍ଭ କଲା, ଶାରୀଟି ଖଣ୍ଡି ଖଣ୍ଡି କଥା କହିଲା । ଶାରୀଟି ଯେଉଁଦିନ ଖଣ୍ଡି ଖଣ୍ଡି କଥା କହିଲା, ସେଦିନ ଆମେ ଖୁସି ହୋଇଗଲୁ । ମାତ୍ର ପର ମୁହୂର୍ତ୍ତରେ ସେ ଖୁସି ମିଳାଇଗଲା ଯେତେବେଳେ ଆମେ ଭାବିଲୁ ଆଠ ନଅ ମାସର ଶାରୀ ଛୁଆଟା ଯଦି କଥା କହିବା ଶିଖି ପାରିଲା, ତେବେ ଆମ ପୁଅ ତ କିଛି ଶବ୍ଦ କହି ପାରୁଥାଆନ୍ତା । ମାତ୍ର ଏହା ଭିତରେ ସେ କେବଳ ହାଉଁ ହାଉଁ ଶବ୍ଦ ବ୍ୟତୀତ ଆଉ ତ କିଛି ଶିଖିନି ।

ମନକୁ ବୁଝାଇଲୁ ବହୁତ ପିଲା ବିଳମ୍ବରେ କଥା କହି ଶିଖିବାର ନଜିର ଅଛି, ହୁଏତ ପୁଅ ବିଳମ୍ବରେ କଥା କହିବ । ବର୍ଷେ ଗଲା, ପୁଅ ସେହି ଦଶା । ଦେଢ଼ବର୍ଷ ଗଲା ତଥାପି ଖୋଲିଲାନି ପାଟି । ଅଥଚ ଶାରୀର ପାଟିରେ ଏବେ ବାଜୁ ନଥିଲା ବାଟୁଳି । ବାପା, ମାଆଠାରୁ ଆରମ୍ଭ କରି ପିଅନ, ଚାକରଯାଏଁ ସମସ୍ତଙ୍କ ନାଆଁ ଥିଲା ତା' ତୁଣ୍ଡରେ । ଟି.ଭି.ର ବିଜ୍ଞାପନକୁ ବି ଶୁଣି ଶୁଣି ତାକୁ ଧୀରେ ଧୀରେ କହିବା ଆରମ୍ଭ କରିଦେଇଥିଲା । ଘରର କଲିଂ ବେଲ୍ ବାଜିବା କ୍ଷଣି ଡାକ ଛାଡୁଥିଲା, ମାଆ କିଏ ଆସିଲେ ଦେଖ, ପୁଅ କାନ୍ଦିଲେ ଡାକୁଥିଲା, ମାଆ, ବାବୁ କାନ୍ଦୁଛନ୍ତି କିମ୍ବା ପୁଅ ମାଟି, ଗୋଡ଼ି ପାଟିରେ ପୂରାଇଲେ, ବାବୁ ଅସନା ହେଉଛନ୍ତି ବୋଲି ଡାକ ଛାଡୁଥିଲା ଶାରୀ । ଶାରୀର କଥା ଶୁଣି ଶୁଣି ଆମେ ଚିନ୍ତିତ ହୋଇ ପଡୁଥିଲୁ ପୁଅ ପାଇଁ । ତା'ର ଯଦି କିଛି ତ୍ରୁଟି ନ ଥାନ୍ତା ତା'ହେଲେ ଏତେ ଦିନଯାଏ ପାଟି ଖୋଲୁ ନ ଥାନ୍ତା କିପରି ? ଦେଢ଼ ବର୍ଷର ହେଲାଣି, କେବଳ ବିକଟାଳ ହାଉଁ ହାଉଁ ଶବ୍ଦ ବ୍ୟତୀତ ଆଉ କିଛି ଶବ୍ଦ ତା' ପାଟିରୁ ବାହାରୁନି କିପରି ?

ପୁଅକୁ ଧରି ପହଞ୍ଚିଲୁ ଡାକ୍ତରଙ୍କ ପାଖରେ । ସେ ସବୁ ପରୀକ୍ଷା ନିରୀକ୍ଷା କଲାପରେ କହିଲେ, କୌଣସି ଗଠନଗତ ତ୍ରୁଟି ନାହିଁ । କିଛି ପିଲାଙ୍କର ବହୁ ବିଳମ୍ବରେ ପାଟ

ଖୋଲେ । ଏହାର ମଧ୍ୟ ସେମିତି ହୋଇପାରେ । ତେଣୁ ଧୈର୍ଯ୍ୟ ଧରି ଅପେକ୍ଷା କରନ୍ତୁ । ତେବେ ଚେଷ୍ଟା କରିବେ ତା' ସହ ବେଶି ବେଶି କଥାବାର୍ତ୍ତା କରିବା ପାଇଁ ।

ଦୁଇବର୍ଷ ପୂରିଲା, ଫିଟିଲାନି ପୁଅର ପାଟି । ବରଂ ତା'ର ହାଉଁ ହାଉଁ ଶବ୍ଦଟା ଧୀରେ ଧୀରେ କର୍କଶ ରୂପ ଧାରଣ କରୁଥିଲା । ଆମେ ଆଶଙ୍କା କଲୁ ପୁଅ ମୂକ ହେବ । ଏଥର ଦେଖାଇଲୁ ବ ଡ଼ ଡାକ୍ତର । ସେ ସମସ୍ତ ପରୀକ୍ଷା ପରେ କହିଲେ, ଆପଣଙ୍କ ପୁଅର ସ୍ୱର ପେଟିକାରେ କୌଣସି ଗଠନଗତ ତ୍ରୁଟି ନାହିଁ । ସମସ୍ୟାଟା ରହିଛି ସ୍ନାୟୁଗତ । ଭଲ ହେବ ଯଦି ଆପଣ ଏଥିପାଇଁ କୌଣସି ସ୍ନାୟୁ ବିଶେଷଜ୍ଞଙ୍କ ପରାମର୍ଶ ନିଅନ୍ତି । ଏ ଦିଗରେ ଆମକୁ ସାହାଯ୍ୟ କରିବା ପାଇଁ ସେ ଜଣେ ସ୍ନାୟୁ ବିଶେଷଜ୍ଞର ଠିକଣା ଦେଲେ ।

ତାଙ୍କ ପାଖରେ ପହଞ୍ଚିବା ପରେ ଦାସେ ଆଇଲେ ମୂଳରୁ ଗାଆ ପରି ପୁଣି ଥରେ ଆରମ୍ଭ ହେଲା ସମସ୍ତ ପରୀକ୍ଷାନିରୀକ୍ଷା । କିଛି ନୂଆ ପରୀକ୍ଷା ସହ ଯୋଡ଼ା ହେଲା ହେଡ୍ ସ୍କାନିଂ । ସବୁ ପରୀକ୍ଷା ସରିବା ପରେ ଡାକ୍ତର କହିଲେ ସ୍ୱିଚ୍ ମୋଡୁଲେସନ୍ ପାଇଁ ବ୍ରେନ୍‌ରୁ ଯେଉଁ ନର୍ଭ କମାଣ୍ଡ କରୁଛି ତାହା ଇନାକ୍ଟିଭ୍ ହୋଇଯାଇଛି । ତାକୁ ଅପରେସନ୍ କରାଯାଇ ଆକ୍ଟିଭେଟ କରାଯାଇପାରେ । କିନ୍ତୁ ସେଥିରେ ଗୋଟିଏ ସମସ୍ୟା ରହିଛି ।

କି ସମସ୍ୟା ?

ଯଦି ଅପରେସନ୍ ସଫଳ ନ ହୁଏ, ତେବେ ଲାଭ ଅପେକ୍ଷା କ୍ଷତି ଅଧିକ ହେବ । ଆପଣମାନେ ଯଦି ସେ ରିକ୍‌ସ ନେବାକୁ ପ୍ରସ୍ତୁତ ହେବେ ତେବେ ମୁଁ ଅପରେସନ୍ କରିଦେଇପାରେ, କିନ୍ତୁ ଏବେ ନୁହଁ, ଏହାର ବୟସ ବଢ଼ିବା ପରେ ।

କେତେ ବର୍ଷ ହେଲେ ?

ପିଲାକୁ ପାଞ୍ଚବର୍ଷ ହେଉ । ତେବେ ଏହା ଭିତରେ ଆପଣମାନେ ଚେଷ୍ଟା ଜାରି ରଖିଥାଆନ୍ତୁ । କୌଣସି ଚମତ୍କାରିତା ଘଟି ସେ ଯଦି କଥା କହିବା ଆରମ୍ଭ କଲା ତା ଭଲ କଥା ।

ଆମେ ମନ ବୁଝିବା ପାଇଁ ଡାକ୍ତର ଏକଥା କହୁଥିଲେ, ଆମେ ଜାଣୁଥିଲୁ । କିଛି ଯେ, ଚମତ୍କାରିତା ଘଟିବ- ଏ ବିଶ୍ୱାସ ଯଦିଓ ଆସୁ ନଥିଲା ତଥାପି ମନକୁ ବୁଝାଇ ଫେରିଲୁ । ଫେରିବା ପରେ ମୋର ସ୍ତ୍ରୀ ସଂପୂର୍ଣ୍ଣ ଈଶ୍ୱରଙ୍କ ଭରସାରେ ଘରେ ଅହରହ ଗୀତା, ଭାଗବତ, ଚଣ୍ଡୀପାଠ ଓ ଅନ୍ୟାନ୍ୟ ମନ୍ତ୍ର ଜପ ଚାଲିଲା । ଘରର ଏସବୁ ପୂଜାପାଠ, ହୋମ, ଯଜ୍ଞ ଆମକୁ ବାରମ୍ବାର ସ୍ମରଣ କରିବାକୁ ବାଧ୍ୟ କରୁଥିଲା ଯେ, ଏ ପୂଜା କୌଣସି ମହତ୍ତର ଲକ୍ଷ୍ୟ କିମ୍ବା ମୋକ୍ଷପ୍ରାପ୍ତି ପାଇଁ ଉଦ୍ଦିଷ୍ଟ ନୁହେଁ, ଏହା କେବଳ ପୁଅର ପାଟି ଖୋଲିବା ପାଇଁ ।

ଆମର ମନ୍ତ୍ର ଜପ ଓ ପୂଜାର ପ୍ରାଦୁର୍ଭାବ ଯେତେବେଳେ ଅଧିକ ବୃଦ୍ଧି ପାଏ, ବାଲୁତ ପୁତ୍ର ତାହାର ସ୍ୱଭାବ ସୁଲଭ ହାଉଁ ହାଉଁ ସ୍ୱରକୁ ଅଧିକ ଅଧିକ କରେ । ସେ ପୂଜା ପାଠରେ ନିଜକୁ ସାମିଲ କରି ବସି ରହେ ପାଖରେ । ଏହା ଫଳରେ ମୋ ସ୍ତ୍ରୀଙ୍କ ମନରେ ଧୀରେ ଧୀରେ ଗୋଟେ ବିଶ୍ୱାସ ଜନ୍ମୁଥିଲା ଯେ ଦିନେନା ଦିନେ ଅକସ୍ମାତ ଖୋଲିଯିବ ତା'ର ପାଟି, ସେ ଡାକ ଛାଡ଼ିବ ମାଆ - ମାଆ ।

ଆମର ଦୀର୍ଘ ଦିନର ପୂଜା ଫଳରେ ମଧ୍ୟ ଘଟୁ ନ ଥିଲା ସେମିତି କିଛି ଚମତ୍କାରିତା । କିନ୍ତୁ ଆମ ଅଲକ୍ଷ୍ୟରେ ଘଟୁଥିଲା ଆଉ ଏକ ଚମତ୍କାରିତା ଯାହାକୁ ଆମେ କେହି ନଜର ଦେଇ ନ ଥିଲୁ । ବିଷ୍ଣୁ ସହସ୍ର ନାମଠାରୁ, ଗୀତା, ଭାଗବତ ଓ ବିଭିନ୍ନ ମନ୍ତ୍ର, ଯାହା ଏଇ କିଛି ବର୍ଷ ହେଲା ପଢ଼ା ଚାଲିଥିଲା ଘରେ, ତାକୁ ଶାରୀଟି ପ୍ରାୟ ମୁଖସ୍ଥ କରିସାରିଥିଲା । ଆମର ନିତିଦିନିଆ କାମ ପାଇଁ ଯେତେବେଳେ ବନ୍ଦ ହୋଇଯାଏ ମନ୍ତ୍ରପାଠ, ସେ ଆରମ୍ଭ କରିଦେଉଥିଲା ତା'ର ମନ୍ତ୍ରପାଠ । ସଂସ୍କୃତ ଶବ୍ଦର ଏତେ ଶୁଦ୍ଧ ଉଚ୍ଚାରଣ ପୁଣି ସାମାନ୍ୟ ଏକ ପକ୍ଷୀ ମୁହଁରେ ଶୁଣି ଆମେ ଆଶ୍ଚର୍ଯ୍ୟ ହେଉଥିଲୁ । ମୁଁ ତ ମନେ ମନେ ଭାବୁଥିଲି ସେ ଫରେଷ୍ଟର କହିଥିବା କଥା ସତ, ଇଏ ଏକ ବିଚିତ୍ର ଓ ବିରଳ ପକ୍ଷୀ ।

ସିନ୍ଦୂରା ଫାଟିବା ପୂର୍ବରୁ ଶାରୀ ଡାକ ଛାଡ଼ିବ, ମୁନ୍ନା ଉଠ, ସକାଳ ହେଲା । ତା'ର ଡାକ ଶୁଣି ପୁଅ ଧୀରେ କରି ଉଠିଯାଏ ତା' ପଞ୍ଜୁରି ପାଖକୁ । ଶାରୀ କହିବ, କୁହ ଓଁ । ପୁଅ ଚେଷ୍ଟା କରୁଥିବ ବାରମ୍ବାର । ମାତ୍ର ସବୁବେଳ ପରି ସେଇ ଗୋଟିଏ ଶବ୍ଦ ହିଁ ବାହାରୁଥିବ ତା' ପାଟିରୁ, ହାଉଁ ହାଉଁ । ପୁଅ ତା'ର ପଞ୍ଜୁରିର ଦ୍ୱାର ଖୋଲିଦେବ । ସେ ଉଠି ଆସି ତା' କାନ୍ଧରେ ବସିଯାଇ କହିବ, କୁହ ଓଁ । ସେ ଓଁ - ଓଁ କହି ଚାଲିଥିବ ଅଥଚ ପୁଅ ଓଲଟାଇ ପାରୁ ନ ଥିବ ତା'ର ଜିଭକୁ । ସେ କେବଳ ଗେହ୍ଲା କରୁଥିବ ଶାରୀଟିକୁ ପରମ ଆତ୍ମୀୟତାରେ । ଚାହୁଁଥିବ ତା'ର କଥାକୁହା ଥଣ୍ଟକୁ ଗୋଟେ ବିସ୍ମୟ ଭାବ ନେଇ ।

ପୁଅ ଯଦିଓ କଥା କହିପାରୁ ନ ଥିଲା, ତଥାପି ଅନ୍ୟ ସବୁ ସ୍ୱାଭାବିକ ପିଲାଙ୍କ ପରି ତା'ର ଅଝଟ ପଣ ଥିଲା । ସବୁଠୁ ବେଶି ଅଝଟ ତା'ର ଥିଲା ଖାଇବା ସମୟଟା । କିନ୍ତୁ ଶାରୀ ପାଖରେ ବସାଇ ଖୁଆଇବା ବେଳେ ତା'ର ଅଝଟ କମି ଯାଉଥିଲା । ଶାରୀ ପାଖରେ କିଛି ବୁଟ ଭିଜା, ମଟର ଛୁଇଁ କିମ୍ବା ଫଳଟିଏ ରଖିଦେଲେ, ସେ ତା'ର ଖାଇବାକୁ ଦେଖି ଦେଖି ବିନା ଅଝଟରେ ଖାଇ ନେଉଥିଲା ।

ପୁଅ କଥା କହିପାରୁ ନଥିଲା । ଏଥିପାଇଁ ବନ୍ଧୁବାନ୍ଧବ, ଆତ୍ମୀୟସ୍ୱଜନଙ୍କ ମନରେ ଥିଲା ଦୁଃଖ । ତେଣୁ ଲାଗି ରହିଥିଲା ଏମାନଙ୍କ ଭିଡ଼ ଆମ ଘରେ । ପୁଅ ପାଇଁ

ସେମାନେ ଆମକୁ ସମବେଦନା ଜଣାଇବାର ଠିକ୍ ପରେ ପରେ ଆଗ୍ରହ ପ୍ରକାଶ କରୁଥିଲେ ଶାରୀର କଥା ଶୁଣିବା ପାଇଁ । ତା' କଥା ଶୁଣି ସେମାନେ ଏମିତି ତନ୍ମୟ ଓ ଆଶ୍ଚର୍ଯ୍ୟ ହୋଇ ଯାଉଥିଲେ ଯେ ଫେରିବା ବେଳଯାଏଁ କେବଳ ପ୍ରଶଂସା କରୁଥିଲେ ଶାରୀର କଥା କହିବାର ଶକ୍ତିକୁ । ଶାରୀ କଥା ଶୁଣିବା ପରେ ସେମାନେ ଯେଉଁ ଉଲ୍ଲାସ ଭାବ ଦେଖାନ୍ତି ସେଥିରେ କୁଆଡ଼େ ହଜିଯାଏ ସେମାନଙ୍କର ଆସିବାର ଅସଲ ଉଦ୍ଦେଶ୍ୟ । ସେମାନେ ଫେରିଯିବା ପରେ ଅଧିକ ବିମର୍ଷ ହୋଇପଡ଼ନ୍ତି ମୋ ସ୍ତ୍ରୀ । ରାଗ ତମ୍‌ତମ୍ ହୋଇ ପ୍ରଶ୍ନ କରନ୍ତି, କାହିଁକି ଆସିଥିଲେ ଏମାନେ, ପୁଅର ମୂକପଣ ପାଇଁ ସମବେଦନା ଜଣାଇବା ପାଇଁ ନା ଶାରୀର କଥା ଶୁଣିବା ପାଇଁ?

ଧୀରେ ଧୀରେ ଏଇ ଛୋଟିଆ ସହରଟିରେ ଗୋଟିଏ ଚର୍ଚ୍ଚାର ବିଷୟ ହୋଇ ଯାଇଥିଲା ଶାରୀ । ମୋର ପରିଚୟରେ ମଧ୍ୟ ଯୋଡ଼ା ହୋଇଯାଇଥିଲା, ଶାରୀ ବାଲା ରେଞ୍ଜର୍ । ମୁଁ ଯେଉଁଠିକୁ ଯାଉଥିଲି ଯେମିତି ହେଲେ କେଉଁବାଗରେ ପଡ଼ିଯାଏ ଶାରୀ କଥା । ମୁଁ ତାକୁ କେଉଁଠୁ କିଣିଥିଲି, କେତେ ଟଙ୍କାରେ କିଣିଥିଲି ଏବଂ ଏହି ଭେରାଇଟିର ଶାରୀ କେଉଁଠି ମିଳିବ ଇତ୍ୟାଦି ଇତ୍ୟାଦି । କେତେକ ତ କହୁଥିଲେ ଶାରୀ କଥା କହେ ଶୁଣିଥିଲୁ, ଦେଖିଥିଲୁ ମଧ୍ୟ । ସେସବୁ ସାଧାରଣ ପଦେ ଦୁଇପଦ କଥା– ରାମ ରାମ, ଚକ୍ରଧର ପକ୍ଷୀ ଜନ୍ମରୁ ପାରିକର । ଅତିବେଶିରେ ପାଳିଥିବା ଲୋକର ପିଲାମାନଙ୍କର ନାଆଁ ଧରି ଡାକିବା ଇତ୍ୟାଦି । ମାତ୍ର ଇଏ ତ ଅଦ୍ଭୁତ ଶାରୀ । ବିଷ୍ଣୁ ସହସ୍ର ନାମଠାରୁ ଗୀତା, ଭାଗବତ ଯାଏ ସବୁ ତୁଣ୍ଡରେ । ଆପଣ ତାକୁ ଏସବୁ ଶିଖାଇଲେ ନା ସିଏ ଆପେ ଆପେ ଶିଖିଗଲା ।

– ଆପେ ଆପେ ।

– ଆପେ ଆପେ ! ଇଏ ତ ନିଶ୍ଚୟ ଶୁକମୁନିଙ୍କୁ ଦିବ୍ୟ ଜ୍ଞାନ ଦେଇଥିବା ଶାରୀର ବଂଶଧର ହୋଇଥିବ । ଯାହାହେଉ ଏଇଟାକୁ ଆପଣ ଭାଗ୍ୟ କହିବ, ଏମିତିକା ଶାରୀଟିଏ ପାଇଗଲେ ।

ଏପଟେ ପୁଅର ବାକ୍‌ହୀନତା ଓ ସେପଟେ ଶାରୀର ବାକ୍‌ପଟୁତା । ତା'ର ପ୍ରଶଂସା ଶୁଣିଶୁଣି ତା' ପ୍ରତି ମୋର ଜନ୍ମୁଥିଲା ବିଦ୍ୱେଷ ଓ ମୋ ସ୍ତ୍ରୀଙ୍କର ଈର୍ଷା । ବେଳେବେଳେ ସେ ତା'ର ମାଆ, ମାଆ ଡାକରେ ଅତିଷ୍ଠ ହୋଇ କହି ପକାନ୍ତି, ବନ୍ଦ କର, ବନ୍ଦ କର ସେ ଡାକ । ଯା' ମୁହଁରୁ ମାଆ ଡାକ ଶୁଣିବା କଥା ତ ଶୁଣିପାରୁନି, ଆଉ ଇଏ ଡାକିଲା, ମାଆ - ମାଆ । ମୁଁ କ'ଣ ଅଣ୍ଡା ଫୁଟେଇ ତୋତେ ଜନ୍ମ କରିଥିଲି ?

ମୁଁ ଜାଣିପାରେ ତାଙ୍କର କ୍ରୋଧର କାରଣ । ତାଙ୍କୁ ବୁଝାଏ ତା' ଉପରେ ଅଯଥାରେ ରାଗି ଲାଭ କ'ଣ ? ଏଇଟା ଆମର ବିମର୍ଷ ଭାଗ୍ୟ ବୋଲି ଧରିନିଅ ।

ମୋ ସ୍ତ୍ରୀ ତାଙ୍କ କ୍ରୋଧ ପ୍ରଶମିତ କରିବା ପରିବର୍ତ୍ତେ କହନ୍ତି, ମୋର ତ ଧାରଣା ହେଉଛି ମୋ ପୁଅ ମୂକହେବା ପାଇଁ ଶାରୀ ଦାୟୀ। ଇଏ ନିଶ୍ଚୟ ଏକ ମାୟାବୀ ଶାରୀ। ଚୋରାଇ ନେଇଛି ମୋ ପୁଅର କଥା କହିବା ଶକ୍ତିକୁ। ନଚେତ୍ ଶାରୀଟିଏ ହୋଇ ପାଟିରେ ବାଟୁଳି ବାଜୁନି, ଏତେ ମନ୍ତ୍ର, ଶ୍ଳୋକ କେମିତି ଗାଇଯାଉଛି ?

ମୁଁ ଗମ୍ଭୀର ହୋଇ ଚିନ୍ତା କଲି, ସତ ବି ହୋଇପାରିଥାଏ ଏକଥା। ଭଗବାନ ଗୋଟିଏ ପଟରେ ଅଯାଚିତ ଭାବେ କିଛି ଦେଲେ ଅନ୍ୟ ପଟରେ କିଛି ନେଇ ଯାଆନ୍ତି। ହେଲେ ମନର ଭାବ ମନରେ ରଖି ଚୁପ୍ ରହିଲି।

ପୁଅ ଯେତିକି ଯେତିକି ବଡ଼ ହେଉଥିଲା ତା'ର ଶବ୍ଦ ସ୍ଫୁରଣର ବୈକଲ୍ୟ ଭାବ ଓ ବୀଭତ୍ସ ସ୍ୱର ସେତିକି ଅଧିକ ଅଧିକ ବଢୁଥିଲା। ତା' ମନୋଭାବର ସମସ୍ତ ପ୍ରକାଶ ହିଁ ଗୋଟିଏ ଶବ୍ଦରେ ସୀମିତ ରହୁଥିଲା, ହାଉଁ ହାଉଁ। ତା' ମନୋଭାବକୁ ପ୍ରକାଶ କରି ନ ପାରି ସେ ଯେତିକି ଦୁଃଖିତ ହେଉ ନ ଥିଲା, ତା'ଠାରୁ ଅଧିକ ହେଉଥିଲୁ ଆମେ। ସବୁବେଳେ ଗୋଟିଏ ଚିନ୍ତା ଆମକୁ ଘାରି ରଖୁଥିଲା, ଆଉ ଅଳ୍ପଦିନ ପରେ ପୂରିଯିବ ପାଞ୍ଚବର୍ଷ। ଏବେ ଅପରେସନ୍ କରାଇବାର ସମୟ ଆସିଗଲାଣି। ଅପରେସନ୍ କଥା ଭାବିବା କ୍ଷଣି ଆମେ ବେଶି ଚିନ୍ତିତ ହୋଇ ପଡୁଥିଲୁ ଯେ ଯଦି ଅପରେସନ୍ ସକ୍‌ସେସ୍ ନ ହୁଏ, ତେବେ ? କ'ଣ କହିଥିଲେ ଡାକ୍ତର, ଲାଭ ଅପେକ୍ଷା କ୍ଷତିଟା ଅଧିକ ହେବ। କ'ଣ ହୋଇପାରେ ସେ କ୍ଷତିଟା ? ପୁଅର ଜୀବନ ଉପରେ ବିପଦ କି ? ଯଦି ଜୀବନ ଉପରେ ବିପଦ, ତେବେ କ'ଣ ଲାଭ ସେ ଅପରେସନ୍ କରାଇ ? କଥା କହିପାରୁ କି ନ ପାରୁ, ବଞ୍ଚିକି ରହୁ। ପାଠଶାଠ ପଢ଼ି ପାରିବନି ତ ନ ପଢୁ। ଏତେ ସଂପତ୍ତି ଅଛି କ'ଣ ଚଳିଯିବନି ?

ଆମେ ସ୍ୱାମୀ ସ୍ତ୍ରୀ ଉଭୟେ ନିଷ୍ପତ୍ତି ନେଲୁ ଅପରେସନ୍ କରାଇବାର ରିସ୍କଟା ଜାଣି ଯଦି ଅପରେସନ୍ କରାଉଛୁ ଆଉ ଅପରେସନ୍ ପରେ ଯଦି କିଛି ହୋଇଗଲା, ତେବେ ଆମେ ନିଜକୁ କ୍ଷମା କରିପାରିବୁ ତ ? ନା, ବରଂ ଏମିତି ଥାଉ, କଥା କହି ନ ପାରିଲା ନାହିଁ।

ମନ୍ତ୍ର ତନ୍ତ୍ର ସହ ମୋ ସ୍ତ୍ରୀ ଏବେ ବେଶି ବେଶି ସାହାରା ନେଉଥିଲେ ସାଧୁ, ସନ୍ଥ ଓ ସନ୍ୟାସୀମାନଙ୍କର। ସେ କେଉଁଠୁ ଗୋଟେ ଖବର ସଂଗ୍ରହ କଲେ ଯେ ଜଣେ ସିଦ୍ଧ ସନ୍ନ୍ୟାସୀ ରହୁଛନ୍ତି ଋଷିକେଶର ଏକ ଗୁମ୍ଫାରେ। ତାଙ୍କର କର ସ୍ପର୍ଶରେ ସବୁ ରୋଗ, ଶୋକ ଓ ଦୁଃଖ ଦୂର ହୋଇଯାଉଛି। ସେ ମୋତେ ବାଧ୍ୟ କଲେ ତାଙ୍କ ପାଖକୁ ଯିବା ପାଇଁ। ପୁଅକୁ ସାଙ୍ଗରେ ଧରି ବହୁ କଷ୍ଟରେ ଯାଇ ଆମେ ତାଙ୍କ ପାଖରେ ପହଞ୍ଚିଲୁ। ପହଞ୍ଚିଲାବେଳକୁ ସେ ଥିଲେ ଧ୍ୟାନସ୍ଥ। ଆମକୁ ଅପେକ୍ଷା କରିବାକୁ ପଡ଼ିଲା ସାରାଦିନ

ସାରାରାତି । ତାଙ୍କର ଜଣେ ଶିଷ୍ୟ ଆମକୁ କହିଲେ, କାଲି ସକାଳୁ ବାବାଙ୍କର ଧ୍ୟାନ ଭଙ୍ଗ ପରେ ସେ ପ୍ରଥମେ ଯିବେ ଗଙ୍ଗା ନଦୀକୁ । ସେଠାରୁ ସ୍ନାନସାରି ଫେରିବା ସମୟ ହିଁ ହେଉଛି ପ୍ରକୃଷ୍ଟ ସମୟ, ନିଜର ସମସ୍ୟା ଉପସ୍ଥାପନ କରିବାର । ଆପଣମାନେ କାଲି ସକାଳୁ ତାଙ୍କୁ ଅନୁସରଣ କରିବେ । ମାତ୍ର ଗୋଟିଏ କଥା ମନେ ରଖିବେ, ସେ କିଛି ନ ପଚାରିବା ଯାଏଁ ତାଙ୍କ ସହ କୌଣସି କଥାବାର୍ତ୍ତା କରିବାକୁ ଚେଷ୍ଟା କରିବେ ନାହିଁ ।

ପରଦିନ ପ୍ରଭାତରେ ବାବାଙ୍କର ଧ୍ୟାନଭଙ୍ଗ ହେଲା । ସେ ଧ୍ୟାନସ୍ଥ ମୁଦ୍ରାରୁ ଉଠି ସିଧା ଚାଲିଲେ ଗଙ୍ଗା ତୀରକୁ । ଏକ ନିରାପଦ ଦୂରତାରେ ଆମେ ତାଙ୍କୁ ଅନୁସରଣ କଲୁ । ବାବା ସ୍ନାନତର୍ପଣ ସାରିବା ପରେ ଚାଲିଲେ ଆଶ୍ରମ ଅଭିମୁଖେ । ଆମେ ପୁଣି ତାଙ୍କ ପଛେ ପଛେ ଚାଲିଲୁ । ଆମର ଉପସ୍ଥିତି ବାବା ଉପଲବ୍ଧି କରି ସାରିଥିଲେ । ହଠାତ୍ ଏକ ବୃକ୍ଷ ମୂଳରେ ସେ ଠିଆ ହୋଇଗଲେ । ନିଜ କମଣ୍ଡଳୁରୁ ସାମାନ୍ୟ ଜଳ ବୃକ୍ଷ ମୂଳରେ ଦେଇ ତା' ଉଦ୍ଦେଶ୍ୟରେ କହିଲେ, ଶବ୍ଦମୟ ବିଶ୍ୱରେ ନିଜକୁ ପ୍ରକାଶ କରିବା ପାଇଁ ତମେ ଶବ୍ଦର ସାହାରା ନେଉଛ କି ?

ଆମେ କେବଳ ଆଶ୍ଚର୍ଯ୍ୟ ହୋଇ ତାଙ୍କ କଥା ଶୁଣିଥିଲୁ । ଗୋଟିଏ ମୁହୂର୍ତ୍ତ ପରେ ସେ ପୁଣି ତାଙ୍କର ଯାତ୍ରା ଆରମ୍ଭ କଲେ । ଏ ରହସ୍ୟର ଉତ୍ତର ପଚାରିବାର ସାହସ କରି ନ ପାରି ଆମେ କେବଳ ତାଙ୍କ ପଛେ ପଛେ ଚାଲିଥିଲୁ । ସେ ତାଙ୍କର ଯାତ୍ରା ନ ରୋକି ଆମ ଉଦ୍ଦେଶ୍ୟରେ କହିଲେ, ଅନୁସରଣର ମୂଲ୍ୟ କିଛି ନାହିଁ, ଅନୁଧ୍ୟାନ କର । ବ୍ରହ୍ମ ହିଁ ଶବ୍ଦ । ବ୍ରହ୍ମକୁ ନ ଚିହ୍ନି ଶବ୍ଦ ପାଇଁ ଏ ବ୍ୟାକୁଳତା କାହିଁକି ?

ତାଙ୍କ ସ୍ୱରରେ କି ଶକ୍ତି ଥିଲା କେଜାଣି, ଆମେ ଆଉ ତାଙ୍କୁ ଅନୁସରଣ କରିବାର ସାହସ କରିପାରିଲୁ ନାହିଁ ।

ଘରକୁ ଫେରିବା ପରେ ମୁଁ ଚିନ୍ତା କଲି, ଏ ପୃଥିବୀରେ କୋଟି କୋଟି ପ୍ରକାର ଜୀବ ଅଛନ୍ତି । ମଣିଷକୁ ଛାଡ଼ି ଦେଲେ ଆଉ ତ କେହି କଥା କହି ପାରୁନାହାନ୍ତି । ଆଉ କେହି କଥା ନ କହି ପାରିବା ଫଳରେ ତ ଅଟକି ଯାଇନି ପୃଥିବୀ । କ୍ଷୁଣ୍ଣ ହେଉନି ଏହାର ମାଧୁର୍ଯ୍ୟ; ବ୍ୟାହତ ହେଉନି ତ ଭାବର ଆଦାନ ପ୍ରଦାନ କିମ୍ବା ବ୍ୟାହତ ହେଉନି ତ ପୃଥିବୀର ଭାବମୟତା । ପ୍ରକୃତି ଭିତରେ ଥିବା ନିଃଶବ୍ଦର ଆବେଦନ ଯେତିକି ଗଭୀର, ଯଦି ଗଛଲତା, ବଣ-ପାହାଡ଼, ନଦ-ନଦୀ, ଜୀବଜନ୍ତୁ ସମସ୍ତେ କଥା କହିପାରୁଥାନ୍ତେ ତେବେ କ'ଣ ରହିପାରିଥାଆନ୍ତା ପୃଥିବୀର ଶାନ୍ତ, ସ୍ନିଗ୍ଧ ଓ ପବିତ୍ର ନିରବତା ? ମଣିଷ ବ୍ୟତୀତ ଈଶ୍ୱର ସବୁଠି ଶବ୍ଦ ଦେଇଛନ୍ତି ଅଥଚ ମୁଖର କରିନାହାନ୍ତି କାହାକୁ । ସେଥିପାଇଁ ତ ମାନସିକ ଶାନ୍ତି ପାଇବା ପାଇଁ ମଣିଷ ଖୋଜେ ନିରବତା, ଖୋଜେ ପ୍ରକୃତିର କୋଳ । ମନେ ପକାଇଲି, ସେହି ବୃକ୍ଷକୁ ନିମିତ୍ତ କରି ଆମ

ଉଦ୍ଦେଶ୍ୟରେ ସନ୍ୟାସୀ କହିଥିବା କଥାକୁ- ଶବ୍ଦମୟ ବିଶ୍ୱରେ ନିଜକୁ ପ୍ରକାଶ କରିବା ପାଇଁ ତମେ ଶବ୍ଦର ସାହାରା ନେଉଛ କି? ଧୀରେ ଧୀରେ ଉନ୍ମୋଚିତ ହେଉଥିଲା ସନ୍ୟାସୀଙ୍କ କଥାର ରହସ୍ୟ। ମୋତେ ଲାଗିଲା ମୁଁ ଏତେ ଦିନଯାଏ ପୁଅର ମୂକପଣ ନେଇ ମିଥ୍ୟାରେ ଭ୍ରମୁଥିଲି। ମୋର ତା' ଓଠର ଶବ୍ଦକୁ ନୁହଁ, ତା' ମୁହଁର ଭାବକୁ ଚିହ୍ନିବାର ଥିଲା।

ଆଶ୍ରମରୁ ଫେରିବା ପରେ ମୋ ସ୍ତ୍ରୀଙ୍କର ମନୋଭାବର ମଧ୍ୟ ଯଥେଷ୍ଟ ପରିବର୍ତ୍ତନ ଘଟିଥିଲା। ଲାଗୁଥିଲା ସେ ଯେମିତି ତାଙ୍କର ସମସ୍ୟା ସମାଧାନ ଖୋଜି ପାଇଯାଇଛନ୍ତି। ଆଗଭଳି ସେ ଶାରୀଟି ପ୍ରତି ତାଙ୍କର ଅସୂୟା ଭାବ ଦେଖାଉ ନଥିଲେ। ବରଂ ଶାରୀର ଯତ୍ନ ନେବାରେ ସେ ଅଧିକ ତତ୍ପର ହୋଇ ଉଠିଥିଲେ। ନିଜେ ଘରର କାମ କଲାବେଳେ ଶାରୀକୁ କହୁଥିବେ, ଗାଆ ଭାଗବତ କିମ୍ବା ବିଷ୍ଣୁ ସହସ୍ର ନାମ। ସନ୍ଧ୍ୟା ଆରତି ସମୟରେ ପୁଅକୁ ପାଖରେ ବସାଇ ଶାରୀକୁ କହିବେ ଗାଆ ଜୟ ଜଗଦୀଶ ହରେ।

ଦିନେ ସକାଳୁ ଘର ଅଗଣାରେ ଥିବା ପାଣି ଟ୍ୟାପ୍ ପାଖରେ ଶାରୀର ପଞ୍ଜୁରିକୁ ସଫା କରି ତାକୁ ଗାଧୋଇ ଦେଲେ। ପୁଅ ବି ଏ କାମରେ ସାହାଯ୍ୟ କରୁଥିଲା ତାଙ୍କୁ। ଗାଧୋଇ ସାରିବା ପରେ ପରେ ପାଣି ଲାଗି ଶାରୀଟି ପୂରା ସାଙ୍କୁଡ଼ି ଯାଇଥାଏ। ସେ ଉଠି ଆସିଲେ ଘରକୁ ଗୋଟେ ଶୁଖିଲା କପଡ଼ା ନେଇ ତା'ର ପରକୁ ପୋଛି ଦେବା ପାଇଁ। ଏହି ସମୟରେ ଗୋଟେ କଳା କଟାସ କୁଆଡ଼େ ଥିଲା କେଜାଣି ଛପି ଛପି ଆସି ଝାମ୍ପ ଦେବାକୁ ବସିଥିଲା ଶାରୀଟି ଉପରେ। ପୁଅ ହାଉଁ ହାଉଁ ହୋଇ ଚିତ୍କାର କଲା। ତା' ସ୍ୱରରେ ପଛକୁ ହଟୁ ନ ଥିଲା କଟାସଟି। ଗୋଟିଏ ବାଡ଼ି ଉଠାଇ ତା' ଆଗରେ ଠିଆ ହୋଇ ଜୋର୍‌ରେ ହାଉଁ ହାଉଁ ହେଉଥିଲା ପୁଅ, ମାତ୍ର ସେ ନଛୋଡ଼ବନ୍ଧା ହୋଇ ସୁଯୋଗକୁ ଅପେକ୍ଷା କରୁଥିଲା। ସୁଯୋଗ ଉଣ୍ଡି ସେ ଯେମିତି ଶାରୀ ଉପରକୁ ଝାମ୍ପି ପଡ଼ିଛି, ପୁଅ ଶାରୀଟିକୁ ତା' କୋଳ ଭିତରେ ଲୁଚାଇ ଧରି ଚିତ୍କାର କଲା - ମାଆ, ମାଆ, ମାଆ ଆ...।



## ରବି ପଣ୍ଡା

# ଅନୁଭବ

ଅନୁଭବଟିଏ ଖୋଜୁଥିଲା ଅନୁପମ । ଅନନୁଭୂତ ସ୍ପର୍ଶଟିଏ ପାଇଁ ଖାଲି ସେ ହାଁ ହାଁ ହେଉଥିଲା । ତାକୁ ଲାଗୁଥିଲା କିଏ ଗୋଟେ ତା'ଭିତରେ କାନ୍ଦୁଛି । ତାକୁ ସେ ବୋଧ ଦେଉଥିଲା, ହେଲେ ତା'ର ଆତ୍ମସତ୍ତାଟି ବିଳାପ କରି ଉଠୁଥିଲା ଯେ ସେ ନିଜପାଇଁ ମିଛ ଅଭିନୟଟିଏ ହିଁ କରିଚାଲିଛି । କାହାକୁ କିଛି କହିପାରୁ ନଥିଲା । ଖୋଲି ମେଲେଇ ପାରୁନଥିଲା ନିଜକୁ । କାରଣ ସେ ଜାଣିଛି ବହୁ ପରୀକ୍ଷାରେ ତା'ର ଅସାମର୍ଥ୍ୟତା ପ୍ରକାଶ ପାଇସାରିଛି । ସୁତରାଂ ଅନୁଭବ ତ ପାଇନାହିଁ ବରଂ ଅନାଗ୍ରହ, ତାଚ୍ଛଲ୍ୟକୁ ଏକ ପ୍ରତ୍ୟାଖ୍ୟାତ ଜୀବନ ଜୀଇଁବାକୁ ବାଧ କରିଛି ।

ଏବେ ଅନୁପମ ଯାହା ଅଛି ତାହା ହିଁ ସତ୍ୟ । ତା'ର ଦୁଃସ୍ଥ ଅତୀତକୁ ସେ ଇଚ୍ଛାକରି ଫେରେନା । ଭୁଲିଯାଇଛି ଏକାବେଳକେ । ଭୁଲିଯିବା ଯେମିତି ଅନିବାର୍ଯ୍ୟ ତା'ପାଇଁ । ବେଳେବେଳେ ସେ ଭାବନାରେ ପଡ଼ିଯାଏ । ଗାଲରେ ହାତଦେଇ ମାଟିକୁ ଚାହେଁ, ଚାହେଁ ଆକାଶକୁ । ଦୋହଲିଯାଏ ତା'ର ମାନସିକତା । ଗୋଟେ କଥା ଭାବୁ ଭାବୁ ଆଉ ଗୋଟେ କଥା ଧସେଇ ଆସେ ମନ ଭିତରକୁ । ଅସ୍ଥିରତା ଭିତରେ ତା'ର ଚିନ୍ତା ବିଭ୍ରାଟ ଘଟିଯାଏ ।

ତା'ର ସମସ୍ତ ସ୍ଥିରତାକୁ ଏବେ ଅସ୍ଥିର କରି ପକାଉଚି ସୋନାଲି । ସୋନାଲି ଦିଦି । ତା'ର ମାଲିକ କୁନ୍ଦନବାବୁଙ୍କ ଝିଅ । ତାକୁ ଅପରିଚ୍ଛନ୍ନ ଅନୁଆରୁ ଅନୁପମ କରିଚି ସେଇ ସୋନାଲି । ତା' ଜୀବନର ବିଦଗ୍ଧ ଅତୀତକୁ ଛାଡ଼ି ଯେଉଁଠୁ ସେ ନୂଆ ଜୀବନଟିଏ ପାଇଲା ସେଇଠୁ ସେ ଚିହ୍ନିଛି ସୋନାଲିକୁ ।

କେଉଁ ଏକ ଅବଶ ଅପରାହ୍ନରେ ପହଞ୍ଚିଥିଲା ଏଇ ଘର ଦୁଆରେ । ଦେହରେ ଥିଲା ଚିରା ଜାମା, ହାପ ପ୍ୟାଣ୍ଟ ଥିଲା ଫଟା । ତା'ର ମିଟିମିଟି କରୁଣ ଚାହାଣିରୁ ତା'ର ଅସହାୟତାକୁ ପଢ଼ି ନେଇଥିଲେ କୁନ୍ଦନବାବୁ । ଆଉ କହିଥିଲେ ଏଇ ଘରେ ଆମ ପାଖରେ ରହି ବୋଲହାକ କର । ନିଜ ଘର ବୋଲି ଧରିନେ । କିଛି ଅସୁବିଧା ହବ ନାହିଁ ତୋ'ର । ବାବୁଆଣୀ ବି ଭଲଲୋକ । ମାଆଟି ଭଳି ଲାଗିଲେ । ଅନୁପମ

ଯେମିତି ପାଦତଳେ ଭୂମିଟିଏ ପାଇଲା । ଠାକି ଗଲା ଏଇଠି । ମନେପଡୁଚି ତା'ର ସେଦିନର ସେଇ ଅପରଛନିଆ ରୂପଭେକ ଦେଖି ବେଶ୍ ନାସିକା କୁଂଚନ କରି ପଚାରିଥିଲେ ତାଙ୍କ ଝିଅ ସୋନାଲି, ତୋ' ନାଁ କ'ଣ କିରେ ?

– ଅନୁ । ଅନୁଆଁ...

– ଉଁ ହୁଁ... ଅନୁଆଁ ହନୁଆଁ ନୁହ... ତୋ' ନାଁ ଆଜିଠୁଁ ଅନୁପମ, ବୁଝିଲୁ ?

ତାଜୁବ ହୋଇଥିଲା ଅନୁଆ । ଅନୁଆ ନାଁ ଭିତରେ ଏଡ଼େ ସୁନ୍ଦର ନାଁଟି ଛପି ରହିଥିଲା ବୋଲି ତାକୁ ତ ମୋଟେ ମାଲୁମ ନଥିଲା ।

ବାସ୍, ସେଇଦିନରୁ ସେ ଅନୁପମ ହୋଇଗଲା, ଆଉ ହୋଇଗଲା ସୋନାଲି ଦିଦିର ଅନୁଗତ ବଶମ୍ବଦ ।

ସେଇ ରୁଚିସଂପନ୍ନ ବଙ୍ଗାଳୀ ପରିବାରର ସ୍ୱାଭାବିକ ପରିଚ୍ଛନ୍ନତା ଓ ଚଳଣିରେ ଆସ୍ତେ ଆସ୍ତେ ବାଗେଇ ଯାଇଥିଲା ସେ । ତା'ର ତାରୁଣ୍ୟ ଯେତେବେଳେ ହାଫ୍ ପ୍ୟାଣ୍ଟ ଓ ଗଞ୍ଜି ତଉଲିଆ ପୋଷାକରେ, ପାଟିରୁ ଆଜ୍ଞା ଆପଣ ଭାଷାରେ, ବଶମ୍ବଦ ହେବାର ଆଚରଣରେ ଓ ସର୍ବୋପରି ଚାକର ପିଲାର ପରିଚୟରେ କଟୁଥିଲା, ସେତେବେଳେ ସେ ବୁଝିପାରୁଥିଲା, ପିଲାଟିଏ ହେଲେ ତା'ର ଥାଏ ବାପଟିଏ ଆଉ ମାଆଟିଏ । ମାଆଟିର ଥାଏ ସ୍ନେହ ତ ବାପାର ଥାଏ ସ୍ୱପ୍ନ । କିନ୍ତୁ କାହିଁ ? ଅନୁପମ ତ ସେମିତି ଅନୁଭବଟିଏ ପାଇନାହିଁ ଜନ୍ମଠାରୁ ? କିଏ ତା'ର ବାପା ? କୋଉଠି ତା'ର ମାଆ ? ସେ ତ ସେ ସଂପର୍କରେ ସଂପୂର୍ଣ୍ଣ ଅନଭିଜ୍ଞ ।

ତା' ଭିତରେ ଇଚ୍ଛାଟିଏ ଗଜୁରୁଥିଲା କାହାକୁ ବାପା ବୋଲି ଡାକି ଦିଅନ୍ତା, ବୋଉ ବୋଲି ଡାକି କୋଳରେ ପଶିଯାଆନ୍ତା... । ସେ ଦେଖୁଚି ସୋନାଲି କିପରି ପ୍ରଜାପତିଟିଏ ପରି ଉଡ଼ି ବୁଲୁଚି ବାପା କୋଳରୁ ବୋଉ କୋଳ । ତା'ର କାୟାକୁ କିପରି ସଦାସର୍ବଦା ଘୋଡ଼େଇ ରଖିଚି ତା' ବାପା ବୋଉଙ୍କ ପ୍ରଚ୍ଛାୟା । କାହିଁ ତା' ଆଗରେ ପଛରେ ଆଶ୍ୱାସନାଟିଏ ତ ନାଇଁ ! ଆଗପଛ ଉପର ତଳ ଖାଲି ଖାଁ ଖାଁ ଖରା ଧୂ ଧୂ ଜ୍ୱଳନ । ପେଟପାଇଁ ପାଇଟି କରୁଚି ସିନା ମନ ତ ତା'ର ସର୍ବଦା ଅପ୍ରାପ୍ତିର ଝାଂଜିରେ ଛଟପଟ । ସୋନାଲିର କୁକୁରଟାକୁ ଦେଖ । କୋଳରୁ କେବେ ବି ଓହ୍ଲଉନି । ଖାଇଲାବେଳେ ପାଖରେ ତ ଶୋଇଲା ବେଳେ ବି ପାଖରେ ଶୁଆଇ ପକଉଚି । ତା'ର ଲଂବ ଲଂବ ରେଶମୀ ବାଳକୁ ସାଉଁଳାଉଛି । ତା' ମୁହଁକୁ ଗାଲରେ ଲଗାଉଛି । କୁକୁର ହେଲେ ବି ତ ସେ ଅନୁଭବ କରୁଚି ସ୍ନେହଟିକେ, ସୋହାଗ ଟିକେ ! କିନ୍ତୁ ସେ କ'ଣ ତା'ଠାରୁ ବି ହୀନ !

ବୁଝିପାରୁଥିବା ବୟସ ବଢୁଚି । ଅଭାବକୁ ଉପଲବ୍ଧି କରିବାର ଓ ତା' ପାଇଁ ବିବ୍ରତ ହେବାର ବୟସଟିଏ ରୁନ୍ଧି ହେଇ ଆସୁଚି ଦିହସାରା ଅନୁପମର । ସୋନାଲ

ବଢୁଚି । ତା' ଦେହରେ ବି କେମିତି ଋତୁ ପରିବର୍ତ୍ତନର ସୂଚନା ଦେଖିବାକୁ ମିଳୁଚି । ବଢୁଚି ବି ସୋନାଲି ଦିଦିର ପ୍ରିୟ ଆଲସିସିଆନ । ପୁଞ୍ଜିଭୂତ ହେଇ ଆସୁଚି ହିଂସ୍ରତା ତା' ଦେହରେ ଆଚରଣରେ ।

ତିନିଜଣ ବଢୁଚନ୍ତି, ନିଜ ନିଜର ବିକାଶ ପ୍ରକ୍ରିୟା ଜାରି ରଖି ଜଣେ ପୁରୁଷ, ଜଣେ ନାରୀ ଓ ଗୋଟେ କୁକୁର ।

ଅନୁପମ ଭାବିଲା, ସେ ତ ଏ ଘରେ ରହିଗଲାଣି ଅନେକ ଦିନ । ଘରର ଯାବତୀୟ କାମଠାରୁ ସୋନାଲି ଦିଦିର କାମ ଅନେକ ବେଶି । ସେ ତ ସବୁ କରି ଆସୁଚି ବିନା ଦ୍ୱିଧାରେ, ବିନା ସଂକୋଚରେ । ପର ଆପଣାର ଫରକଟିଏ ତ ବାରିପାରୁ ନାହିଁ କାହା ଭିତରେ । ବାବୁଙ୍କୁ ବାପା ବୋଲି ଡାକିନେଲେ ହୁଅନ୍ତାନି !

ଏକଥା ଭାବିଲାକ୍ଷଣି କିପରି ଏକ ଅନନୁଭୂତ ଆନନ୍ଦର ଶିହରଣଟିଏ ଖେଳିଗଲା ତା' ଦେହରେ । ନାଃ... ବାବୁଙ୍କୁ ସବୁଦିନେ ସେ 'ବାବୁ' ଡାକି ଆସିଚି । ଆଜି ବାପା ଡାକିବ । ବାବୁ 'ଓ' କରିବେନି ? ନିଶ୍ଚୟ କରିବେ । ବାବୁ ତାକୁ କେତେ ଶ୍ରଦ୍ଧା କରନ୍ତି । ତା' ପ୍ରତି ଚାକରର ନଜର କେବେ ତାଙ୍କର ନଥାଏ । ସେ ତା'ର ଅନ୍ନଦାତା । ସେ ନଥିଲେ ସେ କୋଉଠି ଥା'ନ୍ତା ଏବେ । ଅଘରି ହେଇ କୁଆଡ଼େ କୁଆଡ଼େ ବୁଲୁଥାନ୍ତା ହୁଏତ । ପିଲାଦିନୁ ଏ ଯାବତ୍ ତା'ର ସମସ୍ତ ଦାୟିତ୍ୱ ନେଇ ଆସିଚନ୍ତି । ବାପା ଥିଲେ ଯେମିତି ନେଇଥାନ୍ତେ । ତେଣୁ ବାବୁଙ୍କୁ ବାପା ଡାକିବା ଭୁଲ କୋଉଠି ? ବାପା ପରି ତ ସେ !

ସେଦିନ ବାବୁ ବସିଚନ୍ତି ବାରଣ୍ଡାରେ । ଆରାମ ଚେୟାର ଉପରେ ସବୁଦିନର ଅପରାହ୍ଣ ପରି । ଚା' ଥୋଇଲା ଅନୁପମ ଟି'ପୟ ଉପରେ । ବାବୁ ଖୁବ୍ ଗମ୍ଭୀର । ସବୁଦିନୁ ଏମିତି ଚୁପ୍‌ଚାପ୍ । ହେଲେ ସେ ଯେତିକି ଗମ୍ଭୀର ସେତିକି ଉଦାର । ଏକଥା ଅନୁପମ ଛଡ଼ା ଅଧିକ କିଏ ଜାଣେ ?

ଅନୁପମ ଠିଆହେଲା । ଟିକେ ଭାବିଲା । କ'ଣ ଡାକିବ ବା ? ବାବା ? ବାପା ? ଡାଡି ? ? ନାଃ... ବାପା ଡାକଟା ହିଁ ମଧୁର । ସେ ଡାକରେ କେମିତି ଅନ୍ତର ପୂରିଗଲା ଭଳି ଲାଗେ । ହଁ ସେ ସେୟା ଡାକିବ... ବାପା... । ଝାଳେଇ ଯାଉଚି ଦେହ, ତଣ୍ଟି ହେଇଯାଉଚି ଅଠାଅଠା, ଜିଭ ପଡୁଟୁ ନାହିଁ... କ'ଣ କରିବ ସେ ?

ବାବୁ ରହିଚନ୍ତି ଆକାଶକୁ ଅନେଇ । ସୂର୍ଯ୍ୟାସ୍ତ ଦେଖୁଚନ୍ତି । ଚା' ପିଉଚନ୍ତି ଚୁମୁକେ ଚୁମୁକେ । ସୋନାଲି ଦିଦି ଆସିଲେ । ଓହଳି ପଡ଼ିଲେ ବାବୁଙ୍କ କାନ୍ଧରେ । ଚା' ହଲିଗଲା, ଛିଡ଼ିଗଲା ଲୁଗା ଉପରେ । ବାପା ହସି ଉଠୁଚନ୍ତି... ଆରେ... ଆରେ... ରହ ରହ... ଚା' ଢାଳି ହେଇଗଲା ଯେ ? ପାଗଳିଟା... ଏଡୁଟିଏ ହେଲୁଣି... ପିଲାଳିଆମି ଗଲା ନାହିଁ ? ବାବୁ ଝାଡ଼ି ହେଉଛନ୍ତି । ସୋନାଲି ଓହଳି ରହିଚି ସିମିତି କାନ୍ଧ ଉପରେ ।

ଏ ଦୃଶ୍ୟ ଅନୁପମକୁ ପ୍ରଗଳ୍‌ଭ କରିପକଉଚି । ବିହ୍ୱଳ କରି ପକଉଚି । ଉଦ୍‌ଗତ ଭାବଟାକୁ ଚାପିପାରୁ ନାହିଁ ଅନୁପମ । କିନ୍ତୁ ମୁହଁ ଖୋଲି ପାରୁନାହିଁ । ସୋନାଲି ଅଳି କରୁଚି... କାଲି ମୋତେ 'କୁକୁର ପ୍ରଦର୍ଶନୀ'କୁ ନେଇଯିବ ନା ବାବା... ନବ ନା ? କହୁନ କାହିଁକି ?

ବାବୁ ହସି ହସି 'ହଁ' କରୁଚନ୍ତି । ଅପତ୍ୟର ଏକ ଦିବ୍ୟ ଝଲକ ଖେଳିଯାଉଚି ତାଙ୍କ ମୁଖମଣ୍ଡଳରେ ।

ମୁଁ ବି ଯିବି ବାପା... ମତେ ସାଙ୍ଗରେ ନବ... ଧରି ରଖୁ ରଖୁ ହିଁ ଖସିଗଲା ଅନୁପମ ପାଟିରୁ !

ବାବୁ ବୁଲି ଚାହିଁଲେ । ଅନୁପମ ହସି ଆସୁଥିଲା । ବାବୁଙ୍କ କଟମଟ ଆଖି ଦେଖି ଶଙ୍କିଗଲା ।

କ'ଣ ଡାକିଲୁ ? ଗୋଟେ ବଜ୍ର ଗମ୍ଭୀର ସ୍ୱର ବାହାରି ଆସିଲା ବାବୁଙ୍କ କଣ୍ଠରୁ । ସୀମା ଅତିକ୍ରମ କରିଯାଉଚୁ ଅନୁଆ...

ଅନୁପମ କାଠ ହେଇଗଲା । ବାବୁ ପୁଣି ଗର୍ଜିଲେ, ଆଉ ଦିନେ ଏ ଭୁଲ୍ କରିବୁ ନାହିଁ, ବୁଝିଲୁ ? ମନେରଖ ତୁ ଏ ଘରେ ଆଶ୍ରିତ ଏକ ଚାକର... ।

ବାବୁଆଣୀ ଘରୁ ବାହାରି ଆସିଲେ । କହିଲେ, କ'ଣ ହେଲା ?

ବାବୁ ତାଚ୍ଛଲ୍ୟ ସ୍ୱରଟେ କାଢ଼ି କହିଲେ, ବୁଝିଲ... ମୋତେ ବାପା ଡାକିବା ଆରମ୍ଭ କଲାଣି । ହେଃ...

ବାବୁଆଣୀ ତାତିଗଲେ । ହଅ.. ମତେ ଏବେ ମାଆ ଡାକିବ । ଏମିତି ଯଦି ଦାଣ୍ଡରେ ଘାଟରେ ବାପା ମାଆ ମିଳୁଥା'ନ୍ତେ, କେହି ଆଉ କଷ୍ଟକରି ଜନ୍ମ କରନ୍ତେନି । ଏଃ ଟୋକା, ଯେତିକିରେ ରହିବା କଥା ସେତିକିରେ ରହ ବୁଝିଲୁ । ଆରେ... ଏଗୁଡ଼ା ଆଙ୍ଗୁଳି ଦେଖେଇଲେ ବାହା ଗିଳି ପକେଇବେ ରେ...

ବୁଝି ଯାଇଥିଲା ଅନୁପମ । ବୁଝି ଯାଇଥିଲା ବୋଲି ତ ଲୁହ ଡବ ଡବ ଆଖିନେଇ ଦଉଡ଼ି ଯାଇଥିଲା ବଗିଚା ଆଡ଼େ । ଓଠ କାମୁଡ଼ି ଥିଲା, ହାତ ମୁଠା ମୁଠା କରିଥିଲା, ଫୁଲ ଦି' ଚାରିଟା ଛିଣ୍ଡେଇ ଦଳି ପକେଇଥିଲା । କଣ୍ଟାଟେ ଆଣି ଫୁଟେଇ ଥିଲା ହାତ ପାପୁଲିରେ । ମୁଣ୍ଡ ବାଳକୁ ଝିଙ୍କି ପକେଇଥିଲା । ଭାବିଲା, ପଳେଇ ଯାଆନ୍ତା କୁଆଡ଼େ, କୁଆଡ଼େ ନା କୁଆଡ଼େ ନିରୁଦ୍ଦିଷ୍ଟ ହେଇଯାଆନ୍ତା । ହେଲେ ଯିବ କୁଆଡ଼େ ? କିଏ ଅଛି କୋଳେଇ ନବାକୁ ନା ଖୋଜାଲୋଡ଼ା କରିବାକୁ ? ସେ ଏଠାରେ ଆଶ୍ରୟଟିକେ ପାଇଚି, ତାହା ହିଁ ତା' ପାଇଁ ଯଥେଷ୍ଟ । ସେ ଉପଲବ୍ଧି କଲା ବଞ୍ଚିବା ପାଇଁ ଗଣ୍ଡିଏ ଖାଦ୍ୟ ବିନା ଆଉ କିଛି ଆବଶ୍ୟକତା ନାଇଁ ଜୀବନରେ । ଆଉ

ଯାହା ଆବଶ୍ୟକ ତା' ଏହାଠାରୁ ମୋଟେ ଊର୍ଦ୍ଧ୍ୱରେ ନୁହେଁ । ସୁତରାଂ ଅନୁପମ ସେ ସଂପର୍କରେ ଆଉ ଅଧିକ କିଛି ଭାବିଲା ନାହିଁ ।

ସୋନାଲି ଆସୁଚି । ଶରୀର ତା'ର ଆସ୍ତେ ଆସ୍ତେ ଫୁଟି ଉଠୁଚି । ଫୁଲି ଫୁଲି ଆସୁଚି ତା'ର ଅଙ୍ଗପ୍ରତ୍ୟଙ୍ଗ । ଖୁବ୍ ସୁନ୍ଦର ଦେଖାଗଲାଣି ଆଗ ଅପେକ୍ଷା ।

ଅନୁପମ ତଳକୁ ମୁହଁପୋତି ଚୁପ୍‌ଚାପ୍ ଠିଆ ହେଲା । ସୋନାଲି ଆସିଲା । କହିଲା, ଅନୁପମ... ବାବାଙ୍କୁ ତୁ ବାପା ଡାକି ଦେଲୁ । ବାବା ଚିଡ଼ିଗଲେ । ଚାକରମାନଙ୍କ ସହ ଅଧିକ ଆତ୍ମୀୟତା, ଘନିଷ୍ଠତାକୁ ବାବା ବିଶ୍ୱାସ କରନ୍ତି ନାହିଁ । ତୁ ଆଉ ମୋଟେ ଡାକିବୁ ନାଇଁ, ବୁଝିଲୁ ? ତା'ଛଡ଼ା 'ବାପା' ଡାକିଦେଲେ ଅଧିକଟା କ'ଣ ପାଇବୁ ଯେ !

ଅନୁପମ କାନ୍ଦ କାନ୍ଦ ହେଇ କହିଲା, ଅନୁଭବଟିଏ ଚାହେଁ ପିତୃତ୍ୱର ।

ସୋନାଲି ଫିକ୍‌କିନା ହସି ପକେଇଲା । ଏଡୁଟାଏ ହେଲୁଣି, ତୋ'ର ଏବେ ପିତୃତ୍ୱର ବାତ୍ସଲ୍ୟ ଅନୁଭବ ଆଉ କି ଦରକାର ? ବରଂ ଆଉ ଗୋଟେ ଭିନ୍ନ ଅନୁଭବର ବୟସ ଏବେ ତୋ'ର...

ଅନୁପମ କଥାଟାକୁ ବୁଝିଲା ପୁଣି ବୁଝିଲା ନାଇଁ ।

ଟମି ଦଉଡ଼ି ଆସିଲା । ଏଠି ସେଠି ଶୁଂଘାଶୁଂଘି କରି ଘୂରି ଆସିଲା ବଗିଚା ସାରା । ସୋନାଲି ଫ୍ରକ୍‌କୁ ଦାନ୍ତରେ ଟାଣିଲା । ଡିଆଁ ଡେଇଁ କଲା । ସୋନାଲି ନଇଁ ପଡ଼ିଲା ତା' ଆଗ ଦି' ଗୋଡ଼ ଧରି । ଟମି ତା' ଛାତିରେ ମୁହଁ ଘଷିଲା । ଫ୍ରକ ସନ୍ଧି ଦେଇ ତା' ଛାତିରେ ଜିଭ ଗଳେଇ ଚାଟିଲା । ସୋନାଲି ବିକାର ନାଇଁ । ହିଁ ହିଁ ହସି ଉଠୁଚି କୁକୁରର ଚଗଲାମିରେ । ମୃଦୁ ଚପେଟାଘାତ କରୁଚି । ତା' ଲମ୍ବା କାନକୁ ଧରି ମୋଡୁଚି । ଟମି ଆଖିବୁଜି ଦେଉଚି ଆହ୍ଲାଦରେ । ମୁନିଆଁ ମୁନିଆଁ ଦାନ୍ତ ସନ୍ଧିଦେଇ ଓହଳି ପଡ଼ିଚି ଜିଭ । ଲାଳ ବୋହି ପଡ଼ିଚି ଥପ୍‌ଥପ୍ । ସୋନାଲି ଏକାତ୍ମ ହେଇ ଖେଳୁଚି ତା' ସାଥିରେ । ଅନୁପମ ଠିଆହେଇଚି । ଦେଖୁଚି ସୋନାଲିର କୁକୁର ପ୍ରୀତି । ଛୁଆଟି ବେଳୁ ପାଳି ଆଣିଚି ସ୍ନେହରେ, ସୋହାଗରେ । ବଢ଼ିଗଲାଣି ଏବେ ଖୁବ୍ । ଭୁକିଲେ ଘର କଂପୁଚି । ଚାଲିଲେ ଦର୍ପିତ ଠାଣି ଫୁଟି ଉଠୁଚି । ସୋନାଲି ତା'ର ଅତିପ୍ରିୟ ଓ ସିଏ ବି ସୋନାଲିର । ଅନୁପମର ଦାୟିତ୍ୱ ଏବେ କେବଳ କୁକୁରକୁ ଗାଧୋଇ ଦେବା, ଖାଇବାକୁ ଦେବା । ବାହାରେ ନେଇ ଝାଡ଼ା ଫେରେଇ ଆଣିବା । ଏକଥା କରୁ କରୁ ସେ ଭାବୁଥାଏ ଟମିଠାରୁ ବି ଆଦର ସୋହାଗରେ ପ୍ରତିପାଳିତ ହେବା ଜୀବଟିଏ ସେ ନୁହେଁ ।

ଏବେ ଟମିର ଭିନ୍ନ ଭିନ୍ନ ଭାବ ସବୁ ବାହାରିବାକୁ ଲାଗିଲାଣି । ଘରେ ଆଉ ରହିବାକୁ ନାରାଜ । ସବୁବେଳେ କୁଁ କୁଁ ଅସ୍ତବ୍ୟସ୍ତ । ସବୁବେଳେ ଗେଟ ଡେଇଁ

ବାହାରି ଯିବାକୁ ତତ୍ପର । ଆକଟି ହେଉ ନାହିଁ । ତାକୁ ଗୋଡ଼େ ଗୋଡ଼େ ଜଗିବା ଦାୟିତ୍ୱ ଅନୁପମର । ଯେପରି ବାହାରକୁ ନଯାଏ । କଡ଼ା ତାଗିଦ ବାବୁଙ୍କର, ସୋନାଲି ଦିଦିର । କିନ୍ତୁ ଛକାପଂଝା ଖେଳୁଚି ଟମି । ଯେମିତି ଗୋଟେ କିଛି ଦୁର୍ବାର ଆକର୍ଷଣ ତାକୁ ବାହାରୁ ଉଚ୍ଚାଟ କରୁଛି । ସବୁବେଳେ ଗେଟ ପାଖରେ ବାହାରକୁ ଚାହିଁ ଭୋ ଭୋ ହଉଚି । କୁଁ କୁଁ ହଉଚି । ନିଷ୍ଫଳ ଆକ୍ରୋଶରେ ରାଂପୁଡ଼ି ବିଦାରି ପକଉଛି ଗେଟଟାକୁ । ପାଚେରି କାନ୍ଥକୁ ରାଂପୁଡ଼ି ଚାଲୁଚି ଯେମିତି ଭାଙ୍ଗି ପକେଇବ । ଡେଇଁବାକୁ ଉଦ୍ୟତ ହେଉଚି ପୁଣି ପ୍ରୟାସର ବ୍ୟର୍ଥତାରେ ଗାଉଁ ଗାଉଁ ହେଉଚି । ତାକୁ ଜଗି ଜଗି ନୟାନ୍ତ ହେଇଗଲାଣି ଅନୁପମ ।

ବାବୁ କହିଲେ, ତାକୁ ଚେନ୍ ଲଗେଇ ଦିଅ । ଥରେ ବାହାରିଗଲେ ବାହାରକୁ ଫେରିବା ମୁସ୍କିଲ । ବାଜେ କୁତୀମାନଙ୍କ ସହିତ ମିଶିବ । ମୁଁ ତା'ର ମେଟ୍ ଠିକ୍ କରୁଛି ।

ଅନୁପମ ହୁକୁମ ତାମିଲ କଲା । ଟମି ବେକରେ ଲଗେଇ ଦେଲା ଲୁହାର ଜଂଜିର । ଚିର ସ୍ୱାଧୀନ ଜୀବଟିଏ ଅର୍ଗଳି ଆକ୍ରାନ୍ତ ହେଇଗଲା । ହେଲେ ତା'ର ଶାରୀରିକ ସ୍ୱାଧୀନତାକୁ ଶୃଙ୍ଖଳିତ କରି ଦିଆଯିବା ପରେ ତା'ର ଉତ୍ପାତ ବଢ଼ିଗଲା । ଚେନ କାମୁଡ଼ି, ଝିଙ୍କି ହେଇ ତାକୁ ଛିଣ୍ଡାଇ ଦଉଡ଼ି ପଳେଇବାକୁ ଆରମ୍ଭ କରିଦେଲା ପ୍ରାଣାନ୍ତକ ଉଦ୍ୟମ । ପରାହତ ହେଇ ଆକଣ୍ଠ ବୈକଲ୍ୟରେ ଉପରକୁ ଚାହିଁ ଆଗ ଗୋଡ଼ ଜାକି ବୋବାଳି ଛାଡ଼ିବାକୁ ଲାଗିଲା ।

ଅନୁପମ ଦୁଃଖଟିଏ ଭୋଗୁଥିଲା ମର୍ମେ ମର୍ମେ । ଟମି ପାଇଁ । ପଶୁମାନଙ୍କୁ ମଣିଷ ସବୁଦିନ ଶୋଷଣ କରିଆସିଛି ତା'ର ପ୍ରତିବାଦ ଶକ୍ତିହୀନତା ଯୋଗୁ । କହିବାର ଶକ୍ତି ନାହିଁ ବୋଲି ସବୁଦିନେ ସେ କ୍ରୀଡ଼ନକ ହେଇଆସିଛି ମଣିଷର ଯଥେଚ୍ଛାଚାର । ସ୍ୱାର୍ଥ ପାଇଁ ମଣିଷ କରିଆସିଛି ତାକୁ ଘୃଣ୍ୟ ବ୍ୟବହାର । ଟମିର ଦୁଃଖରେ ନିଜେ ସମଦୁଃଖୀ ହେଇପଡୁଥିଲା ଅନୁପମ । କିନ୍ତୁ ତା'ର ମଧ ନଥିଲା ପ୍ରତିବାଦ କରିବାର ସାମାନ୍ୟ ଅଧିକାର ।

ଟମିର ବୈକଲ୍ୟକୁ ସୋନାଲି ବୁଝୁଥିଲା । ଆମୋଦିତ ହେଉଥିଲା । କିନ୍ତୁ କସ୍ମିନ କାଳେ ଯେପରି ଫିଟି ନ ଯାଏ ଅନୁପମକୁ କରିଥିଲା କଡ଼ା ତାଗିଦ୍ । ଦିନସାରା ଟମି କୁଁ କୁଁ ହେଉଥିଲା, ଟାଣି ଓଟାରି ହେଉଥିଲା । ଘରସାରା ଯେମିତି ତା'ର ଅସହାୟତାର ଦୀର୍ଘଶ୍ୱାସ ଘୂରି ବୁଲୁଥିଲା । ଏ ଢଙ୍ଗ ତା'ର ବାହାରିବା ପୂର୍ବରୁ ସେ ଶୋଉଥିଲା ସୋନାଲି ଦିଦିର କୋଠରୀରେ । ଏବେ ବନ୍ଧା ଯାଉଚି ବାରଣ୍ଡାରେ । ତା'ର ଉତ୍ପାତ ପାଇଁ ତାକୁ କରାଯାଇଛି ନିର୍ବାସିତ । ତାକୁ ଜଗିବା ପାଇଁ ଅନୁପମ ମଧ ଶୋଉଚି ବାରଣ୍ଡାରେ । ବେଞ୍ଚ ଉପରେ । କାଳେ ରାତିରେ ଫିଟିଯିବ । ରାତିରେ ଉଠି ଦୁଇ ତିନି ଥର ଚେକ୍ କରେ ସୋନାଲି, ଆଉଁସି ଦିଏ । ଘଡ଼ିଏ ପାଇଁ ଯେମିତି ଶାନ୍ତ ହୋଇଯାଏ

ଟମି । ହେଲେ ପୁଣି ଆରମ୍ଭ କରିଦିଏ ଝିଙ୍କାଝିଙ୍କି, ବୋବାଳି । ଦି' ଚାରିଥର ବାଡ଼ିଆ ଖାଇଲାଣି ମଧ୍ୟ । ବାଡ଼ିଆ ଖାଇ କୁଙ୍କୁରି ଯାଏ । ସଂକୁଚିତ ହୋଇଯାଇ ଲାଙ୍ଗୁଳ ଜାକି ବେଞ୍ଚ ସନ୍ଧିରେ ପଶିଯାଏ । ଚୁପ୍ ହୋଇଯାଏ । ଅନୁପମ ମୁହଁକୁ କରୁଣ ଦୃଷ୍ଟିରେ ଅନାଏ । ତା' ଆଖିରେ ଫୁଟି ଉଠୁଥାଏ ଅସହାୟ ଅନୁରୋଧଟିଏ ।

ମୋତେ ଟିକେ ମୁକ୍ତ କରିଦେ ଅନୁପମ । ତୋ' ଜୀବନ ତ ଅନୁଭବ ରହିତ ମରୁଭୂମିଟିଏ । ମୋର ଏବେ ଅନୁଭବର ସମୟ । ମୋ' ଦୁଃଖଟିକେ ବୁଝ । ମୋର କାର୍ଯ୍ୟ ତମମାନଙ୍କୁ ଜଗିବା, କିନ୍ତୁ ଏବେ ତମେ ଜଗୁଚ ମୋତେ ! ମୋର ଇଚ୍ଛାଟିକୁ ହତ୍ୟା କରୁଚ ତମେମାନେ । ଅନୁପମ ଦେଖିଲା ଟମି ଆଖିରେ ଲୁହ । ଅନେକ ଦୁଃଖ, ଅନେକ ଅଭିଯୋଗ ଅନେକ କାରୁଣ୍ୟ ପ୍ରତିଫଳିତ ହେଉଚି ସେ ଲୁହରେ ।

ଅନୁପମ ଟମିକୁ ଫିଟେଇ ଦେଲା । ଆଖି ପିଛୁଳାକେ ଅର୍ନ୍ତଦ୍ଧାନ ହେଇଗଲା ସେ । ଯେମିତି ସେ ଛୁଟିଯିବ ଦିଗ୍‌ବିଦିଗ । ଘୋଷଣା କରିବ ମୁକ୍ତିର ସମ୍ବାଦ ।

କିନ୍ତୁ ଟମି ଚାଲିଗଲା ପରେ ଅନୁପମ ବାସ୍ତବତାକୁ ଅନୁଭବ କଲା । ମହାପ୍ରଳୟ ଆରମ୍ଭ ହେଇଯିବ ଏବେ । ବାବୁ ବାଡ଼େଇ ପକେଇବେ । ସୋନାଲି ଦିଦି ବି ଝାଂପି ପଡ଼ିବେ । କି କୈଫିୟତ ଦେବ ଅନୁପମ? କହିଦବ କି ଅନୁଭବର ଅଭୀପ୍‌ସାକୁ କେତେ ଦିନ ଆଉ ଅବଦମିତ କରି ରଖାଯାଇପାରେ? ପ୍ରତିବାଦଟିଏ କରିଦବ କି ଏ ଶୋଷଣ ବିରୁଦ୍ଧରେ? କହି ଦେବ କି ସେମାନଙ୍କର ହୃଦୟ ନାଇଁ । ମୁଁ ଅନୁଭବ କଲି ତା'ର ଦୁଃଖ, ସମଝିଗଲି ତା'ର ବୈକଲ୍ୟ, ପଢ଼ିପାରିଲି ତା' ହୃଦୟର ଆକୁଳତା । ମୁଁ ଯେଉଁ କାରୁଣ୍ୟରେ ଛଟପଟ ହେଉଚି, ସେ ବି ମୋ' ଭଳି ହେଉଥିଲା । ତମମାନଙ୍କ ଭଳି ଶୋଷକମାନେ ଶୋଷଣ କରି ଆସିଚନ୍ତି ଆମ ଭଳି ଅସହାୟମାନଙ୍କୁ । ଆମ ଜୀବନରେ ଯେମିତି କିଛି ପ୍ରାପ୍ତି ନାଇଁ, ପ୍ରତ୍ୟାଶା ନାଇଁ ବି ନାଇଁ ଅନୁଭବର ଅଧିକାର ।

ସୋନାଲି ଦିଦି କବାଟ ଫିଟେଇ ବାହାରକୁ ଆସିଲା । ଝାପ୍‌ସା ଅନ୍ଧାର ଭିତରେ ଗେଟ୍ ଆଡ଼କୁ ମୁହଁ କରି ଠିଆ ହେଇଚି ଅନୁପମ । ସୋନାଲି ପଚାରିଲା ଟମି କାଇଁ?

ତା' ସ୍ୱରରେ ଫୁଟି ଉଠୁଥିଲା ବ୍ୟସ୍ତତା ଉଦ୍‌ବିଗ୍ନତା । ଅନୁପମ ସନ୍ତର୍ପିତ ସ୍ୱରରେ କହିଲା ଫିଟେଇ ଦେଲି ।

ସୋନାଲି ଫାଟି ପଡ଼ିଲା ପ୍ରଚଣ୍ଡ କ୍ରୋଧରେ । ଆରମ୍ଭ କରିଦେଲା ଅଜସ୍ର ଗାଳି । କଣ୍ଠ ଥିଲା କାନ୍ଦ କାନ୍ଦ । ଦି'ଚାରି ଧକ୍‌କା ପକେଇଲା ଅନୁପମକୁ । ନାଃ... ବଡ଼ ଅକ୍ଷମଣୀୟ ଅପରାଧ କରିଚି ଅନୁପମ । ତାକୁ ଶାସ୍ତି ଭୋଗିବାକୁ ପଡ଼ିବ । ହଠାତ୍ ସୋନାଲି ଏକ ବିଚିତ୍ର କାର୍ଯ୍ୟ କରିବସିଲା । ବେଞ୍ଚଗୋଡ଼ରୁ ଚେନ୍‌ଟା ଫିଟେଇ ଆଣି ପକେଇ ଦେଲା ଅନୁପମ ବେକରେ । ଘୋଷାରି ନେଇଗଲା ତା' କୋଠରୀ ଭିତରକୁ ।

ପ୍ରତିବାଦ କରୁଥିଲା ଅନୁପମ । କିନ୍ତୁ ତା' ଭାଷାଗୁଡ଼ାକ ଯେମିତି ଟମି ଭୁକିଲା ଭଳି । ସେ ଆଶ୍ଚର୍ଯ୍ୟ ହେଉଥିଲା ତା' ପାଟିରୁ ଭାଷା ଗଲା କୁଆଡ଼େ ?

ସୋନାଲି ପଲଙ୍କ ଗୋଡ଼ରେ ବାନ୍ଧି ଦେଲା ଚେନଟାକୁ । ଦୁମ୍‌କରି ପଡ଼ିଗଲା ବେଡ୍ ଉପରେ ମୁହଁମୋଡ଼ି । କଇଁ କଇଁ ହେଇ କାନ୍ଦୁଥିଲା, ମୋ' ଟମି କୁଆଡ଼େ ଗଲା... ଟମି... ।

ବେକରେ ଚେନ ବନ୍ଧାହେଇ ଗୋଟିଏ କୋଣରେ ବସିଥିଲା ଅନୁପମ । ଏବେ ସେ ଅନୁଭବ କରୁଥିଲା । ରୂପାନ୍ତରିତ ହେଇଯାଇ ସେ ଟମିରେ । ତା' ଭିତରେ ଗୋଟାଏ ଝଡ଼ ଉଠିବା ଆରମ୍ଭ ହେଇଯାଇଛି । ମୁହଁ ଖୋଲିଲା ସେ । ଆଶ୍ଚର୍ଯ୍ୟ.. ସେ ଭୁକୁଚି !!

ସୋନାଲି ଶୋଇ ପାରୁନାହିଁ । ଏକଡ଼ ସେକଡ଼ ହେଇ ବିଛଣା ସାରା ଗଡ଼ୁଚି । ଟମି ଟମି ହେଉଚି । ଉଠୁଚି । ବସୁଚି । ବସୁଚି ପୁଣି ଗଡ଼ିଯାଉଚି । ଜଳନ୍ତା ଚାହାଣିରେ ଚାହୁଁଚି ଅନୁପମ ଆଡ଼େ । ଅନୁପମ ତଳକୁ ମୁହଁ କରୁଚି । ସଂକୁଚିତ ହେଇଯାଉଚି... ଟମି ବି ତ ହେଉଥିଲା... ।

ହଠାତ୍ ସୋନାଲି ଝିଙ୍କିଦେଲା ଚେନ୍‌ଟାକୁ । ହାମୁଡ଼େଇ ପଡ଼ିଲା ସେ ବିଛଣା ଉପରେ । ସୋନାଲି ତାକୁ ଘୋଷାରି ନେଲା । ତାକୁ ଭିଡ଼ି ଧରିଲା । ତା' ଗାଲରେ ଗାଲ ଘଷିଲା । ତା' ବେକରେ ଲାଗିଥିବା ଚେନ୍‌କୁ ହଲେଇ ଝୁମ୍‌ଝୁମ୍ କଲା । ଅନୁପମ ଏମିତି ଦୃଶ୍ୟ ସହ ଅପରିଚିତ ନଥିଲା । ଟମିକୁ କୋଳରେ ଧରି ଏମିତି ତ କରେ ସୋନାଲି । ଅଥଚ... ।

ଅନୁପମ ଦେଖିଲା ସୋନାଲି ହୁଗୁଳା ନାଇଟି ଖୋଲିହେଇ ଖସି ପଡ଼ିଲାଣି ପଲଙ୍କ ତଳକୁ, ପ୍ୟାଣ୍ଟି ଖସିଯାଇ ହେଲାଣି ପାଦ ପାଖରେ । ବାଳ ମୁକୁଳା ହେଇ ଖେଳେଇ ହେଇଗଲାଣି ବିଛଣା ସାରା । ଟକମକ ତତଲା ଲୁହା ଖଣ୍ଡରେ ବଦଳି ଗଲାଣି ସୋନାଲି । ଅନୁପମ ଦେହ ପୋଡ଼ି ଯାଉଛି । ତାକୁ କୁଣ୍ଢେଇ ଭିଡ଼ି ଓଟାରି ପକଉଚି । ତା' ଛାତିର ବହଳ ମାଂସକୁ ଘଷି ପକଉଚି ତା' ମୁହଁରେ, ପାଟିରେ ।

ତୋ'ର ଅନୁଭବଟିଏ ପରା ଦରକାର ଅନୁପମ ? ସେଦିନ କହୁଥିଲୁ... । ସୋନାଲିର କଂପିତ ସ୍ୱର ।

ଅନୁଭବ... ଅନୁଭବ.. ଅନୁପମ ମନେ ମନେ ଉଚ୍ଚାରଣ କଲା । କିନ୍ତୁ କାହିଁ ? ସେ'ତ କିଛି ଅନୁଭବ କରିପାରୁ ନାଇଁ ! ତା' ଭିତରେ ତ କିଛି ବିସ୍ଫୋରଣ ନାଇଁ ! ନାଇଁ କିଛି ଉତ୍ତେଜନା, କିଛି ତ ଝଡ଼ ସୃଷ୍ଟି ହେଇଯାଉ ନାହିଁ ତା' ଦେହ ଭିତରେ !

ସୋନାଲି ତାକୁ ଝୁଣି ଚାଲିଚି । ଉପରତଳ କରି ଗଡ଼ୁଚି ବିଛଣା ସାରା । ତା' ନାକର ଗରମ ନିଃଶ୍ୱାସ ସିଝାଇ ଦେଲାଣି । ମୁହଁ ତା'ର ଉତ୍ତେଜିତ । ଦନ୍ତାଘାତ ରକ୍ତାକ୍ତ

କରି ଦେଲାଣି ଓଠ। ନଖାଘାତରେ ପୋଡ଼ି ଉଠିଲାଣି ପିଠି। ଅଥଚ ଅନୁପମ ତା' ବେକରେ ଜଂଜିର ଶବ୍ଦ ଛଡ଼ା ଆଉ କିଛି ଶୁଣିପାରୁ ନାଇଁ। ମୁର୍ଦ୍ଦାରଟିଏ ପରି ଗଡୁଚି ସୋନାଲିର କୁଣ୍ଢ ଭିତରେ, ତା'ର ଇଛା ମତେ...।

ଅନୁପମ... ଅନୁପମ... ଫିସ୍ ଫିସ୍ କରି ଡାକୁଚି ସୋନାଲି। ଅନୁପମ ଖାଲି ଗଁ ଗଁ ହେଉଚି। ହଠାତ୍ ଯେପରି ସୋନାଲି ଅନୁଭବ କଲା ସେ ଖାଲି ଖଣ୍ଡେ ନିଦାକାଠ ଗଣ୍ଡିଟାକୁ ନେଇ ହିଁ ଗଡୁଛି ଏତେ ସମୟ ଧରି। ଅନ୍ତତଃ ଟମିଟାର କିଛି ପ୍ରତିକ୍ରିୟା ଥିଲା, ଏଇଟା ପାଷାଣ୍ଡ। ଏକ ନିଷ୍ଫଳ ଆକ୍ରୋଶରେ ଦାନ୍ତ କାମୁଡ଼ି ଉଠିଲା ସୋନାଲି। ଅନୁପମ ବେକର ଚେନଟାକୁ ଘୋଷାରି ଘୋଷାରି ଆଣି ଦୁଆର ମୁହଁରେ ଧକ୍କାଟିଏ ଦେଲା ଓ ଧଡ଼ାସ୍ କରି କବାଟ ବନ୍ଦ କରିଦେଲା ଭିତରୁ।

ଅନୁପମ ଜାଣିଲା ତା' ଅନୁଭବର ଶେଷ ପରୀକ୍ଷା ଦେଇସାରିଚି...

ସେ ଦୌଡୁଥିଲା ଫାଟକ ପାରିହେଇ।

ଆଗରେ ବିସ୍ତୀର୍ଣ୍ଣ ପଡ଼ିଆ। ଅନୁପମ ଚାରିକାତ ମେଲେଇ ପଡ଼ିଗଲା। ଆଶ୍ଚର୍ଯ୍ୟ! ତା' ଭିତରେ ଅନୁଭବଟିଏ ସଂଚରି ଆସୁଛି। ଦେହରେ ମନରେ ଅଦଭୁତ ଏକ ପ୍ରଶାନ୍ତିର ପୁଲକ। ସେ ଚାରିଆଡ଼େ ହାତ ଚଳେଇ ଆଣିଲା। ତାକୁ ଲାଗିଲା ସେ ଶୋଇଚି ମାଆଟି କୋଳରେ। ତା'ର ସବୁଜ ପଣତ ଖେଳେଇ ପଡ଼ିଚି ଦିଗନ୍ତକୁ ଛୁଇଁ ଛୁଇଁ। ନିର୍ଭୟ ଆଶ୍ୱାସନାରେ ତା' କାନରେ ଚୁପିଚୁପି ମା'ଟି ଯେପରି କହି ଦଉଚି, ମୋ' ପାଖରେ କେହି ଅଲୋଡ଼ା ନୁହେଁରେ। କେହି ନୁହଁ ଅପାଂକ୍ତେୟ। ଅନୁଭବିନେ ମୋ' ହୃଦୟର ସ୍ନେହ। ପରଖି ନେ ମୁକ୍ତ ଜୀବନର ସ୍ୱାଦ...

ତାକୁ ଲାଗୁଥିଲା ତାକୁ କୋଳେଇ ନଉଚି ମାଟି। ଆକାଶ ପିଠି ଥାପୁଡ଼େଇ ଦଉଚି ବାପାଟି ପରି। ସେ ଆହୁରି ଏକାକାର ହେଇଯାଉଥିଲା ମାଟି ସହିତ। ଏ ମହାର୍ଘ ଅନୁଭବଟିକୁ ଯେମିତି ସେ ମୋଟେ ହରେଇବାକୁ ଚାହେଁ ନାହିଁ...।



## ଅରବିନ୍ଦ ଧଳ

# ବୃଷଭ ବିଷାଦ ଯୋଗ

ମେଘ ଅନ୍ଧାର ରାତି । ସୁ,ସୁ, ନିଶା ଗର୍ଜୁଚି । ଝିଙ୍କାରୀର ଝିଁ ଝିଁ ଗୀତରେ ବ୍ୟଥା ଓ ବେଦନାର ରାଗମଞ୍ଜରୀ । କଳା ଘୁମର ରାତି, ବର୍ଷଣ ମୁଖର । ମେଘ ଓହଳେଇକି ରହିଚି । ବର୍ଷି ପାରୁନାହିଁ । ଚକ୍ କରି କାଟିଦେଉଛି ବିଜୁଳି ଗାର । ଝଲସି ଯାଉଛି ଅନ୍ଧାର ସବୁ ତାଳପତ୍ର, ବାଦୁଡ଼ିର ବସା । ଦିନର ତମାମ୍ କ୍ଳାନ୍ତି ପରେ ନିଦେଇ ଯାଇଥିବା ଚଢ଼େଇମାନଙ୍କର ଝୁଲନ୍ତାଘର । ବିଜୁଳି ଚମକିଲେ ଝଲସି ଯାଉଥିଲା ଅନ୍ଧାରର ଡେଣା । ଆଳିଜଙ୍ଗାର ବଡ଼ ବରଗଛ ତଳେ ଭୁସି ପକେଇବା ଢଙ୍ଗରେ ଠିଆ ହୋଇଥିଲା ଗୋଟାଏ ଷଣ୍ଢ । ସତେ ଯେମିତି ଅନ୍ଧକାର'ର ନୀରବ ପଟୁଆରକୁ ବାଟ କଢ଼ୋଉଥିବା ଜଣେ ପରାକ୍ରମୀ ଯୋଦ୍ଧା । ଧୀରେ ଧୀରେ ଗମ୍ଭୀର ଓ ଗଭୀର ପାଲଟୁଥିଲା ରାତି ।

ପଛପଟରୁ ଖସରଖାସର ଶବ୍ଦ ଶୁଣି କିଏ ଜଣେ ଆସୁଥିବାର ଅନୁମାନ କରି ଷଣ୍ଢ ମୁହଁ ବୁଲେଇଲା । ପଛ ପଟରୁ ଆସି କିଏ ତା' ପାଖରେ ପହଞ୍ଚି ଯାଉଥିଲା । ମାରି ଗୋଡ଼େଇବା ପାଇଁ ସେ ନିଜକୁ ପ୍ରସ୍ତୁତ କରିନେଲା । ମାତ୍ର ମଣିଷ ନୁହେଁ ବୋଲି ଜାଣିବା ପରେ ଷଣ୍ଢ ଆଶ୍ୱସ୍ତ ହେଲା । ତା' ସ୍ୱଭାବସୁଲଭ ଢଙ୍ଗରେ ଝିଙ୍ଗାସି ହେଲା ନାହିଁ କି କୁଦି ପଡ଼ିଲାନାହିଁ । ବରଂ ପଚାରିଲା, ତୁ କିଏ ? ଅତି ଶାନ୍ତ ସ୍ଥିର ଗଳାରେ ଉତ୍ତର ମିଳିଲା, ମତେ ଚିହ୍ନି ପାରୁନା । ମୁଁ ପା' କାଳିଆ, ହଡ଼ା ବଳଦାଟାଏ । ରାଧୁ ସାହାଣୀ ଘରେ ହଳ ବୁଲୋଉଥିଲି । ତମେ ମତେ ଚିହ୍ନି ନ ପାରିଲେ ବି ମୁଁ ତମକୁ ବେଶ୍ ଚିହ୍ନି ପାରୁଚି । ତମେ କେଶୁଜଙ୍ଗା ଗାଁ ଉସବା ଦାସର ଷଣ୍ଢନା ! ତମକୁ ବି ଲୋକ ଉସବା ବୋଲି ଡାକୁଥିଲେ । ଆଳିଜଙ୍ଗା, କେଶୁଜଙ୍ଗା, ସମଲଡ଼ିଆଠୁ ଆରମ୍ଭ କରି ହଦଳୀଜଙ୍ଗା ପର୍ଯ୍ୟନ୍ତ ତମର ନାଁ ଡାକ ଥିଲା । ପାଖାପାଖି ଆଠଦଶ ଖଣ୍ଡ ଗାଁରେ ତମର ଥିଲା ପ୍ରଚୁର ଆଧିପତ୍ୟ ।

ରାଧୁ ସାହାଣୀ ମତେ କେଉଁ ଦାନପୁର କି ଛତା ହାଟରୁ ଯାଇ କିଣି ନଥିଲା । ତା'ର ଯୋଉ ତେଲାଣ୍ଡିଆ କାଳୀଗାଈ ଥିଲା, ମୁଁ ତା'ର ପୁଅ । ମୁଁ ତମରି ଔରସରୁ ଜନ୍ମିଚି । ତମ ପୁଅ । ଏଇ ଗାଁର ପୁଅ ।

ପାଖରୁ ଦେଖିଲେ, ଦିନେ; ଗୋଡ଼େଇ ପେଟ ଫୁଟେଇ ଦେଉଥିବା ଭଳି ବଦନାମର ଶିକାର ହୋଇଥିବା ଦୁର୍ଦ୍ଦାନ୍ତ ଷଣ୍ଢ, କାଳି ହଡ୍ଡାର ବଖାଣି ଶୁଣୁଥିଲା ମନଧ୍ୟାନ ଦେଇ। ଜଣେ ସୁଶାସକ ହିଁ କେବଳ ତା' ଅଧସ୍ତନକୁ ଲମ୍ବା ସମୟ ଦେଇପାରେ ତା' ସୁଖ ଦୁଃଖ କହିବା ପାଇଁ। ଠିକ୍ ସେଇମିତି ଜଣେ ଦକ୍ଷ ପ୍ରଶାସକର ସୁଗୁଣ ନେଇ ଧୈର୍ଯ୍ୟର ସହିତ କାଳିଆର କଥା ଶୁଣୁଥିଲା ଉତ୍ସବା ଷଣ୍ଢ।

"ଏଇ ଚାରିମାସ ହେଲା ମୋର ମୃତ୍ୟୁ ହେଲା", ବେଦନାଭରା କାଳିଆର କଣ୍ଠସ୍ୱର। ମରିବାର ଚାରିମାସ ପରେ ବି ଜୀଇଁବାର କ୍ଷୁଧା ତା'ର ପ୍ରବଳ। ପ୍ରକୃତିରେ ଠିକ୍ ଏୟା ହୁଏ କି କ'ଣ? ଆତ୍ମା ଖାଲି ପାଣି ପବନ ହେଇ ରହିବାକୁ ଚାହେଁ ନାହିଁ। ଦେହ ଖୋଜେ। ଦେହ ଓ ଦାହର ଯାତନା ଭିତରେ ବୋଧେ ଆତ୍ମାର ଆନନ୍ଦ। ପ୍ରବୋଧିଲା ଢଙ୍ଗରେ ମୁଣ୍ଡ ହଲେଇଲା ଉତ୍ସବାଷଣ୍ଢ। ତୁ କ'ଣ ଆଉ ସବୁଦିନ ବଞ୍ଚିଥାନ୍ତୁ ନା କ'ଣ?

ପୁଣିଥରେ କାଳିଆ ଆରମ୍ଭ କଲା। ନା, ମର୍ତ୍ତ୍ୟମଣ୍ଡଳେ ଦେହ ବହି ଦେବତା ହେଲେ ହେଁ ମରଇ। ଆମେ ତ ଛାର ପଶୁ, ବଳଦ ଜାତି। ମୁଁ ଅନେକ ବୁଢ଼ା ହୋଇଯାଇଥିଲି। ମୃତ୍ୟୁ ମୋର କାମ୍ୟ ଥିଲା। ମାତ୍ର ନିଜ ଗୋଠର ଜନ୍ମିତ ବଳଦ ବୋଲି ରାଧୁଆ ସାହାଣୀ ମତେ କଂସେଇ ହାତକୁ ଟେକି ଦେଇ ନାହିଁ ସତ, ମୃତ୍ୟୁ ପର୍ଯ୍ୟନ୍ତ ତା' ଗୋଠରେ ରଖିଛି। ତା' ଗୁହାଳରେ ଥାନ ଦେଇଛି। ହେଲେ ତମକୁ ଯେମିତି ଲୋକ ଗାଡ଼ ଖୋଳି ପୋତିଲେ, ମତେ କ'ଣ ସେମିତି ପୋତିପାରି ନଥାନ୍ତେ। ରାଧୁଆ ସାଙ୍ଗରେ କ'ଣ ବିବାଦିଆ ଅଛି ବୋଲି ପ୍ରଥମେ ପ୍ରଥମେ ନାକ ଟେକୁଥିଲେ ଗାଁ ଲୋକ। ବହଲେଇ ବାହଲେଇ ରାଧୁଆ ତିନି ଚାରି ଜଣକୁ ଡାକିଲା। ସେମାନେ ଆସିଲେ। ମୋ ଆଗ ଦି ଗୋଡ଼, ପଛ ଦି ଗୋଡ଼କୁ ନଡ଼ିଆ କତା ରସିରେ ବାନ୍ଧିଦେଲେ। ତା'ଭିତରେ ବାଉଁଶ ପୁରେଇ ଝୁଲେଇ ଝୁଲେଇ ନେଇ ଏଇ ବେଣା ପଡ଼ିଆରେ ଫିଙ୍ଗି ଦେଇଗଲେ। ତା'ପରେ କାଉ ଶାଗୁଣା ବିଲୁଆ ଶିଆଳ ସବୁ ସାଙ୍ଗ ସୁଙ୍ଗା ହୋଇ ମତେ ଖାଇବାକୁ ଲାଗିଲେ। ତା'ପୂର୍ବରୁ କ'ଣ କେମିତି ଖବର ପାଇ ପଦନା ହାଡ଼ି ଆସି ମୋ ଦେହରୁ ବଡ଼ କାଇଦାରେ ଛୁରି ମାରି ଲମ୍ବା ଚଉଡ଼ା ଛାଲ ଉତାରି ନେଇଗଲା। ଆମ ଦେହରେ ପା' କୁଆଡ଼େ ତେତିଶି କୋଟି ଦେବତା! ଶାଗୁଣା ବିଲୁଆଙ୍କ କବଳରୁ ପଦନା ହାଡ଼ି ସେଇ ଦେବତାମାନଙ୍କୁ ଉଦ୍ଧାର କରିଦେଲା ନା କ'ଣ!

କେତେଟା ମୁହୂର୍ତ୍ତ ତୁନି ପଡ଼ିଗଲା କାଳିଆ ଓ ପୁଣି ଆରମ୍ଭ କଲା, ସାରା ଜୀବନ ହଳ ବୁଲେଇ ଏ ମାଟିକୁ ଉପରତଳ କରି ଉର୍ବରା କରିଥିଲି ମୁଁ। ମରିଗଲା ପରେ ବି ମୋ ଦେହକୁ ଏ ମାଟିରେ ମିଶିବାର ସୁଯୋଗ ମିଳିଲା ନାହିଁ। ସେ ଦୃଷ୍ଟିରୁ ତ' ତମେ

ବହୁତ ଭାଗ୍ୟବାନ୍। ଏବେ ଦେଖ ଦୂରକୁ, ମୋ କଙ୍କାଳ ହାଡ଼ କେମିତି ଶୁଖିଶୁଖି ଗଡ଼ୁଛି, ଗୋଟାଏ ପରିତ୍ୟକ୍ତ ଭଙ୍ଗା ପିଞ୍ଜରା ପରି ଅପନ୍ତରାରେ ପଡ଼ିଛି।

କ୍ରୋଧ ଉଠେଇ କାନ୍ଦିଲା କାଳିଆ। ରାଧୁ ସାହାଣୀ ବରଂ ମତେ କଂସେଇ ହାତରେ ଟେକି ଦେଇଥିଲେ ଭଲ ହୋଇଥାଆନ୍ତା। ଗୋଟାଏ ଦି'ଟା ଚୋଟରେ ମୋ ଜୀବନ ଯାଇଥା'ନ୍ତା। ପକେଇ ପକେଇ ଏତେ ଯନ୍ତ୍ରଣା ଦେବାର କ'ଣ ଥିଲା। ବହୁତ ସାଙ୍ଗ ଭାଇ ହଡ଼ା ହେବା ଆଗରୁ କଂସେଇ ହାତରେ ଟେକାହେଇ ଗଲେ। ମୁଁ ବି ସେମିତି ଯାଇଥାନ୍ତି। କୋଉ ବିଧର୍ମୀର କଟୁରୀ ଚୋଟରେ ଖଣ୍ଡ ଖଣ୍ଡ ହେବାପରେ ବରଫ ଭିତରେ ରହି, ଚୋରା ଟ୍ରକ୍‌ରେ ଅନ୍ୟାନ୍ୟ ରାଜ୍ୟ କି ବିଦେଶକୁ ଚାଲାଣ ହେଇଥାନ୍ତି। ସାରା ଜୀବନ ତ ରାଧୁଆର ଗୋଠଗୁହାଳରୁ ପାଟବିଲ ଯାଏ, ଏଣ୍ଡୁଅ ହେଇ ରହିଲି। ମୋର ଖଣ୍ଡଖଣ୍ଡ ମାଂସ ହେଲେ ଦେଶ ବିଦେଶରେ ବୁଲିଥାନ୍ତା। ଅତଏବ୍ କୌଣସି କଂସେଇ ହାତରେ ଟେକା ନ ହୋଇ ଏକା ରହିଯାଇଥିଲି ମୁଁ। ହେଇହେଇ ମୋର ହେଲା କ'ଣ! ଗୋଟାଏ ସ୍ୱାଭାବିକ ଅଥଚ ଯନ୍ତ୍ରଣାଦାୟକ ମୃତ୍ୟୁ! ଏୟାତ! ମରିବାର ଚାରିମାସ ପରେ ମୁଁ ଏଠି ଯେମିତି କାହାକୁ ଖୋଜୁଚି। ହେଲେ ଖୋଜି ପାଉ ନାହିଁ। ଅନେକ ଦିନ ପରେ ଆଜି ତମକୁ ଭେଟିଲି। ଶୂନ୍ୟତା ଓ ସ୍ଥିତିହୀନତା ଭିତରେ ବି ଗୋଟାଏ ଅଦୃଶ୍ୟ ଶକ୍ତି ଯେମିତି ଅଛି; ଆପଣାର କେହି ଜଣକୁ ବେଳ ଦେଖି ଭେଟେଇ ଦେଉଛି।

ତମେ ତ ବାପା, ମତେ ବଳଦ କରି ଜନ୍ମ କରି ନଥିଲ। ମୁଁ ପୁରୁଷ ଛୁଆ। ଷଣ୍ଢ ହୋଇ ଜନ୍ମିଥିଲି। ମୁଁ ବି ତମପରି ଷଣ୍ଢ ହେଇ ପୂଜା ପାଇ ପାରିଥାନ୍ତି। ମୁଁ ବି ଯୌବନରେ ଦେହର କ୍ଷୁଧା ମେଣ୍ଟେଇ ପାରିଥାନ୍ତି। ଏ ସ୍ୱାର୍ଥାନ୍ଧ ମଣିଷ ମାଡ଼ିବସି ମୋର ଅଣ୍ଡକୋଷ ଛେଦନକରି, ପୌରୁଷର ନାଡ଼ି ଛିଡ଼େଇ ଦେଲେ। ପାଉଁଶ ଟିକେ ଘଷିଦେଇ ମୋ କ୍ଷତକୁ ଶୁଖେଇ ଦିଆଗଲା। ମୋର ଠିକ୍ ମନେ ପଡୁଛି, ସେଇ ଦି ଚାରି ଦିନ ମୋର ଫକ୍ ଫକ୍ ହେଇ ଡେଇଁବା, ଗାଁ ଦାଣ୍ଡରୁ ଧୂଳି ଉଡ଼େଇବା କମିଗଲା। ମୋର ଶିର ପୀଡ଼ା ହେଲା ଦରଜ ରହିଲା ବେଶ୍ କିଛିଦିନ। ତା'ପରେ ବୟସ ବଢ଼ିବାରୁ ମୁଁ ହେଲି ଅଣ୍ଡିରା ଦାମୁରୀ। କେତେ ଗରାଖ ଆସି ପିଠିରେ ହାତ ବାଡ଼େଇ, ଲାଞ୍ଜ ମୋଡ଼ିଛନ୍ତି। ପାଟି ମେଲେଇ କେତେ ଦାନ୍ତେଇଲିଣି ଦେଖିଛନ୍ତି। ଭଲ ଖର ଅଛି ବୋଲି ପ୍ରମାଣପତ୍ର ଦେଇ ଦର କସିଛନ୍ତି। ଚଢ଼ାଦରରେ ଯିବ ବୋଲି ରାଧୁଆକୁ ମତେଇଛନ୍ତି। ହେଲେ ରାଧୁଆ ମତେ ବିକିଲା ନାହିଁ ତା' ଆଠମାଣିଆ ଚକକୁ ଆଖିରେ ରଖି। ନିଜ ଗୋଠରେ ବଳଦକୁ କାଳେ ରଖନ୍ତି ନାହିଁ। ସେଇଥିପାଇଁ ଦିନକ ପାଇଁ ଦୂବଗୁଆ ଦେଇ ବଦଳେଇ ଥିଲା। ପୁଣି ତା ପରଦିନକୁ କେରାଏ ଦୂବମୂଳରେ କିଣ

ଆଣିଲା । ମୁଁ ସେତେବେଳକୁ ଆଉ ଷଣ୍ଢ ନୁହେଁ କି ଦାମୁରୀ ନୁହେଁ । ପାଲଟି ଯାଇଥିଲି ରାଧୁ ସାହାଣୀର କାଳିଆ ବଳଦ । ଭାରି ଚଞ୍ଚଳିଆ ।

କାଳିଆର ଦୁଃଖ ଶୁଣିବା ଭିତରେ ତା'ପାଖକୁ ଲାଗିଯାଇଥିଲା ଉସ୍ତବାଷଣ୍ଢ । ଆଉ ଜଣଙ୍କ ବ୍ୟଥାର ଉଷ୍ମତା ପାଇ ତା' କଠିନ ଷଣ୍ଢପଣିଆ ସବୁ ସମବେଦନାରେ ତରଳିଗଲା । ଦି'ଜଣଙ୍କ ଭିତରେ ବଢ଼ିଯାଉଥିଲା ଗୋଟିଏ ଶବ୍ଦହୀନ ବ୍ୟାକୁଳତା । ଅବୟବହୀନ ପ୍ରାଣର ସ୍ପନ୍ଦନ ।

ପ୍ରବଳ ପରାକ୍ରମ ଢଙ୍ଗରେ ଉସ୍ତବା ଆରମ୍ଭ କଲା । ତୋର ମରିବାର ଦଶବର୍ଷ ଆଗରୁ ମୁଁ ମଲିଣି । ହେଲେ ମୋ ଆତ୍ମା ବି ଅତୃପ୍ତ । ମୁଁ କିଛି ଭଲରେ ମରିଛି ବୋଲି ଭାବୁଛ କି? ତୋ ଭଳିଆ ମୋ ମୃତ୍ୟୁ ଅପ୍ରାକୃତିକ ନଥିଲା, ମାତ୍ର ଥିଲା ଖୁବ୍ ଯନ୍ତ୍ରଣାଦାୟକ । ଅତିଶୟ ଖରାରେ ବୁଲି ବୁଲି ଫାରମ ପୋଖରୀ ପର୍ଯ୍ୟନ୍ତ ଆସି ଦେଖିଲି, ଏତେବଡ଼ ଗହିରିଆ ପୋଖରୀଟା ଶୁଖି ଫାଟି ଯାଇଚି । ନଳିତା ଭଳିଆ ଖରାସହଣି ଗଛ ବି ପାଣି ନପାଇ ମଲାଣି । ଜାଣିଚୁ, ଏଇ ନଳିତା କିଆରୀ ଖାଇ, କେତେ ପାହାର ଖାଇଚି ମୋ ଜୀବନରେ, ତା'ର ହିସାବ ନାହିଁ । ମୁଁ ଯୋଉ ଗଛ ଖାଏ, ସେ ଗଛରୁ ଆଉ ଝୋଟ ବାହାରେ ନାହିଁ! କେନା ମରିଯାଏ । ଛୁଇଁ କି ଗୁଳିମଞ୍ଜି ବାହାରି ପଡ଼େ । ଫାର୍ମ ଜଗୁଆଳ ମତେ ବାଡ଼େଇବ ନାହିଁ, କ'ଣ ଛାଡ଼ି ଦବ । ହେଲେ ମୋର ପୁଣି ଭୋକ ଅଛି । ପେଟର ଜ୍ୱାଳା ଅଛି । ଫାର୍ମର ନଳିତା ଗଛ କଥା ଛାଡ଼, ଗାଁରେ ଯେତେ ଲୋକଙ୍କ ତଳି କିଆରୀରେ ମୁହଁ ମାରିଛି, କାହାର ଏମିତି ଫସଲ ଉଜୁଡ଼ି ଯାଇଛି ଯେ! ବରଂ ଧାନ ଭଲ ହେଇଛି । ହେଲେ ସେଥିପାଇଁ କେତେ କଷଣ ମତେ ଏମାନେ ଦେଇଛନ୍ତି । ସେତେବେଳେ ସବୁ ପାହାର ମାଡ଼ ସହୁଥିଲି ନା ନାହିଁ । ପାଖାପାଖି ଦଶଖଣ୍ଡ ଗାଁର ଗରମ ଗାଇକୁ କିଏ ଫଳବତୀ କରିଛି । ମୋର ସମ୍ଭୋଗକୁ ଅନାବଶ୍ୟକ ବା ମୋର ଦୁଷ୍କାମୀ କି ଧର୍ଷଣର ଆଖ୍ୟା ଦିଆଯାଇ ପାରିବ ନାହିଁ । ମୋର ପ୍ରତିଟି ତୃପ୍ତ ଯୌନକ୍ଷୁଧା ଥାଏ ଈଶ୍ୱର ନିର୍ଦ୍ଦେଶିତ; ଯାର ଫଳଶ୍ରୁତି ସ୍ୱରୂପ ମଣିଷ ଆଖିରେ ପହଁରି ଯାଏ ନୂଆ ଗୋଟେ କଅଁଳା ବାଛୁରୀର ସ୍ୱପ୍ନ । କ୍ଷୀର ଛେନା ଦହି ଲହୁଣି ଓ ଗୁଆଘିଅର ବାସ୍ନା । କାଳେ ତାଙ୍କ ଗରମ ଗାଇ ତରାଣ୍ଡର ରୋଗୀଷଣ୍ଢ ହାବୁଡ଼ରେ ପଡ଼ିବ ବୋଲି, ଗାଇ ଧରି ମୋତେ ଖୋଜି ହେଇଛନ୍ତି । ହେଲେ ମୁଁ ସେତେବେଳେ ଦୁଷ୍ଟ ସ୍ୱଭାବର ନଥିଲି । ବୟସ ବଢ଼ିବା ସହିତ ଉଗ୍ରବାଦୀଟେ ହୋଇପଡ଼ିବା ମୂଳରେ ଏଇ ଗାଁ ଲୋକଙ୍କର ହାତ ଅଛି ନା ନାହିଁ ।

ଉସ୍ତବାର ପିଲାଛୁଆ ହେଉ ନଥିଲା ବୋଲି ମହାଦେବଙ୍କ ପାଖରେ ମାନସିକ କରି ମତେ ଷଣ୍ଢ କରି ଛାଡ଼ିଲା । ମୁକ୍ତେଶ୍ୱରଙ୍କ ପାଖରେ ପୂଜାପାଠ ଠାକୁର ଗାଧୁଆ

କରି ଧୂପଦୀପରେ ବନ୍ଦେଇ ମୋ ବେକରେ କଳାକାଛିଆ ବାନ୍ଧିବା ଦିନ ମୁଁ ଆନନ୍ଦରେ ଉଲ୍ଲସିତ ହେଇ ପଡ଼ିଲି । ମହାଦେବଙ୍କ କୃପାରୁ କାଳେ ଉସ୍ତବା ପୁଅ ପାଇଥିଲା । ହେଇ, ସେଇଦିନଠୁ ମୁଁ ହେଇଗଲି ଗୋଠଛଡ଼ା । ପାଲଟିଗଲି ମହାଦେବଙ୍କ ବୁଲା ଷଣ୍ଢ । ସାରାଜୀବନ ସବୁରି ଦରକାରରେ ଲାଗିଲି, ହେଲେ ମୁଁ କ'ଣ ଖାଇକି ବଞ୍ଚିବି, ସେ କଥା ତ କେହି ଭାବିଲେ ନାହିଁ । ଷଣ୍ଢ ହେବାରେ ମୋର ଅବସାଦ ନଥିଲା । ବରଂ ମୁଁ ସ୍ୱାଧୀନ ହେଲି । ଉସ୍ତବା ମାନସିକରେ ମତେ ଷଣ୍ଢ କରିବ କ'ଣ ? ଯୋଉଠି ବି ଜନ୍ମ ହୋଇଥିଲେ, ମୁଁ ଷଣ୍ଢ ହେଇଥାନ୍ତି, କାରଣ ମୋର ଥିଲା ମା' ପେଟରୁ ଜଟ । ହାତେ ଲମ୍ବର ଜଟ । ବାଟଗଲା ଲୋକ ବି ଘଡ଼ିଏ ଠିଆହେଇ ମୋ ଜଟକୁ ଚାହୁଁଥିଲା । ଖୁଣୁଥିଲା । ହେଲେ ସବୁଠୁ ଆଶ୍ଚର୍ଯ୍ୟ କଥା କ'ଣ ଜାଣିଚୁ, ଯୋଉ ଉସ୍ତବାର ପୁଅ ଜନ୍ମ ହେଇଥିଲା ଷଣ୍ଢ ମାନସିକରୁ, ସେହି ପୁଅ ବଡ଼ ହେଇ ବାଲୁଙ୍ଗା ହେଲା । ଗାଁର ବେକାରିଆ ଟୋକାଙ୍କ ସାଙ୍ଗରେ ମାତି ଟାୟାର ଜାଳି ମୋ ପିଠିକୁ ଫିଙ୍ଗିଲା ଥରକୁ ଥର । ହୁତ୍ ହୁତ୍ ଟାୟାର ନିଆଁରେ ମୋ ବେକ ଷଣ୍ଢାର ଲମ୍ବା ଜଟ ପୋଡ଼ିଗଲା ।

ଏତକ କହିବା ପରେ ଅତୀତ ଦୁଃଖରେ ମ୍ରିୟମାଣ ହୋଇପଡ଼ିଲା ଷଣ୍ଢ । କଥା କହି ନପାରି ତଳେ ଗଦା ହେଇଥିବା ଶୁଖିଲା ପତ୍ରରେ ମୁହଁ ଘସିଲା । ଶୂନ୍ୟତା ଭିତରେ ଖସର ଖସର ଶବ୍ଦ କରି ନିଜ ପାଇଁ ଆସ୍ଥାନ ଜମେଇଥିଲେ ଦି'ଟା ପ୍ରେତ । ଗୋଟାଏ ଉସ୍ତବା ଷଣ୍ଢ ଆଉ ଗୋଟାଏ କାଳିଆ ହଡ଼ା । ଦି'ଜଣ ଖାଲି ଦେଇ ଦେଇ ମରିଗଲେ । ପାଇଲେ ଶୂନ । ମାଡ଼, ଗାଳି ଓ ନିର୍ଯ୍ୟାତନା । ନିରୀହ ପଶୁ ଜାତି ବୋଲି ସବୁ ବ୍ୟଥାଭରା ଅନୁଭବ ତାଙ୍କର ଅବୁଝା, ମେଞ୍ଚମେଞ୍ଚ ଯନ୍ତ୍ରଣା... ତାଙ୍କର ଅବ୍ୟକ୍ତ ।

କୋହ ସମ୍ଭାଳି ପୁଣି ଆରମ୍ଭ କଲା ଉସ୍ତବା । ଜାଣୁରେ କାଳିଆ, ସେଇଦିନଠୁ ମୁଁ ପ୍ରଚଣ୍ଡ କ୍ରୋଧୀ ପାଲଟିଗଲି । ଚଉଦ ମାଣିଆ ପାଟରେ ମୋ ସାମନାରେ ପଡ଼ିଲେ କାହାକୁ ହଳ ବୁଲେଇ ଦେଲି ନାହିଁ । ହଳିଆଙ୍କୁ ହଳ ବୁଲେଇ ଦେଲି ନାହିଁ । ଓଜନିଆ ଭାର ବୁହେଇ ବଳଦମାନଙ୍କୁ ଅଡ଼େଇ ନେଉଥିବା କେତେ ଶଗଡ଼ିଆକୁ ଖଣ୍ଡିଆଖାବରା କରିଛି ।

ଏତକ ଶୁଣିବା ପରେ ଦମ୍ଭର ସହିତ କହିଲା କାଳିଆ । ଅତ୍ୟାଚାରୀ ଲୋକ କ'ଣ କିଛି ଭୋଗେ ନାହିଁ ବୋଲି ଭାବୁଚ ! ତାମର ସେ ଲମ୍ବ ଜଟକୁ ଟାୟାର ଜାଳି ପୋଡ଼ିଦେଲା ବୋଲି ଉସ୍ତବାର ପୁଅ କେତେ କଷ୍ଟ ପାଇଚି ଜାଣିଚ ! ସେ ଘଟଣାର ଦି'ଟା ମାସ ପରେ ପେଟ ବିନ୍ଧା ଛିଟିକା ହେଇ ଏମିତି ଗଡ଼ିଲା ଯେ ଡାକ୍ତରଖାନା ନବାକୁ ତର ସହିଲା ନାହିଁ । ତା' ପେଟକଟା ହେଇ ଅପରେସନ୍ ହେଲା । ଏବେ ବି ଗାଁ ଲୋକ କହୁଛନ୍ତି, ଠାକୁର ଷଣ୍ଢର ଜଟ ପୋଡ଼ିଦେଲା ବୋଲି ତାକୁ ଧର୍ମ ସହିଲା ନାହିଁ । ଉସ୍ତବା ପୁଅ ପେଟ ଦୋଷରୁ ଢେର୍ ଭୋଗିଲା ।

ସେକଥା ଛାଡ଼ରେ କାଳିଆ । ମଣିବନ୍ଧା ଗାଁରେ ଶଗଡ଼ ଟାଣୁଥିବା କିଛି ବଳଦଙ୍କ ମୁହଁ ଦେଖିଚୁ । ସେମାନେ ବଳଦ ନୁହଁନ୍ତି । କେତେଟା ବୟସ୍କ ଷଣ୍ଢକୁ ଅପହରଣ କରିନେଇ ତାଙ୍କଠାରେ ହାକୁଡ଼ ଭାଙ୍ଗି, କୋଷ ଚପେଇ ଦେଇ ବଳଦ କରି ଦିଆଯାଇଛି । ଏ ବୟସ ବେଳେ ବି ସେମାନଙ୍କଠୁଁ ଏ ଯାତନା ପାଇ ଶଗଡ଼ ଟାଣିବାକୁ ହେଲା । ଏୟା କ'ଣ ଥିଲା ତାଙ୍କ ଭାଗ୍ୟ, ଭବିଷ୍ୟତ । ଉତ୍ତର ବୟସର ପ୍ରାପ୍ତି ! ଉତ୍ସବା ପୁଅର ଭୋଗାଭୋଗ ପରି ଗୋଟାଏ ଗୋଟାଏ ଉଦାହରଣରୁ ମଣିଷ ଯଦି ଶିକ୍ଷା ପାଉଥାନ୍ତା, ତା ହେଲେ ମଣିଷ ଠିକ୍ ମଣିଷ ପାଲଟିଯାନ୍ତା । ଏମିତି ଅମଣିଷ କାମ କରନ୍ତା ନାହିଁ । ମଣିଷ ଖାଲି ଆଶା ବାନ୍ଧୁଚି, ସ୍ୱପ୍ନ ଦେଖୁଚି । ସ୍ୱାର୍ଥର ସମୁଦ୍ର ପହଁରୁଚି । ହେଲେ ଆମ ଭଳିଆ ହେଇ ପାରିବ । କିଛି ଆଶା ନାହିଁ, ସ୍ୱାର୍ଥ ନାହିଁ, ସ୍ୱପ୍ନ ନାହିଁ । ଖାଇବାକୁ ଦିଅ ନଦିଅ କିଛି ପ୍ରତିବାଦ ନାହିଁ । ଘରେ ବାନ୍ଧି ରଖ କି, କିଛି କ୍ଷଣ ମୁକ୍ତ କରିଦିଅ, ଆପତ୍ତି ଅଭିଯୋଗ ନାହିଁ । ଭଲ କଥା ତ' କିଛି ଶିଖିଲା ନାହିଁ; ଆଉ ଲଢ଼େଇ କରିବା କଥା କୁହ । ଛିଗୁଲେଇବା ଢଙ୍ଗରେ କହିଲା ଉତ୍ସବା, ଦେଖିବ ଦି ଦଳ ଲୋକଙ୍କ ଭିତରେ ଯୁଦ୍ଧ ଲାଗିଯିବ । ଗାଁ ଗାଁ... ଭିତରେ, ଭାଇ ଭାଇ ଭିତରେ, ସବର୍ଣ୍ଣ ହରିଜନ ଭିତରେ କି ହିନ୍ଦୁ ମୁସଲମାନ୍ ଖ୍ରୀଷ୍ଟିୟାନ୍‌ଙ୍କ ଭିତରେ ଲାଗିଯିବ ଷଣ୍ଢଲଢ଼େଇ । ଆଉ ଯୌନକ୍ଷୁଧା ମେଣ୍ଟାଇବା କଥା କୁହ; ଏଗୁଡ଼ା ଗାଈ, ବଳଦ, ଛେଳି, ମେଣ୍ଢା, ବୁଲା କୁତାଠୁ ବି ହୀନ ହେଇଯିବେ । ଆମର ତ ଗୋଟାଏ ସମୟ ଜ୍ଞାନ ଅଛି; ଋତୁ ଅଋତୁ ଜ୍ଞାନ ଅଛି । ହେଲେ ମଣିଷର ସ୍ଥାନ କାଳ ପାତ୍ର ଜ୍ଞାନ ନାହିଁ । ପଶୁପକ୍ଷୀମାନେ କେବଳ ବଂଶ ବିସ୍ତାର ପାଇଁ ସହବାସ କରିଥାନ୍ତି ମାତ୍ର ମଣିଷ ପଶୁପକ୍ଷୀଠୁ ହୀନ ହେଇ ତିନିଶହ ପଁଷଠି ଦିନ ଏ ନେଇ ମୁଣ୍ଡ ଖେଳେଇଥାଏ ।

କାଳିଆହଡ଼' ଭିତରେ ହଠାତ୍ ଦେଖାଦେଲା ଭାବାନ୍ତର । ସାରା ବଳଦ ଜୀବନର ଅବଶୋଷ ତତ୍‌କ୍ଷଣାତ୍ ଠୁଳ ହୋଇଗଲା ତା' ଭିତରେ । କହିଲା, ଦେଖ ମୁଁ ବି'ତ ଷଣ୍ଢ ହେଇପାରିଥାନ୍ତି । ମୋ ଭିତରେ ବି ପୌରୁଷର କ୍ଷୁଧା ସୁଚାରୁ ସମ୍ପାଦିତ ହୋଇପାରିଥାନ୍ତା । ଏବେ କାଟିଲି ବଳଦ ଜୀବନ । ଗାଁ ଗୋରୁପାଳି ଫିଟିଲା ବେଳେ ମୋ ଭିତରେ ବି କ୍ଷୁଧା ଜନ୍ମେ । ମୁଁ ମାଖୁନାଟାକୁ ଗୋଟା ଦି'ଟା ଗାଈଙ୍କ ଠେଙ୍ଗ ଘଷରେଇ ହେଇ ଉଠିପଡ଼ି ତାଙ୍କୁ ତରକେଇ ଦିଏ ।

ରାସ୍ତାଘାଟରୁ ପର ଝିଅବୋହୂଙ୍କୁ ଟାଣିନେଇ ଯିଏ ଅତ୍ୟାଚାର, ଧର୍ଷଣ କ'ରୁଛନ୍ତି, ସେମାନଙ୍କୁ ଆଇନ୍ କରି ମୋ ପରି ବ୍ରତ କରିଦେବା କଥା । ସେମାନଙ୍କୁ ବଳଦ କରିଦେବା କଥା । ତେବେ ଯାଇ ବିବେକ ବୁଦ୍ଧିର ଉଦୟ ହୁଅନ୍ତା । ବିନାକାରଣରେ ପାଞ୍ଚଣ ଉଠେଇଲା ବେଳେ, ମଣିଷ ଥରକୁ ଦି'ଥର ଭାବନ୍ତା, ନିରୀହ ପଶୁ ମୋର କି ଅପରାଧ କରିଛି ଯେ ଏମିତି ସେକି ଦେଇଯିବି ।

କାଳିଆର କଥା ଶୁଣି ଉସ୍ତବାର ଦେହହୀନ ପ୍ରାଣ ଏକ ଚେତନାର ନୂତନ ଦିଗନ୍ତରେ ବିଚ୍ଛୁରିତ ହେବାକୁ ଲାଗିଲା । ସେ କହିଲା, ତୁ ତା'ହେଲେ ମୋଠୁ ଅଧିକ କଷ୍ଟ ସହିଚୁ ନା! ମୁଁ ତ ମାଡ଼ ଖାଇଲା ବେଳେ ଦୌଡ଼ି ପଳେଇଛି । ହେଲେ ତୁ, ଗୋଠରେ ବନ୍ଧା ହେଇ ପାହାର ଖାଇଚୁ । ତୋର ସୁକର୍ମ ଅଧିକ । ଧର୍ମଗ୍ରନ୍ଥରେ କ'ଣ ଲେଖା ହେଇଛି ଜାଣିଚୁ, 'ଅନେକ ଜନ୍ମ ପୁଣ୍ୟ ଫଳେ, ମାନବ ଜନ୍ମ ଧରାତଳେ ।' ତୁ ତ ସାରା ସୁକର୍ମ କଲୁ । ମଣିଷର ସେବା କଲୁ । ତୋ ପୌରୁଷକୁ ବଳି ଦେଇ ବଳଦ ହେଇଚୁ । ତେବେ, ମଣିଷ ଜନ୍ମ ତୋର ଅବଶ୍ୟମ୍ଭାବୀ ।

ଉସ୍ତବାଷଣ୍ଢର ଭାଷଣ ଶୁଣି କେମିତି ଅତିଷ୍ଠ ହୋଇପଡ଼ିଲା କାଳିଆ । କହିଲା ହଡ଼ାବଳଦ ବୋଲି ମତେ ରାଧୁ ସାହାଣୀ ବସେଇ ସୁଖ ଦେଉଥିଲା ବୋଲି ଭାବ ନାହିଁ । ଖାଲି ରାଧୁଆ କାହିଁକି, ଏ ଗାଁବାଲା ବି କ'ଣ ମୋଠୁ କମ୍ ଫାଇଦା ନେଇଛନ୍ତି! ବେଙ୍ଗଳା ଯୋଚିଲେ ମତେ ନେଇ ମେରୀ ବଳଦ କରି ଠିଆ କରାନ୍ତି । ମେରୀ ଖୁଣ୍ଟ ଚାରିପଟରେ ମତେ ଅଳ୍ପ ଚାଲିବାକୁ ପଡ଼େ । ଦୂରକୁ ଦୂରକୁ ଯୋଚା ଯାଇଥିବା ବଳଦଙ୍କ ଚଞ୍ଚଳତା ସାଙ୍ଗରେ ପାଦ ମିଳାଇବାକୁ ହୁଏ । ସେତିକିରେ ବି ମୋର ଯାହା କଷ୍ଟ ହୁଏ; ପାଟି ଖୋଲେନା ବୋଲି ସେ ବେଦନା ରହେ ଅପ୍ରକାଶ୍ୟ । ମୋର ଜାତି ଭାଇ, ହାଟରୁ କିଣା ଯାଇଥିବା ଏ ଗାଁର ସବୁ ଅମଣିଆ ଦାମୁରୀକୁ ମୁଁ ମଣ କରେଇଛି । ମଣିଷର ଜମି ଚଷିବା ପାଇଁ ଅଭ୍ୟସ୍ତ କରେଇଛି । ବାଲି କିଆରୀରେ ଧପାଡ଼ିଛି । ମୋ ବାର୍ଦ୍ଧକ୍ୟ ଅବସ୍ଥାକୁ ଏମାନେ ଢେର୍ ଶୋଷିଛନ୍ତି । ମୋ ମରିବାର କେତେଟା ମାସ ଆଗରୁ ରାଧୁଆର ଗୋଟାଏ ଅମଣିଆ ଦାମୁରୀକୁ ମଣ କଲାବେଳେ ଜୁଆଳି ଘଷିହେଇ ମୋ ପିଠିରେ ଘା' ହେଲା । କାଉ ଖୁମ୍ପାଖୁମ୍ପି କରି ଅଥୟ କରୁଥାନ୍ତି । ରାଧୁଆ ବ୍ୟସ୍ତ ହେଇ ପଡ଼ିଲା । ହେଲେ ତା' ରାହାବାଳୀ ଭାର୍ଯ୍ୟା, ଗୁହାଳ ପାଖକୁ ଦୌଡ଼ିଆସି କହିଲା, ହଡ଼ାଟା ମଲାମଲା ହେଲାଣି । ନୂଆ ଦାମୁରୀ ତ ମଣ ହେଇଗଲାଣି; ଇଏ ଆଉ କୋଉ ହଳରେ ଯିବ ଯେ ଯାଉଚ ମଲମ ଲଗାଇବାକୁ । ଏବେ ଇଚ୍ଛା ହେଉଛି, ଯଦି ରାଧୁଆ ଭାର୍ଯ୍ୟାକୁ ଦେଖନ୍ତି, ମୋ ଶିଙ୍ଗରେ ତା' ତଣ୍ଟି କଣା କରିଦିଅନ୍ତି ।

କାଳିଆର ପାଟି ଚୁପ୍ କରେଇ ଉସ୍ତବା କହିଲା, ତୁ ପାରିବୁନିରେ, ଜୀଇଁଥିଲା ବେଳେ ଯୋଉ ପ୍ରକୃତି ନଥିଲା, ମଲା ପରେ ସେ କାମ କେମିତି କରିବୁ? ସେଇ କାମ କରିବା ପାଇଁ ମୁଁ ଏଇଠି ଜଗି ବସିଚି । ମଣିଷକୁ ଛାଡ଼ିବି ନାହିଁ । ଭାବିଥିଲି ସମୟ ଗଡ଼ିଗଲେ ହୁଏତ ମୋ କ୍ରୋଧ ପ୍ରଶମିତ ହେବ । ହେଲେ ମଣିଷର ଏ ମାଙ୍କଡ଼ାମି ଦେଖି ମୋ ଦେହରେ ଯାଉନାହିଁ । ଏଇ ଦି'ଦିନ ତଳେ କ'ଣ ହେଇଚି ଜାଣୁ! ସ୍ୱଭାବ ସୁଲଭ ଢଙ୍ଗରେ ମୁଣ୍ଡ ହଲେଇ ମନାକଲା କାଳିଆ ତ' ବକି ଚାଲିଲା ଉସ୍ତବା ।

ଦୁହୁରିଆ ତଳ ଗାଁରେ ସାରାରାତି ହୋ ହୋ ଘୋ ଘା ପାଟି ଜମିଲା । ନାଲି ଆଲୁଅ ଜଳେଇ ପୁଲିସ୍ ଗାଡ଼ି ସାଏଁ ସାଏଁ ଚାଲିଲା । ଚାରିଟା ଅଣହିନ୍ଦୁ ସମ୍ପ୍ରଦାୟ ଲୋକଙ୍କ ଉପରେ ହେଲା ନିସ୍ତୁକ ମାଡ଼ । ସେମାନେ ଗୋଟାଏ ଷଣ୍ଢକୁ ହାଣି ଖାଇଚନ୍ତି । ଚାରିଆଡ଼େ ନିନ୍ଦା କୁତ୍ସାରଟନା ଚାଲିଥାଏ ।

କଥା ଛଡ଼େଇ ହଡ଼ା କହିଲା, ଆମର ପାଟି ଫିଟୁନି, ମୁଣ୍ଡରେ ଭେଜା ନାହିଁ, ଭଲ ହେଇଚି । ନହେଲେ ଆମ ଭିତରେ ବି ବାର ଜାତି ଧର୍ମ ହୋଇଥାନ୍ତା । ତିନି ଚାରି ପ୍ରକାର ଈଶ୍ୱର ଥାଆନ୍ତେ । ଯେତେ ପ୍ରକାର ଈଶ୍ୱର ସେତେ ପ୍ରକାର ଧର୍ମଗ୍ରନ୍ଥ ଥାଆନ୍ତା । ଆମ ଭିତରେ ବି ଲାଗୁଥାନ୍ତା ଧର୍ମ, ଧର୍ମାନ୍ତରୀକରଣ ଆଉ ଧର୍ମଯୁଦ୍ଧ । ଆମଠୁ ଇତର ପଶୁପକ୍ଷୀଙ୍କୁ ହାଣି ଖଣ୍ଡଖଣ୍ଡ କରି ତେଲ ମସଲା ଦେଇ ଆମେ ଭୋଜି କରିଥାନ୍ତୁ । ଇସ୍ ! କି ବୀଭତ୍ସ କାଣ୍ଡ କରି ଚାଲିଚି ମଣିଷ ! ଏଇଥିରେ ତମେ କହୁଚ କ'ଣ ନା, ମଣିଷ ସୃଷ୍ଟିର ଶ୍ରେଷ୍ଠଜୀବ ।

ସଦର୍ପରେ ଉତ୍ସବା ଷଣ୍ଢ କହିଲା, ତୋର ଯଦି ଜନ୍ମାନ୍ତର ଘଟିନଥାଏ, ଦେଖିବୁ, ଏହି ବରଡାଳ ତଳେ ମୁଁ ଜଗିଚି, ମଣିଷକୁ ଛାଡ଼ିବି ନାହିଁ । ଏଇ ଗଛର ଇତିହାସ କିଛି ଜାଣିଚୁ !

ଏଇଟା ହେଉଚି ଆଳିଜଙ୍ଗାର ଷଣ୍ଢଗଛ । ମୁଁ ପୋତା ଯାଇଥିବା ଜାଗାରେ ତ୍ରିନାଥମନ୍ଦିର ବାବାଜି ଏଇ ଗଛଟା ପୋତିଥିଲା । ଲୋକେ କହୁଥିଲେ ଏଇଟା ଷଣ୍ଢଗଛ । ଷଣ୍ଢଗଛ ଠାକୁରଙ୍କ ଗଛ । ଆଉ ଏବେ ଏଇ ଗଛକୁ ନେଇ ରାଜନୀତି ଚାଲିଛି । ତା' ପୂର୍ବରୁ ମୋ ମୃତ୍ୟୁର ବୀଭତ୍ସ କାହାଣୀ ଶୁଣିଲେ ତୁ କଷ୍ଟ ପାଇବୁ । ଯାହା ମୁଁ କହିବା ପାଇଁ ଆରମ୍ଭ କରି ମଧ ଏ ପର୍ଯ୍ୟନ୍ତ କହି ପାରିନାହିଁ । ଆଜ୍ଞାଧୀନ ଛାତ୍ରପରି କାନପାରି ଶୁଣୁଥିଲା କାଳିଆହଡ଼ା । ଗୋଟେ ବିଷାଦ ଯୋଗର ପୃଷ୍ଠା ଓଲଟାଉଥିଲା ଉତ୍ସବା ।

ପ୍ରଚଣ୍ଡ ଖରାରେ ଫାରମ ପୋଖରୀରେ ପାଣି ଢୋକେ ନ ପାଇବା ଦିନର କଥା କହୁଥିଲିନା, ମୋ ତଣ୍ଟି ଅଠାଅଠା ହେଇଗଲା । ଅନ୍ତନଳୀ ଶୁଖିଗଲା । ମୁଁ ଚାଲି ପାରୁନଥାଏ । ମୁଁ ବୟସ୍କ ହେଇ ଯାଇଥିଲି ସତ; ମାତ୍ର ବାର୍ଦ୍ଧକ୍ୟ ମତେ ସମ୍ପୂର୍ଣ୍ଣ କାବୁ କରିନଥାଏ । ଆରେ ବଞ୍ଚିବାର ସଉକ ଆମର ନାହିଁ । ନହେଲେ ଆମରି ଆୟୁଷରୁ କୋଡ଼ିଏ ବର୍ଷ ତ' ମଣିଷକୁ ଦାନ କରିନଥାନ୍ତୁ । ବଳଦ, ଗଧ, କୁକୁର ଆଉ ପେଚାଠୁ ଆୟୁଷ ନେଇ ତ ମଣିଷ ଶତାୟୁ ହେଇଛି । ଜୀବନକୁ ନେଇ, ଜୀଇଁ ରହିବାକୁ ନେଇ ସଉକ କରୁଛି । ଆଶ୍ଚର୍ଯ୍ୟ ହେଇ ଅନେକ ନ ଜାଣିବା କଥା ଉତ୍ସବାଠାରୁ ଶୁଣୁଥିଲା କାଳିଆ ।

ଠାକୁରଙ୍କ ବାହନ ବୋଲି କି କ'ଣ, ଜାଣିପାରୁ ଥାଏ, ମୃତ୍ୟୁ ମୋର ସନ୍ନିକଟ । ଫାରମ ପୋଖରୀ ହୁଡ଼ାରେ ପଡ଼ିପଡ଼ି ମରିଯିବା ହିଁ ସାର ହେବ । ଗୋଟାଏ ଦିନ ପଡ଼ିକି ରହିଲି । କିଛି ଲୋକ ମତେ ଟେକାଟେକି କରିବାକୁ ଚେଷ୍ଟାକଲେ । ମୋ ଦେହର ଭାର ଉଠାଇବାକୁ ସକ୍ଷମ ହେଲେ ନାହିଁ । ସେମାନେ ଫେରିଗଲେ । ସେଦିନ ରାତିରେ ମୋ ଦେହରେ କେଉଁଠୁ ଏତେ ବଳ ଆସିଲା କେଜାଣି, ମୁଁ ଉଠି ଚାଲି ଚାଲି ଫାରମ ଅଫିସ୍ ସାମ୍ନାକୁ ଯାଇ ଟଳି ପଡ଼ିଲି । ସେଇଠି ପଡ଼ି ମଲେ ଦେଖାଶୁଣା କରିବେ ବୋଲି ମନେ ହେଲା । ସତକୁ ସତ ସେୟା ହେଲା । ମୋର ଆଶୁ ପରଲୋକ କାମନା କରି କେତେଜଣ ଈଶ୍ୱରଙ୍କୁ ହାତ ଯୋଡ଼ିଲେ । ଫାର୍ମର ସବୁ କର୍ମଚାରୀ ଦେଖିବାକୁ ଆସିଲେ । ପେଟ ଫୁଲି ପଡ଼ିବା ଓ ଖଙ୍କାଳି ହୋଇଯିବାରୁ ସ୍ପଷ୍ଟ ଜଣାପଡୁଥାଏ ମୋର ଅବିରାମ ଜୀବନ ପ୍ରବାହ । ଲୋକେ କଥା ହେଉଥାନ୍ତି, ଏଇଥର ଉତ୍ସବାକ୍ଷଣର କାମ ବଢ଼ିଗଲା । ଆଉ ଉଠିପାରିବନି । ସେଦିନ ରାତିକୁ ବର୍ଷା । ସକାଳକୁ ଫାରମ୍‌ର କର୍ମଚାରୀ ଜଣେ, ଦି'ଟା ବାଉଁଶ ପୋତି ଗୋଟାଏ ଛିଣ୍ଡା ପାଲରେ ତମ୍ବୁ ଟାଣିଦେଇଗଲା ମୋର ସୁରକ୍ଷା ପାଇଁ । ମାତ୍ର ଯେଉଁ ଗାଁ ଲୋକଙ୍କର ଏତେ କରିଥିଲି, ସେମାନେ ଆଡ଼ ଆଖିରେ ଅନେଇଲେ ନାହିଁ ।

ଏଇମିତି ଦିନ ଗଡୁଥାଏ । ନିଃଶ୍ୱାସ ପ୍ରଶ୍ୱାସ ଚାଲୁଥାଏ । ମୁଁ ପ୍ରାୟ ଚେତାଶୂନ୍ୟ । ମରି ପାରୁନଥାଏ । ଦିନରାତି ବର୍ଷା ଲାଗି ରହିଥାଏ । ଯେଝା କାମରେ ଯିଏ । ମୁଁ ଏକା ମୃତ୍ୟୁକୁ ଅପେକ୍ଷା କରି ମାଟିରେ ପଡ଼ିଥାଏ । ମୋ ପାଟି ପାଖକୁ ଗଡ଼ି ଗଡ଼ି ଆସୁଥାଏ ମେଞ୍ଚା ମେଞ୍ଚା କାଦୁଅ ପାଣି । ଲମ୍ବା ଜିଭ ବୁଲେଇ ମୁଁ ସେଇ କାଦୁଅ ବର୍ଷା ପାଣି ଢୋକି ପକଉଥାଏ । ମୁଁ ପ୍ରଥମ ପଡ଼ିବା ଦିନ ବି ସୁଯୋଗ ଥିଲା ଡାକ୍ତର ଡାକି ବଞ୍ଚେଇବା ପାଇଁ । କିନ୍ତୁ ସେକଥା ଚିନ୍ତା ନ କରି ମୁଁ କେମିତି ଶୀଘ୍ର ମରିଯାଏ, ସେଇ ଚିନ୍ତା ଘାରିଥିଲା ସମସ୍ତଙ୍କୁ ।

ମୁଁ ପଡ଼ିବାର ପାଞ୍ଚ ଛଅ ଦିନ ପର୍ଯ୍ୟନ୍ତ ମରି ପାରୁନଥାଏ । ଭୀଷଣ ଗନ୍ଧ ହେଲି । ମୋ ବାଟ ଦେଇ ଯିବା ଆସିବା ଲୋକ ନାକରେ ହାତ ଦେଲେ । ଯିଏ ଆସିଲା ଗୋଟିଏ କଥା, ଷଣ୍ଢ ଗଲାଣି ନା ଅଛି । ନା; ମୁଁ କିନ୍ତୁ ଥିଲି । ମଣିଷ କଥା ହେଉଥିଲା । ମୁଁ ଯୋଉ କର୍ମ କରିଛି; ତା'ର ଫଳ ଭୋଗୁଛି । ନର୍କ ଭୋଗ । ସାରା ଜୀବନ ମତେ ଇତର ଦୃଷ୍ଟିରେ ଦେଖିଥିବା ତଥା ତଳି କିଆରୀରୁ ନିଆଁହୁଳା ଧରି ଗୋଡ଼େଇ ଥିବା ମଣିଷ ଖାଲି ମୃତ୍ୟୁବେଳେ ନିଜ ସହ ତୁଳନା କରିଥିଲା ।

ବାର ତେର ଦିନ ଭୋଗିବା ପରେ ମୁଁ ଦିନେ ସକାଳୁ ମରିଗଲି । ଆଠ ଦଶଘଣ୍ଟା ପଡ଼ି ରହିବା ପରେ ଅଣ୍ଟା ଭିଡ଼ି ଧର୍ମ କରିବାକୁ ଆସିଲେ କିଛି ଲୋକ । ଛକ ଦୋକାନୀ

ମେଞ୍ଚା ମେଞ୍ଚା ଧୂପ ଝୁଣା ଦେଲେ । ତେଜରାତି ଦୋକାନୀ ଦେଲା ଅଧବସ୍ତା ଲୁଣ । ଗାଁ ଶେଷ ମୁଣ୍ଡ ସପେତା ବାଡ଼ି ତଳକୁ ମୁଁ ବୁହା ହେଇଗଲି । ଗାଡ଼ ଖୋଳାଗଲା । ଧୂପ ଦୀପ ଝୁଣାର ବାସ୍ନା ମହକୁଥାଏ । ଅଧବସ୍ତା ଲୁଣ ଦେଇ ମତେ ମାଟିରେ ପୋତି ଦିଆଗଲା । ଦିନେ ଯେଉଁମାନେ ବାଡ଼େଇ ମୋ ପିଠିରୁ ନୋଳା ଫଟେଇ ଦେଇଥିଲେ, ସେମାନେ ମତେ ପୋତି ଦେଇ ଧର୍ମ କରିଛନ୍ତି ବୋଲି ଛାତି ଫୁଲେଇ ଗାଁକୁ ଫେରିଲେ ।

ମୁଁ ପୋତା ହବାର କେତେ ମାସ ପରେ ତ୍ରିନାଥ ମନ୍ଦିର ବାଆଜି ପୋତି ଦେଇଥିଲା ଏଇ ଗଛଟା । ମୋ ରକ୍ତମାଂସର ଅବଶିଷ୍ଟାଂଶରୁ ରସ ଶୋଷି ଏଇ ଗଛ ବଢ଼ିଛି । ଏଇଟା ମୋ ଗଛ । ଆଜି ଯାର ଡାଳ ସାହାଣୀ ଘର ଜମି ଉପରକୁ ମାଡ଼ି ଛାଇ କରୁଚି ବୋଲି ରାଧୁ ସାହାଣୀ କହୁଚି, ଯାକୁ ହାଣିବ । ତୋରି ମାଲିକ ରାଧୁ ସାହାଣୀ' ନା । ଗାଁରେ ତା'କୀର୍ତ୍ତି କିଛି କମ୍ ନୁହେଁ । ଭାବୁଚି ରାଧୁଆ ଗାଁଟା ଭିତରେ ଷଣ୍ଢ । ମୁଁ ଏଇଠି ଜଗି ବସିଚି ସବୁ ରାତିରେ; ଯେବେ ରାଧୁ ସାହାଣୀ ଆସିବ ତା' ପେଟକୁ ଭୁଷିବି । ଅନ୍ତବୁଜୁଳା ବାହାର କରିଦେବି । ପ୍ରେତର ପରାକ୍ରମ କେତେ ଜାଣିବେ । ଗାଁ ଲୋକେ ଜାଣିବେ ଠାକୁର ଷଣ୍ଢ ଗଛରେ କୁରାଢ଼ି ମାରିବାରୁ ସାହାଣୀ ପୁଅ କେମିତି ଭୋଗିଲା ।

ଜଣେ ଅଭିଜ୍ଞ ବୃଦ୍ଧ ପରି ପଚାରିଲା କାଳିଆ, ଯେତେ ଚିଙ୍ଖିଲେ ବି ଏ ମଣିଷମାନଙ୍କର କ'ଣ କିଛି ଜ୍ଞାନ ଉଦୟ ହେବ ବୋଲି ଆଶା ରଖୁଛ !

ନା' ସେ ଆଶା ନାଇଁ, ମାତ୍ର ପ୍ରତିଶୋଧର ପବନ ମୋର ଶୂନ୍ୟ ଅବୟବକୁ ବି ଶାନ୍ତିରେ ବିଚରଣ କରିବାକୁ ଦେଉନାହିଁ । ଦୁଃଖ ଓ ହତାଶାରେ ଥରୁଥିଲା ଉହ୍ଵବା ।

କିଛି ସମୟର ନୀରବତା । ଏକ ଶବ୍ଦହୀନ ଭାବନାର ସ୍ରୋତରେ ଆଚ୍ଛାଦିତ ସମଗ୍ର ପ୍ରେତପୁରୀ । କ୍ରମଶଃ ଗଭୀର ରାତି । ଝିଙ୍କାରୀର ଝିଁ ଝିଁ ସ୍ଵର ଥମି ନଥାଏ । ମେଘ ଗହଳିରୁ ଚିତ୍କାର କରି ଭୟଙ୍କର ଚଡ଼ଚଡ଼ି ଶବ୍ଦରେ ଫାଟି ପଡୁଥିବା ବିଜୁଳି ଆଲୁଅରେ ଦିଶି ଯାଇଥିଲା ଗହଳ ବରଡାଳ ତଳେ ଦି'ଟା ପ୍ରକାଣ୍ଡକାୟ ଜୀବ । ଦି'ଟା ଅତୃପ୍ତ ଆତ୍ମା ଭିତରେ ଭାବ ଦିଆନିଆ । ଗୋଟାଏ ସବଳ ସମାଜ ବିରୁଦ୍ଧରେ ଦୁର୍ବଳ ଜାତିର ଅସଙ୍ଗତ ରଣଭେରୀ କମ୍ପିଉଠୁଥିଲା । ଅନ୍ଧାର ଡେଣାରେ ବିସ୍ତରି ଯାଉଥିଲା ନୀରବ ପ୍ରତିବାଦ । ମାଟିରେ ଘୋଷାରି ହେଉଥିଲା ନିଃଶବ୍ଦ ପଟୁଆର ।

ଦୀର୍ଘ ନୀରବତା ପରେ ପାଖକୁ ଲାଗିଆସି କାଳିଆ ହଡ଼ା ପଚାରିଲା, ତମକୁ ଯଦି ଏବେ ମଣିଷ ଜନ୍ମ ମିଳେ ?

ଉହ୍ଵବା କ୍ଷଣେ ଗୁମ୍ ଖାଇ କହିଲା, ମିଳେ ନୁହେଁରେ କାଳିଆ; ମିଳିଥିଲା । ମୁଁ କ'ଣ ସୁକର୍ମ କରିଛି ଯେ ମତେ ଏମିତି ସୁଯୋଗ ମିଳିଲା ମୁଁ ଜାଣେ ନାହିଁ । ମାତ

ମୁଁ ଏହିମାନଙ୍କ ଭିତରୁ ଜଣେ ହେବାକୁ ପସନ୍ଦ କଲିନାହିଁ । ମୁଁ ମଣିଷ ହେବାର ମହାଜାଗତିକ ତଥା ଐଶ୍ୱରିକ ପୁରସ୍କାରକୁ ପ୍ରତ୍ୟାଖ୍ୟାନ କଲି । ଅଦୃଶ୍ୟ ଶକ୍ତି ପ୍ରଦତ୍ତ ଏପରି ମହାର୍ଘ୍ୟ ପ୍ରଲୋଭନ ମୋ ପ୍ରାଣପକ୍ଷୀକୁ ଟହଲେଇ ପାରିଲା ନାହିଁ । ଏଥର ମୋର ପ୍ରଶ୍ନ ତୁ ସମ୍ଭାଳ କାଳିଆ ! ଧୀରସ୍ଥିର ହେଇ ଉତ୍ତର ଦେ । ତୁ ଅନେକ ଧର୍ମ କଲୁ । କଷ୍ଟ ସହିଲୁ । ସୁକର୍ମ ବି କରିଛୁ । ତତେ ଯଦି ମଣିଷ ଜନ୍ମ ମିଳେ ?

ଦୀର୍ଘ ସମୟ ଧରି ନରମି ଯାଇଥିବା ହଡ଼ାବଳଦଟା ନିଜ ଭିତରେ ଖୁବ୍ ଦୃଢ଼ ହେଇ କହିଲା, 'ମୁଁ କ'ଣ ହେଇଛି ଯେ, ବାପର ଗୋଟାଏ କଥାକୁ, ପୁଅର ଗୋଟାଏ କଥା । ବାପର ଗୋଟାଏ ରାସ୍ତାକୁ ପୁଅର ଆଉ ଗୋଟାଏ ରାସ୍ତା ।

ମୁଁ ତମରି କଥାରେ ସହମତ ।

ମୁଁ ତମରି ରାସ୍ତାରେ ଯିବି । ଗୋରୁ ଗାଈଙ୍କ ପାଇଁ ଅନାବାଦୀ, ଗୋଚର ପାଳରେ ଘାସ ହେଇ ଜନ୍ମ ହେବି ପଛେ, କିନ୍ତୁ ମଣିଷ ନୁହେଁ ।





## ଅଚ୍ୟୁତାନନ୍ଦ ପତି

ସାଂପ୍ରତିକ ଓଡ଼ିଆ କଥା ସାହିତ୍ୟ ଜଗତରେ ଏକ ଶିଖରସ୍ପର୍ଶୀ ଚର୍ଚ୍ଚିତ କଥାକାର । ଅବହେଳିତ, ନିର୍ଯ୍ୟାତିତ ଓ ଇତର ଚରିତ୍ରମାନଙ୍କୁ ନେଇ ତାଙ୍କର ଗଳ୍ପ ରଚନା ଅବ୍ୟାହତ ଓ ଅନାହତ । ଅଚ୍ୟୁତାନନ୍ଦ ପତି ମୁଖ୍ୟତଃ ଜଣେ ମାନବବାଦୀ, ଦରଦୀ କଥାଶିଳ୍ପୀ । ସମାଜ ବର୍ଜିତ ଚରିତ୍ରମାନେ ତାଙ୍କର ଗଳ୍ପର ମୁଖ୍ୟ ଆଧାର ହେବା ସହ ନୂତନ ଆଲୋକର ସଂଧାନ ପାଇଁ ସହାୟ ହୋଇଥା'ନ୍ତି ।

ଆଲୋକବାଦୀ କଥାକାର ଶ୍ରୀଯୁକ୍ତ ପତିଙ୍କ ଦ୍ୱାରା ସଂପାଦିତ 'ମାନବେତର ଗଳ୍ପ' ସଂକଳନରେ ମୋଟ ବାଇଶିଟି ଭିନ୍ନ ସ୍ୱାଦର ଗଳ୍ପ ସ୍ଥାନିତ । ସଂକଳିତ ଗଳ୍ପର ଚରିତ୍ରମାନେ ମାନବ ଠାରୁ 'ଇତର' ହୋଇଥିଲେ ମଧ୍ୟ ସେମାନଙ୍କର ସ୍ୱାତନ୍ତ୍ର୍ୟ ଏଠାରେ ମୁଖ୍ୟ ପ୍ରସଙ୍ଗ । ସଂକଳନଟି ପାଠକୀୟ ଶ୍ରଦ୍ଧାଲାଭ କରିବାର ଆଶା କରାଯାଏ ।

– ରମେଶ ପତି

